ପ୍ରକାଶକ—ଜେ: ମହାପାତ୍ର ଏଣ୍ଡ୍ କୋ,
ଗ୍ରନ୍ଥସାଥୀ ଅଫିସ୍
କଟକ-୨

ପ୍ରଥମମୁଦ୍ରଣ—୧୯୭୨-ଜାନୁଆରୀ
୧୦୦୦

ମୁଦ୍ରାକର—ରମଚନ୍ଦ୍ର ମିଶ୍ର, ଓଗରପ୍ରେସ

ପ୍ରଚ୍ଛଦପଟ ଶିଳ୍ପୀ—ଶ୍ରୀନାଥ ଗୃଟର୍ଜୀ

10 00

# ଉତ୍ସର୍ଗ

**ଶ୍ରୀଯୁକ୍ତ ସୁରେନ୍ଦ୍ର ମହାନ୍ତି**

**......କର କମଳେଷୁ**

ମହାଶୟ,

ଆପଣଙ୍କର ଯଶସ୍ୱୀ ଲେଖନୀ ପ୍ରସୂତ ଉପନ୍ୟାସ, ପ୍ରବନ୍ଧ ତଥା କ୍ଷୁଦ୍ରଗଳ୍ପ ଉତ୍କଳସାହିତ୍ୟକୁ ଋଦ୍ଧିମନ୍ତ, ସୁରୁଚିସମ୍ପନ୍ନ ଓ ମଞ୍ଜୁଳ କରିଅଛି । ସାହିତ୍ୟପ୍ରେମୀ ଜନସାଧାରଣଙ୍କ ନିକଟରେ ଆପଣ ଗାଳ୍ପିକ ସମ୍ରାଟ ରୂପେ ସୁପରିଚିତ । 'ହସକୁରି'କୁ ଆପଣଙ୍କ ନାମରେ ଉତ୍ସର୍ଗକରି ମୁଁ ନିଜକୁ ଗୌରବାନ୍ୱିତ ମନେ କରୁଛି ।

ଆପଣଙ୍କର ଗୁଣମୁଗ୍‌ଧ

**ଫତୁରାନନ୍ଦ ।**

# ମୋ ଆଡ଼ୁ କେତେପଦ

ଶିରୋନାମା ଦେଖି କେତେକ ହୁଏତ ଅଟ୍ଟାକରି କହିପାରନ୍ତି—"କହେ ! ସାରା ବହିଟିରେ ହଜାର ପଦ କହି ସାରି ଘୋଳେଇନ ଯେ ପୁଣି କେତେପଦ କହିବା ଦରକାର ପଡ଼ୁଛି ?"

ହଁ ଆଜ୍ଞା ଦରକାର ପଡ଼ୁଛି । ଆପଣ ଜାଣିଥିବେ ଶେଷ ପେଡ଼ି ବା ଲାଷ୍ଟ ମିନଟ୍ ବ୍ୟାଗ୍ ବୋଲି ଗୋଟିଏ ପେଡ଼ି ଅଛି । କେହି ଜଣେ ସ୍ଥାନାନ୍ତରିତ ହେଲେ ସେ ଅନ୍ତତଃରେ ଘରଚଳନ୍ତି ତାର ସବୁ ଘରକରଣା ଜିନିଷ, ଗାଡ଼ିରେ ବସିବାର ବହୁ ସମୟ ପୂର୍ବରୁ ବନ୍ଧାବନ୍ଧିକରି ଅଥବା ପେଡ଼ିରେ ପୂରାଇ ରଖିଥାଏ । ଗାଡ଼ିରେ ବସିଲାବେଳକୁ ଘରଆଡ଼େ ସେ ଯେତେବେଳେ ଶେଷଥର ପାଇଁ ଆଖିବୁଲାଇ ନିଏ ସେତେବେଳେ ଦେଖେ ଯେ ତାର ସମସ୍ତ ସତର୍କତା ସତ୍ତ୍ୱେ ଆଉ କେତୋଟି ଜିନିଷ ପେଟିକାଭୁକ୍ତ ନହୋଇ ଭୁଲରେ ପଦାରେ ରହିଯାଇଛି । ସେତେବେଳେ ସେହି ଶେଷପେଡ଼ି ବା ଲାଷ୍ଟ ମିନଟ୍ ବ୍ୟାଗ୍‌ଟି ତାର କାମରେ ଲାଗେ । ସେ ପେଡ଼ିଟି ଏପରି ଯେ ତହିଁରେ ଗାମୁଛା, କଠଉ, ଚପଲ୍, ଦାନ୍ତକାଠି, ଜୋତାବ୍ରୁସ୍, ସାବୁନ ଡବା, ଗ୍ଲେଟଡାଳ ଭଳି ସବୁକିଛି ଜିନିଷ ତରବରରେ ଭର୍ତ୍ତିକରିଦେଇ ଗାଡ଼ିରେ ଉଠିବାକୁ ହୁଏ ।

ବହିର ଏହି ଅଂଶଟି ଲେଖକର ସେହିପରି ଏକ ଶେଷପେଡ଼ି ବା ଲାଷ୍ଟ ମିନଟ୍ ବ୍ୟାଗ୍ । ସାରା ବହିରେ କହି କହି ଶେଷରେ ଦେଖିଲାବେଳକୁ ଆଉ କେତେପଦ ବାକି ରହିଯାଇଛି । ସେତକ କହି ନ ପକାଇଲେ ଅଜାଣ୍ଟିଆ ପେଟଟା କୁଡ଼ୁକୁଡ଼ୁ ହେଲା ପରି ମନଟା ସବୁବେଳେ କୁଡ଼ୁକୁଡ଼ୁ ହେବ ।

ଏହି ବହି ଭିତରେ ଥିବା ସବୁ ଗପଗୁଡ଼ିକ ଆଗରୁ ପତ୍ରିକା ମାନଙ୍କରେ ପ୍ରକାଶିତ ହୋଇ ସାରିଛି । ଏ ପତ୍ରିକା ପାଠକ ମାନଙ୍କର ମାନସିକ ପ୍ରତିକ୍ରିୟା ଲକ୍ଷ୍ୟ କରିବାର ସୁଯୋଗ ଲେଖକ ପାଇଛି । ଦଳେ

ବାହା ବାହା କହିଲେ ଆଉ ଦଳେ ନିଶ୍ଚୟ ଦୁର୍ ଦୁର୍ କହିବେ । ଏଣୁ ଲେଖକ ଏ ବାହାବାହା ଓ ଦୁର୍ ଦୁର୍ କୁ ପିଠିପଛ ଖାଲେଇକୁ ପକେଇ ଦେଇଛି ।

ଅନେକ ପାଠକ ଗଳ୍ପଗୁଡ଼ିକୁ ନାୟିକା ଓ ଆଦିରସ ବର୍ଜିତ ଦେଖି କାରଣ ଖୋଜୁଥିବାର ଲେଖକ ଜାଣିଛି । ଲେଖକର ପ୍ରଥମ କଲମଗାର ଉଗରରେ ପଡ଼ିଛି ଓ କଲମ ଧରିଲା ଦିନଠାରୁ ସେ ଉଗର ସହିତ ସମ୍ପୃକ୍ତ । ମଜାଗପ ଫାଇଲ୍ ଘାଣ୍ଟୁ ଘାଣ୍ଟୁ ଲେଖକ ଦିନେ ହରକ୍ତହୋଇ କହିଲା—"ହେଉ ସେହି କଲେଜଟୋକା, ସେହି କଲେଜ ଟୋକୀ, ସେହି ଗୋପନ ଅଭିସାରରେ ବିଭ୍ରାଟ ନହେଲେ କଅଣ ମଜାଗପ ହୁଏନି ! ଉପସ୍ଥିତ ଜଣେ ଲେଖକ ବନ୍ଧୁ କହିଲେ—ସେତିକ ନହେଲେ ବାସ୍ତବିକ ମଜାଗପ ହେବନି ! ସେଇଠି ଲେଖକ ନାୟିକା ଓ ଆଦିରସ ବର୍ଜିତ ଗପ ଲେଖିବ ବୋଲି ସିଦ୍ଧାନ୍ତ ଗ୍ରହଣକଲା ଓ ନିଜ ଝିର କଲମକୁ ହାସ୍ୟରସର ଝରଣାରେ ପରିଣତ କଲା । ଆଉ ଅଧିକ ନିଷ୍ପ୍ରୟୋଜନ ।

ପରିଶେଷରେ ଲେଖକଙ୍କର ସମସ୍ତ ପୁସ୍ତକ ପ୍ରକାଶ କରିବାର ଭାର ଜେ : ମହାପାତ୍ର ଏଣ୍ଡକୋ : ବହନ କରିଥିବାରୁ ସେମାନଙ୍କଠାରେ ଲେଖକ କୃତଜ୍ଞତା ଜଣାଉଅଛି ।

ପରୁହିନନ୍ଦ



# ସୂଚୀପତ୍ର



———

# ବଜୁଳି ସାହାବଙ୍କ ବାହାଘର

ଆଜି ବଜୁଳି ସାହାବଙ୍କର ବାହାଘର ଭୋଜି । ବାହାଘର ସରିଥିଲା; ଭୋଜିଟା ଖାଲି ବାକି ଥିଲା । ଜର୍ମାଣରେ ବଜୁଳି ଉପରେ ନାହିଁ ନଥିବା କୃତିତ୍ୱ ଦେଖାଇ ସେ କଟକ ଫେରିବା ମାତ୍ରେ ଗୁଡ଼କୁ ଜନ୍ଦା ବେଢ଼ିଲା ପରି ଶଶୁରପଲ କାହୁଁ କାହୁଁ ମାଡ଼ିଆସି ବେଢ଼ିଗଲେ । ବଜୁଳିରେ ସିନା ସାହାବଙ୍କର ତାକତ, ଶଶୁର ଓ ପୁରୋହିତ ପଲଙ୍କୁ ବଳ ଖଟେ କେତେକେ ! ଗୃହୁଁ ଗୃହୁଁ ଗୃହିଜାତ ମେଲାଇ ପଡ଼ିଗଲେ । ଶେଷରେ ଗୋଟିଏ ଶଶୁରର ଯନ୍ତା ଭିତରେ ମେଣ୍ଢାଟି ପରି ପଶିଗଲେ । ତୋଖଡ଼ମାର ସାହାବ ! ବନ୍ଧୁ-ବାନ୍ଧବ କଣ୍ଟ ଅଳପ ନୁହଁନ୍ତି । ଚେହେରା ଯେମିତି ବ୍ୟବହାର ସେମିତି । ଫଳରେ ଡାକ୍ତର, ଓକିଲ ବ୍ୟବସାୟୀ ଓ କାନ୍ତ୍ରାକ୍ଟ୍ ଭିତରୁ ବହୁତ ବହୁତ ଲୋକ ତାଙ୍କସହ ବନ୍ଧୁତା ଜମେଇ ଦେଇଥିଲେ । ସମସ୍ତେ ଆସି ଜୁଟିବାର ଏଇ ହେଉଛି ଅସଲ ମଉକା ।

ବଜୁଳି ଅଫିସରେ ଡିନଦିନ ହେଲା କାମ ଅଧାଅଧି ବନ୍ଦ । ସବୁ କର୍ମଚାରୀଙ୍କ ତୁଣ୍ଡରେ ସେଇ ଗୋଟିଏ କଥା—ରଖହୋ ସବୁଦିନେତ ଲୋକଙ୍କପାଇଁ କାମ କରୁଛୁଁ, ଏ ଦିନେ ଦି'ଦିନ ସାହାବଙ୍କ ପାଇଁ ଖଟିବା ନାହିଁ ? ଆମ ସାହାବ ଆମକୁ କେତେ ଭଲ ନ ପାଉଛି ! କେତେ କେତେ ବିପଦରୁ ଆମକୁ ରକ୍ଷା ନ କରିଛି ! ତା' ବଦଳରେ ଆମେ ତାକୁ କଅଣ ଦେଇଛୁଁ ? ଋଣ ସୁଝିବାର ଆଜି ବେଳ ଆସିଛି ।

ଏ କେବଳ କହିବା କଥା ନୁହେଁ । କର୍ମଚାରୀମାନେ କାମରେ ମଧ୍ୟ ହାତ ଦେଖାଇ ଦେଇଥାନ୍ତି । ସାହାବଙ୍କୁ କୁଠାଖିଏ ଦି'ଖଣ୍ଡ କରିବାକୁ ଦେଉ-

ନ ଥାନ୍ତି । ସାହାବ ଖାଲି ବାଘମାର୍କା ନୋଟରୁ ଥିବେ ବଡ଼ବାବୁଙ୍କ ହାତରେ ଗୁଞ୍ଜିଦେଇ ନିଶ୍ଚିନ୍ତ । କିଏ ଆସିଲା, କିଏ ଗଲା, କୋଉଥିରେ ମୁଣ୍ଡ ପୂରାଉ ନ ଥାନ୍ତି । ଅନ୍ୟମାନଙ୍କ କଥା ପଛକୁ ଥାଉ; ବୁଢ଼ୁବୁଢ଼ିଆ ଗଜବାବୁଙ୍କର କୋଉଠି ଏତେ ବଳ, ଉତ୍ସାହ ଚପିଗୁପି ହୋଇ ରହିଥିଲା ତାହା ଦେଖି ସମସ୍ତେ ତାଟକା ହୋଇଗଲେ । ଯେତକ ନେଣ୍ଟେରା ନ ମିଳିବା ଜିନିଷ କୋଉ ଅନ୍ଧକନ୍ଦି, ବିକନ୍ଧରୁ ବୋହିଆଣି ଗଦା କରିଦେଲେ । ଭୋଜି ପୂର୍ବଦିନ ଗାଡ଼ିସୁଦ୍ଧା ଦୁଧ, ଦହି, ଛେନା ଓ ମାଛରେ ଘର ଭରିଗଲା । ସମସ୍ତେ ଗଜବାବୁଙ୍କୁ ସାବାସୀରେ ଗାଧୋଇ ଦେଲେ । ଆଉ ଅନ୍ୟମାନେ ଘିଅ, ତେଲ, ଲୁଣ, ଗୁଡ଼ କାଳି ଆଉ ପନ-ପରିବା ପିମ୍ପୁଡ଼ି ଲାଗିଲା ପରି ବୋହିବାରେ ଲାଗିଥାନ୍ତି । ଛଅ ବଜାର ପରି ଏତେବଡ଼ ପରିବା ପେଣ୍ଠରେ ସେଦିନ କୋବି, ପୋଟଳ ଦେଖିବାକୁ ମିଳିଲା ନାହିଁ । ସବୁଠେଇଁ ଚର୍ଚ୍ଚା ଚାଲିଛି—'ଆଃ ! ବିଜୁଳି ସାହାବ ଖାନାଟାଏ ଦେବନିତ, ଖାନାରେ ସମସ୍ତଙ୍କୁ ଭସେଇ ଦେବ ।'

କେତେ ଯେ ଲୋକ ନିମନ୍ତ୍ରିତ ହୋଇଥାଆନ୍ତି ତାହା କଳନା କରିବା କାଠିକର ପାଠ । ତେବେ ତାଙ୍କ ଆଫିସ୍‌ର ସୁଦର୍ଶନ ଉଗର ପ୍ରେସ୍‌ରୁ ଦୁଇହଜାର ନିମନ୍ତ୍ରଣ ପତ୍ର ଛପାଇ ଆଣିଲାବେଳେ ଦରଦାମ୍ ନେଇ ଏମିତି ଝିକାଝିକ୍ ଲଗାଇଥିଲା ଯେ ଅସମ୍ଭବ ପ୍ରକାରରେ ଦୁଇହଜାର ନିମନ୍ତ୍ରଣ ପତ୍ର ଛପା ହୋଇଛି ବୋଲି ଅନେକ ଲୋକଙ୍କ କାନରେ ବାଜି ଯାଇଥିଲା । ବାହାଘର ପୂର୍ବଦିନ ସବୁ ନିମନ୍ତ୍ରଣ ପତ୍ର ଝାଡ଼ଝୁଡ଼ି ହୋଇଗଲା ।

ଏତେ ଲୋକଙ୍କ ପାଇଁ ଆୟୋଜନ । କିଛି କଟକ ଚଣ୍ଡିଆ ବାହାଘର ନୁହେଁ । ଦି'ଟା ଫୁଲହାର ଅଦଳ ବଦଳ ଓ ପାଇକଆ ମିଠେଇ ହାଣ୍ଡିଟିରେ ସବୁ ଖତମ । ଏଥିକୁ ଲୋଡ଼ା ଏକ ବିରାଟ ଖିଆଶାଳ । ନିମନ୍ତ୍ରିତ ଭଦ୍ରବ୍ୟକ୍ତିମାନେ ବସି ଆରାମରେ ଖାଇଲା ଭଳି ତହୁଁ ବଡ଼ା ଏକ ବଢିଆ ଥାନ । ଖାଇବା ପୂର୍ବରୁ ବସି ଅପେକ୍ଷା କରିବା ପାଇଁ ସେମିତି ଏକ ବଡ଼ ଥାନ ଲୋଡ଼ା । ଏସବୁ ଯୋଗାଡ଼ କରିବାରେ କିଛି ଅସୁବିଧା ହେଲାନି । ସାହାବଙ୍କ ଚଟି ପାଇବା ମାତ୍ରେ ବାରିକ ମିସ୍ତ୍ରୀ ବିଭାଗ ବଡ଼ ବଡ଼ ତମ୍ବୁ ଓ

ଟେଗ୍‌ବାଡ଼ମାନ ପଠେଇ ଦେଲେ । ଆଉ ଆଉ କେତେ ବଖରୁ ଗୁନ୍ଦୁଆ, ସତରଞ୍ଜି, ଟେବୁଲ, ଚଉକୀ, ଫୁଲଦାମ ସବୁ ବି ଆସିଗଲା ।

କୋଠି ଆଗରେ ଓ କଡ଼ରେ ତମ୍ବୁ ଓ ଟେଗ୍‌ବାଡ଼ ପଡ଼ିବା ପାଇଁ ଥାନ ସଫେଇ ଆରମ୍ଭ ହୋଇଗଲା । ଗୋଟିଏ ତମ୍ବୁରେ ଭଦ୍ରଲୋକେ ବସିବେ, ଆଉ ଗୋଟିକରେ ଖାଇବେ । ପାଖରେ ଟେଗ୍‌ବାଡ଼ ପଡ଼ି ଖନ୍ଦା-ଶାଳ ହେବ; ସେଠୁ ଖାଇବା ଜିନଷ ବୋହି ଆଣିବାକୁ ଘରକଣ୍ଟୁ ସୁବଧା ହେବ ।

କାର୍ତ୍ତିକ ମିସ୍ତ୍ରୀ ଦଳେ ମିସ୍ତ୍ରୀଙ୍କୁ ଧରି ଗୃହ୍ଣ ଗୃହ୍ଣ ଥାନ ସଫାକରି ତମ୍ବୁଚକ ଠିଆ କରେଇ ଦେଲା । ଭୋଜିର ପୂର୍ବଦିନ ଦି'ପହରକୁ ସବୁ ଠିକ୍‌ଠାକ୍ । ସନ୍ଧ୍ୟା ବେଳକୁ ଖନ୍ଦାଶାଳ ଚୁଲ୍ଲିମାନଙ୍କରେ କାଠ ପକେଇ ନିଆଁ ଧରେଇ ଦିଆଗଲା ।

କେହି କାହାକୁ ପଚାରିଉଚାରି ନାହିଁ । ପୃଥ୍ୱି ଓ ମେଙ୍ଗା ନାୟକ ବିଜଳି ତାର ଖଞ୍ଜାଖଞ୍ଜିରେ ଲଗିଗଲେ । କେଉଁଠି ଯେପରି ଟିକିଏ ହେଲେ ଗଣ୍ଡଗୋଳ ନହୁଏ ସେଥିଲାଗି ବଡ଼ ହୁସିଆରରେ ତାର ଖଞ୍ଜିଲେ । ଶଗଡ଼ ଶଗଡ଼ ନାଲିବଣ୍ଡ ଆଣି ଗୋଟାକଯାକ ଥାନକୁ ଅତି ସୁନ୍ଦରଭାବେ ସଜେଇ ଦେଲେ । ମଙ୍ଗରାଜ, ସାମଲ ଓ ସଦୁବାବୁ ଭଦ୍ରବ୍ୟକ୍ତିମାନଙ୍କର ବସିବା ଥାନକୁ ଇନ୍ଦ୍ରପୁରୀରେ ପରିଣତ କରିଦେଲେ । ଖାଇବା ଥାନ ବି ସେମିତି ସଜାଗଲା । ବସିବା ଓ ଖାଇବା ଥାନରେ ସବୁଠୁଁ ବେଶି ନଳ-ବଣ୍ଡ ଖଞ୍ଜି ଦିଆଗଲା—କାଳେ କେତେବେଳେ ଦୈବ ଦୁର୍ଯୋଗକୁ ସୁଟ୍-ସାଟ୍ ହୋଇଯିବ ସେହି ଡରରେ ଜରୁରୀ ତାର, ଅତି ଜରୁରୀ ତାର ଆଉ ସେମିତିଆ କେତେ କଅଣ ସତର୍କତାମୂଳକ କାମ କରାଗଲା । ଯେତେହେଲେ ସେମାନେ ଜଣେ ଜଣେ ବିଜୁଳିର ପୋକ । ବିଜୁଳି ସାହାବଙ୍କର ପୁଣି ବାହାଘର । ସେଥିରେ କଥା ଥାଏନା !

ଭୋଜି ଦିନ ସୂର୍ଯ୍ୟ ବୁଡ଼ୁ ବୁଡ଼ୁ, ପହଲବାବୁ ବିଜୁଳିର ପ୍ରଧାନ ସୁଇଚ୍ ଖଟ୍‌କରି ଦାବି ଦେଲେ । ଓଃ ! ସେ କି ଦୃଶ୍ୟ । କୁହୁକପାପର ଦୈତ୍ୟ ସତେକି ଗୋଟାଏ ଅପ୍‌ସରା ପୁରୀ ଆଣି ସେଠି ଲଥ୍‌କରି ଥୋଇଦେଲା ।

ପୂର୍ଣ୍ଣ, ମେଙ୍ଗା ଓ ପଦ୍ମଲବାବୁଙ୍କର ଗୁଡ଼ ଗୃରଇଞ୍ଚ ଲେଖାଏ ଫୁଲିଗଲା । ଦେଖଣାହାରିଏ ହାଁ କରି ଗୃହିଁ ରହିଲେ । ଆଉ ସବୁଙ୍କ କଥା ଗାତକୁ ଯାଉ, ନ ଜାଣିଲା ଲୋକେ ବଜୁଳ ଆଲୁଅର ବେସଣୀ ଦେଖି କହି ପକାଇଲେ—'ବଜୁଳ ସାହାବର ବାହାଘର ହେବପରି !'

ପୂର୍ବଦିନ ରାତ୍ରରେ ମିଠେଇ କାମ ଗୁଡ଼ିଆମାନେ ସାରି ଦେଇଥିଲେ । ଭୋଜଦିନ ଦି'ପହର ବେଳକୁ ରାନ୍ଧୁଣିଆମାନେ ଚୂଲି ଧରିଲେ । ରାତି ଆଠଟାକୁ ନିମନ୍ତ୍ରଣ । ସମସ୍ତେ ଧରି ନେଇଥିଲେ ଯେ ଭଦ୍ରଲୋକମାନେ ଆସୁ ଆସୁ ରାତି ନଅରୁ ଊଣା ହବନି । ଏଇଟା କିଛି ଭୁଲ ଭାବିବା କଥା ନୁହେଁ । ଏଠି ସଭାସମିତି ସନ୍ଧ୍ୟା ଛଅଟାରେ ହବାର ଥିଲେ, ଖୋଦ୍ ସଭାପତି ରାତି ନଅଟାରେ ସଭାକୁ ବିଜେ କରନ୍ତି । ଏଣୁ ଭଦ୍ରବ୍ୟକ୍ତିମାନେ ଆସୁ ଆସୁ ରାତି ନଅଟା ହେବା କିଛି ବିଚିତ୍ର କଥା ନ ଥିଲା । ରାନ୍ଧୁଣିଆମାନେ ନାକରେ ତେଲ ପକେଇ ଧୀରେ ସୁସ୍ଥେ କାମ କରି ଗୃଲିଲେ । ସମସ୍ତେ ଯାହା ଆଶା କରିଥିଲେ ତାର କିନ୍ତୁ ଓଲଟା କଥାଟା ହେଲା । ଭଦ୍ରଲୋକମାନେ ସାଢ଼େଛଅଟା ବେଳକୁ ଆସି ଭିଡ଼ ଜମେଇ ଦେଲେ । ପାଗ୍ରେଟିଆ ଦିବ୍ୟସିଂହ ଓ ଦୟାନିଧିବାବୁ ଦେଖିଲେ କଥାଟା ଗଣ୍ଡଗୋଳଆ ହୋଇଯିବ । ଦୁସରା ଲୋକଙ୍କୁ ସେଠି ରଖାଇ ଦୁହେଁ ଧାଇଁଲେ ଖଦ୍ୟାଶାଳକୁ । ସେତେବେଳକୁ ପଲଉ, ତରକାରି ଖାଲ୍‌କୁଲ୍ ଚୂଲ୍ଲୀ ଉପରକୁ ଯାଇନି । ରନ୍ଧା ହୋଇଛି ମାଛ, ପରିବାପତ୍ର ସବୁ କିଛି ଛଣାଛଣି ସରିଛି । ଏକା ସାଙ୍ଗରେ କୁହାଟ ଦେଲେ—'ଆରେ ସବୁ ସାରି ଦେଲରେ, ଆରେ ଆମକୁ ଆଜି ବେଇଜତ୍ କଲରେ, ଆରେ ଗୃହିଁଛ କଅଣ, ବସାଅ ହାଣ୍ଡି, ଚଳାଅ ଚଟ୍, ଆରେ ଚଞ୍ଚଳ କରି ନ ହେଲେ ମାନମହତ ଗଲା । ଆରେ ତୁମର କାନ ଅଛି ନା ନାହିଁ । କୋଉଠୁ ଆସିଥିଲରେ ମରୁଡ଼ିଆ ଦଳ ଦିହରେ ଦି'କଉଡ଼ିର ବଳ ନାହିଁ, ହମ ହମ ହୋଇ ଆବୋରି ବସୁଛନ୍ତି ପାହାଡ଼କୁ । ଆରେ ହାତ ଚଞ୍ଚଳ କରି, ଗୃହିଁଛ କାହାକୁ ?'

ଏ କୁହାଟ କାମ ଦେଖେଇଲା । ପୁଟ୍ଟାଖିମାନେ ଚୂଲି ଭିତରକୁ ଜାଳ ଆହୁରି ପେଲିଦେଇ ଚଟୁ ବୁଲେଇବାରେ ଲାଗି ପଡ଼ିଲେ, କାମ ଟୁବ୍

ଆଗେଇଲା । ହବ୍ୟସିଂହ ଓ ଦୟାନିଧିବାବୁ କିନ୍ତୁ ଜୋକ ପରି ଲାଗି ରହିଥାନ୍ତି । ପୁଷ୍ପାଗ୍ନିଦଳ ଝାଳନାଳ ହୋଇ ଗଲେଣି । ତଥାପି ଏ ଦୁହିଁଙ୍କର କୁହାଟ ବନ୍ଦ ହେବାକୁ ନାହିଁ । ବିରକ୍ତ ହୋଇ ସେମାନେ ଲେଉଟ ପଦ ଛୁଡ଼ିଲେ—'ବାବୁ ! ସେମିତି ପାଟିତୁଣ୍ଡ ଏଠି ଚଳିବ ନାହିଁ । ଏ ନିଆଁ ପାଣି କଥା, ଏଠି ବକର ବକର ହେଲେ ସବୁ ଭଣ୍ଡୁର ହେବ ।'

ଭଣ୍ଡୁର ହେବା କଥା ଶୁଣି ଦୁହେଁ ଚୁପିଗଲେ । ଅଧା ତାଉ ଅଧା ପାକଳା ପାକଳରେ ରାନ୍ଧୁଣିଆମାନଙ୍କୁ ପଛ ଆଡ଼େ ଅଣ୍ଟେଇଲେ । ସବୁ ହୋଇଗଲା, ଖାଲି ଲୁଣ ପଛ ମସଲା ଆଉ ପଛ ଘିଅ ଦେବାକୁ ବାକି । ଥୋକେଇଏ ଲୁଣ ଥୁଆ ହୋଇଛି । ବଡ଼ ରାନ୍ଧୁଣିଆ ଆଞ୍ଜୁଳାଏ ଲୁଣଧରି ମାଛ ତରକାରିରେ ପକାଇବାକୁ ଯାଉଛି, ହଠାତ୍ ଫ୍ୟୁଜ୍ ହୋଇଗଲା । ଚାରିଆଡ଼େ ଅନ୍ଧାର । ରାନ୍ଧୁଣିଆ ହାତରୁ ସବୁ ଲୁଣତକ ତରକାରି କରେଇରେ ପଡ଼ିଗଲା । ସହଜେ ତ ସେ ଟିକିଏ ଅନ୍ଧାରକଣା ଥିଲା, ଦିନ ପରି ଆଲୁଅରୁ ହଠାତ୍ ଅନ୍ଧାରରେ ପଶିବାକୁ ଚାରା କାହିଁ ତାର । ସାହାଯ୍ୟ ପାଇଁ ରଡ଼ି ଛାଡ଼ିବାରୁ ତାକୁ ଅନ୍ୟମାନେ ନିରାପଦ ଜାଗାକୁ ଟାଣି ଆଣିଲେ ।

ହେଁଃ ! ଯମ ଘରେ ଘାଉଡ଼ । ବିଜୁଳି ସାହାବର କାମ ବେଳକୁ ବିଜୁଳି ପାଗଳା ହେଉଛି । ଏ କିଛି କମ୍ ହଟଚମଟର କଥା ନୁହେଁ । ଚାରିଆଡ଼େ କୁହାଟ ଖେଳିଗଲା—'ଆଲୁଅ, ଆଲୁଅ, ଆଲୁଅ'—

ଲୋକ ସିନା ଆଲୁଅ ପାଇଁ ଅପେକ୍ଷା କରିବେ । ହେଲେ ଚୁଲି ଉପରେ ବସିଥିବା ତରକାରି କରେଇମାନେ କଅଣ ସେଥିପାଇଁ ନିଶ୍ୱାସ ମାରିବେ ! ବଡ଼ ରାନ୍ଧୁଣିଆ ଚିଲ୍ଲେଇ ଉଠିଲା—'ହେ ସନେଇ, ଆରେ ହେ ଦାମା, ହଇରେ ଶତ୍ରୁଘ୍ନ କରୁଛୁ କଅଣ, ଫି କରେଇରେ ଆଞ୍ଜୁଳେ ଲେଖାଏ ଲୁଣ ପକାଇ ଶୀଘ୍ର କରେଇ ସବୁ ଉତାରି ଦିଅ, ନହେଲେ ସତ୍ୟାନାଶ ହୋଇଯିବ, ସବୁ ଫିଟିଯିବ । ଆଲୁଅ ପାଇଁ ବସି ରହିଲେ ଦଫା ଶେଷ ହୋଇଯିବ । କାଠ ଆଲୁଅରେ ଯେତିକି ଆଲୁଅ ହେଉଥିଲା ସେତିକିରେ ଅଣ୍ଡାଳା ଉଣ୍ଡୁଳି କରି ଆଞ୍ଜୁଳା ଆଞ୍ଜୁଳା ଲୁଣ ଝପଝାପ୍

ପକେଇବାରେ ଲାଗିଗଲେ । ବଡ଼ ଗାନ୍ଧୁଣିଆଟା ବିଚାରା ହାତଗୋଡ଼ ବାନ୍ଧି ବସିଥାଏ । ସମସ୍ତେ ଲାଗିପଡ଼ି କରେଇ ଓହ୍ଲାଇଲା ବେଳକୁ ପୁଣି ଫଡ଼୍‌କରି ଗୃହଆଡ଼ ହାଲୋର ହୋଇଗଲା ।

ଏଣେ ଭଦ୍ରବ୍ୟକ୍ତିମାନଙ୍କ ବସିବା ଥାନକୁ ଖୋଦ୍ ବିଜୁଳି ସାହାବ ଧାଇଁଆସି ହାତଯୋଡ଼ି କହିଲେ—'ଆଜ୍ଞା ଆପଣମାନଙ୍କୁ ବଡ଼ କଷ୍ଟଦେଲି । ମୁଁ ବଡ଼ ଦୁଃଖିତ ଏଇଟା ମୋ ଶକ୍ତିର ବାହାରେ । ଚଉଦୁଆର ପେଣ୍ଟରେ ଗଣ୍ଡଗୋଳ ହେତୁ ଏ ଅସୁବିଧା ହୋଇଗଲା । ମୋତେ କ୍ଷମା ଦିଅନ୍ତୁ ।'

ଏତକ ଶୁଣିବା ମାତ୍ରେ ସମସ୍ତେ ଚଡ଼ା ଚଡ଼ି ହୋଇ କହିଉଠିଲେ— "ଆହା ଆପଣଙ୍କର ବ୍ୟସ୍ତ ହେବାର କୌଣସି କାରଣ ନାହିଁ । ଆମେ ଏପରି ଫୁଡ଼୍‌ଫାଡ଼୍‌ରେ ଖୁବ୍ ଅଭ୍ୟସ୍ତ । ଏଇଟା ଆମକୁ କିଛି ନୂଆ ଜିନିଷ ନୁହେଁ । ଆପଣ କିଛି ମନେକରିବେନି ।"

ବିଜୁଳି ସାହାବ ଅଭୟ ଦେଇ କହିଲେ, "ମୁଁ ସମସ୍ତଙ୍କୁ ସତର୍କ କରାଇ ଦେଇଛି, ଆଉ ଏହାର ପୁନରାବୃତ୍ତି ହେବନି ।"

ତାଙ୍କ କଥା ତାଙ୍କ ମୁହଁରେ, ଗୃହଆଡ଼େ ଘୋର ଅନ୍ଧକାର । ଦି'ତିନିଟା ଖେଚଡ଼ିଆ କଲେଜ ଟୋକା ସେଠିଥିଲେ, ଘୋଡ଼ାଙ୍କ ପରି ହେଁ ହେଁ ହୋଇ ହସି ଉଠିଲେ । ବିଜୁଳି ସାହାବ ଅପଦସ୍ତ ହୋଇଗଲେ ।

ଏଣେ ଖଦାଶାଳରେ ପୁଣି ଅନ୍ଧାର ହୋଇ ଯିବାରୁ ବଡ଼ ଗାନ୍ଧୁଣିଆ କହିଲାଗିଲା—'ହଉଥା ପୁଅ କେତେ ଫୁଡ଼୍‌ଫାଡ଼୍ ହେଉଛୁ ହଉଥା, ଆମ କାମ ଖତମ ହେବା ଉପରେ । ଆରେ ହେ ସନେଇ ! ଏ ଶଳେ ବାହ୍ମଣୀବେଙ୍ଗ ଏଠି ଯେମିତି ଫକ୍‌ଫାକ୍ ହେଉଛନ୍ତି ଏଗୁଡ଼ାଙ୍କୁ ବିଶ୍ୱାସ ନାହିଁ । ଯେଉଁ ବଡ଼ ବଡ଼ ପଗାଡ ଆଉ ବାଉଁଶ ଡାଳସବୁ ସେଠି ତେରା ହୋଇଥିଲା ସେଗୁଡ଼ାକୁ ଆଣି କରେଇ ସବୁ ଘୋଡ଼ାଇ ଦିଅ ।'

ସେତେବେଳକୁ ଜାଳସବୁ ଲିଭିଇ ହଆଯାଇଥିବାରୁ ଥାନଟା ବେଶି ଅନ୍ଧାରୁଆ ଜଣା ଯାଉଥାଏ । ସନେଇ ଅଣ୍ଡାଳି ଅଣ୍ଡାଳି ବଡ଼ ଡାଲ୍‌ଟାଏ ଆଣି ଆଗ ମାଛକରେଇ ଉପରେ ଘୋଡ଼େଇ ଦେଲ୍‌ବେଳେ ତାକୁ ଜଣାଗଲ୍ କ'ଣ ଗୋଟାଏ ଯେମିତି ସେ ଡାଲ୍‌ରୁ କରେଇ ଭିତରେ ପଡ଼ଗଲ୍ ଓ ଅଧସେକେଣ୍ଡ ପାଇଁ କରେଇ ଭିତରେ ଯେମିତି କ'ଣ ଗୋଟାଏ ପଟ୍‌ପାଟ୍ ଶବ୍ଦ ହେଲ୍ । ଆଲୁଅ ଆସିଲେ ଦେଖିନେବ ବୋଲି ସ୍ଥିରକରି ସେ ଚୁପ୍‌ଚୁପ୍ ହୋଇ ରହିଲ୍ । ବିଜୁଳି ଆସିବାରେ ଡେରି ହେବାରୁ ପେଟ୍ରୋମାକସ ଲଣ୍ଠନ କେତୋଟି ଅଣାଗଲ୍ । କେତେ ସେକେଣ୍ଡ ସେସବୁ ଜଳିଛି କି ନାହିଁ ପୁଣି ବିଜୁଳି ଫେର୍‌କରି ଆସିଗଲ୍ ।

ବିଜୁଳି ସାହାବ ଏଥରକ ଅତି କାକୁତି ମିନତି ହୋଇ କହିଲେ —'ଆଜ୍ଞା ଦୁଃଖର କଥା ଢେଙ୍କାନାଳ ପାଖରେ ଗୋଟାଏ ଦୁର୍ଘଟଣା ହେବା ଫଳରେ ଏ ସରବରାହ ବନ୍ଦ ହୋଇଗଲ୍ । ଏଇଟା ଚଉଦୁଆରବାଲାଙ୍କ ଅକ୍ତିଆରରେ ନ ଥିଲ୍ । ମୁଁ ବଡ଼ ଲଜ୍ଜିତ ।'

ଭଦ୍ରବ୍ୟକ୍ତି ପୁଣି ସମସ୍ୱରରେ କହିଲେ—ଆହା ଆପଣ କାହିଁକି ଛୁଛାଟାରେ ଦୁଃଖ କରୁଛନ୍ତି । ଏଗୁଡ଼ାକ ଆମର ହାହା ହସରା ସେ । ଏ ଫୁଟ୍‌ଫାଟ୍ ଭିତରେ ଚଳିବା ପାଇଁ ଆମେ ଖୁବ୍ ଅଭ୍ୟସ୍ତ ।

ନକି ଆଲୁଅ ଗୁରି ପାଞ୍ଚଟା କାହିଁକି ଜଳିଲ୍ ନାହିଁ ତାହା ତନଖି କରିବା ପାଇଁ ମେଗା ନାୟକ ଯାଇ ଦେଖେ ତ ସେ ଗୁରି ପାଞ୍ଚଟା ନକି ବତିର ଅସ୍ତିତ୍ୱ ବିଲ୍‌କୁଲ୍ ସେଠି ନାହିଁ । ମନେ ମନେ ସେ ଗାଳିଦେବାକୁ ଲଗିଲ୍—'ଶଳା ଚୋର, କେତେ ଚଟ୍‌ପଟିଆ ! ଏମିତି ଟିକିଏ ସମୟ ଭିତରେ ଗୁରି ପାଞ୍ଚଟା ନକିବତି ହାତସଫେଇ କରିଦେଲ୍ । ବାପ୍‌ରେବାପ୍ ଆଉ ଟିକିଏ ଡେରି ହୋଇଥିଲେ ଶଳାଟା କଳାକନା ବୁଲେଇ ଦେଇ ଥାଆନ୍ତା ।'

ସବୁ ଠିକ୍ ଠାକ୍ ହୋଇ ଯିବାରୁ ଭଦ୍ରବ୍ୟକ୍ତିମାନଙ୍କୁ ଥାନକୁ ଡାକି ନିଆଗଲ୍ ହ' ଘରଟା ପେଟ୍ରୋମାକ୍‌ସ ଆଲୁଅ ତିଆରି କରି

ରଖାହୋଇ ଥିବାରୁ ଚର୍ଚ୍ଚାକାରୀମାନେ ଆଉ ଗୁଡ଼ ଧୂଡ଼ୁ ଧୂଡ଼ୁ କଲେ ନାହିଁ ।

ନଷ୍ଟବାବୁ ମହା ହୁସିଆର ! ସେ କେତେ ଭୋଜଭାତ କଥା ଅଙ୍ଗେ ନଭେଇଛନ୍ତି । କଏ ଖାଇଲା ମେଞ୍ଚେ ତ କଏ ଖାଇଲା କେଞ୍ଚେ । ଏଠି ସେସବୁ ଯେପରି ନ ହୁଏ । ସେଥିପାଇଁ ସେ ଗୋଟାଏ ପରଷୁଣିଆ ବାହିନୀ ଆଗରୁ ଗଢ଼ି ନେଇଥିଲେ । ଯେତେଟା ଜନିଷ ସେତିକ ପରଷୁଣିଆ ଏକାଥରକେ ତା ପଛକୁ ତା'ପଛ ହୋଇ ପରଷି ଦେବେ ଭୁଲଚୁକ୍‌ର ଆଉ ପ୍ରଶ୍ନ ନ ଥିବ ।

ଭଦ୍ରବ୍ୟକ୍ତିମାନେ ବସି ଯିବାପରେ ପରଷୁଣିଆ ଫଉଜ କାମରେ ଲାଗିଗଲେ । ଏତେ ବଡ଼ ଲମ୍ବ ପରଷୁଣିଆ ଦଳଙ୍କ ଧାଡ଼ି ଓ ସୁଶୃଙ୍ଖଳ କାମଦେଖି ନିଜେ ନଷ୍ଟବାବୁ କୁରୁଳି ଉଠିଲେ ।

ଫଉଜ ଥରେ ଘୂରିଆସିବା ସାରିଲେଣି କି ନା ହଠାତ୍ ପୁଣି ବଜୁଳିଆଲୁଅ ଫୁତ୍‌କରି ଲିଭିଗଲା । ପରଷୁଣିଆଏ ଗୋଟିଏ ନିଶାରେ କାମକରି ଯାଉଥିଲେ, ଠିକ୍ ଗୋଟାଏ ଯନ୍ତ୍ରପରି । ଆଖିଝଲସା ଆଲୁଅରୁ ଏକାବେଳକେ ଖଚକଟିଆ ଅନ୍ଧାର । ଫଉଜ ଝୁଙ୍କଟାକୁ ସମ୍ଭାଳି ପାରିଲେନି । ସେହି ଅନ୍ଧାରରେ କେତେଟା ଜାଗାରେ ପରଷି ପକାଇଲେ, କୋଉଠି ପଡ଼ିଲା ଦେଖୁଛି କଏ । ଜଣେ ଦି'ଜଣ ଧକ୍‌କା ଖାଇ କଚଡ଼ି ହୋଇ ପଡ଼ିଲେ । ଗରମ ଗରମ ଜନିଷ ପଡ଼ିଯିବା ପରଷାଥାଳରୁ ଛିଟିକି କେତେ ଭଦ୍ରଲୋକଙ୍କ ମୁହଁ, ଲୁଗାପଟା ନଷ୍ଟ କରିଦେଲା ! ବେଶୀ ବିକଳ ଅବସ୍ଥା ହେଲା ପାୟସ୍ ବାଲ୍‌ଟି ଧରିଥିଲାବାଲାର । ସେ ତା ଆଗରେ ପଡ଼ି ଯାଇଥିବା ପରଷୁଣିଆ ଉପରେ ଗରମ ପାୟସ୍ ବାଲଟି ସହିତ କଚଡ଼ି ହୋଇପଡ଼ିଲା । ତାତିଲା ପାୟସ ଜ୍ୱାଳାରେ ଦୁହେଁ ବାପାଲୋ ମାଆଲୋ ହୋଇ ଛଟିପିଟି ହେବାକୁ ଲାଗିଲେ । ଖାଇଲାବାଲାଏ ବି ଗୁଣା ଚେଙ୍କ ପାଇଲେ ନାହିଁ । କାହା ଗାଲରେ, କାହା ମଥାରେ, କାହା ହାତରେ ଫୋଟକାର ପୂର୍ବାବସ୍ଥା ସବୁ ଦୃଷ୍ଟି ହୋଇଗଲା । ସଙ୍ଗେ ସଙ୍ଗେ ପେଟ୍ରୋମାକ୍‌ସ ଲଣ୍ଠନ ସବୁ

ଆସିଗଲା, ଅବସ୍ଥା ସମ୍ଭାଳା ପଡ଼ିଲା । ଆଘାତ ପ୍ରାପ୍ତ ପରୀକ୍ଷଣିଆ ଓ ଖାଇଲା-ବାଲାଙ୍କୁ ସଙ୍ଗେ ସଙ୍ଗେ ପ୍ରାଥମିକ ଚିକିତ୍ସା ଦିଆଗଲା ।

କିଛି ସମୟ ପରେ ବିଜୁଳି ସାହାବ ନିଜେ ଆସି ଏକ କରୁଣ ରସାତ୍ମକ ବକ୍ତୃତା ଆରମ୍ଭ କଲେ—"ଆଜ୍ଞା, ମୋର ଦୁର୍ଭାଗ୍ୟ । ହୀରାକୁଦରେ ଏକ ଟରବାଇନ୍‌ର ଖିଲ ବାହାରି ଯିବା ଫଳରେ ଏ ଦୁର୍ଘଟଣା ଘଟିଲା । ମୁଁ ଦେଖୁଛି ଦୈବ ମୋର ବାମ ହୋଇଛି । କି ଭାଷାରେ ମୁଁ କ୍ଷମା ମାଗିବି ତାହା ମୁଁ ଭାବି ପାରୁନି"—

ତାଙ୍କର ବକ୍ତୃତା ନ ସରୁଣୁ ଫଟ୍ କରି ପୁଣି ଆଲୁଅ ଆସିଗଲା । ଭଦ୍ରବ୍ୟକ୍ତିମାନେ ସମଦୁଃଖ ଓ ସହାନୁଭୂତି ପ୍ରକାଶ କରି କହିଲେ—"ଆଜ୍ଞା, ଦୈବ ଉପରେ ହାତ କାହାର । ଆପଣ ବୃଥାରେ କାହିଁକି ମନକଷ୍ଟ କରୁଛନ୍ତି । ଆମର ତ ଏଇଟା ନିତିଦିନିଆ ହିଦିଘଷରି କଥା । ଆମପାଇଁ ଆପଣଙ୍କର ଚିନ୍ତା କରିବା ଦରକାର ନାହିଁ । ଏହାଠୁଁ ଢେ଼ର ଢେ଼ର ବେଶି କଠିନ ସମୟରେ ବିଜୁଳି ବନ୍ଦକୁ ଆମେ ସମ୍ଭାଳି ନେଇଛୁ । ଏତ ଆମକୁ କିଛି ନୁହେଁ ।

ଜଣେ ଡାକ୍ତର କହିଲେ "ହଠାତ୍ ବିଜୁଳି ଘାପ ବନ୍ଦ ହୋଇଯିବା ଫଳରେ ଟେବୁଲ୍ ଉପରେ କେତେ ରୋଗୀଙ୍କର ଜୀବନ ଘାପ ଲିଭିଯାଇଛି, ଏ କିବା ଛାର"—

ଜଣେ କାରଖାନା ମାଲିକ କହିଲେ "ଏମିତିଆ ଘଟଣାରେ ବିଜୁଳି ଚୁମ୍ବକ ଅଚଳ ହୋଇଯିବାରୁ ତା ଦେହରେ ନିଟକୁଥିବା ତାତିଲା ଲୁହା ଖସିପଡ଼ି ବହୁ ଲୋକଙ୍କୁ ମାରି ଦେଇଛି, ଏଠିତ ସେମିତି କିଛି ଘଟିନି !"

ଆଲୁଅ ଆସିଲା, ପରଷା ସରିଲା; ଏଥରକ ହାତ ଚାଲିବ । ଧୀରେ ସୁସ୍ଥେ ପଙ୍ଗତିଆମାନେ ଗଣ୍ଡେ ଗଣ୍ଡେ ପଲାଉ ଗୋଟୁକୁଲେଇ ସାରି ତିଅଣରେ ହାତ ଲଗେଇଲେ । ପାଟିରେ ଦେବା ମାତ୍ରେ ମୁହଁ ନିସିଡ଼ି ଗଲା—ଇହି କି ଲୁଣ ! ପଙ୍ଗତ ଭିତରେ କିଛି ବାରିବା ଅଭଦ୍ରତା । ତରକାରି ସବୁଡିକ

ସମସ୍ତଙ୍କର ସେହିପରି ରହିଲା । ମିଠା, ପାୟସ୍‌ରେ ସମସ୍ତେ କାମ ଚଳେଇ ନେଲେ ।

ଅଧାଅଧି ଭୋଜନ ହୋଇଯିବା ପରେ ଜଣେ ପଙ୍ଗତିଆ ଲୋଭରେ ଖଣ୍ଡେ ମାଛକୁ ପାଣିରେ ଧୋଇ ଖାଇଦେବା ପାଇଁ ଇଚ୍ଛା କରି ସବୁ ଭିତରୁ ଖଣ୍ଡିଏ ମାଛ ଅଙ୍ଗୁଠିରେ ଆଡ଼େଇବାକୁ ଚେଷ୍ଟା କଲା । ଏଁ ! ଏ କଅଣ ! ତା ଦେହ ଶୀତେଇ ଉଠିଲା । ଯାହାକିଛି ଖାଇଥିଲା ସେସବୁ ଆଉ ପେଟ ଭିତରେ ସ୍ଥିର ହୋଇ ରହି ପାରିଲେନି । ମୁକ୍ତି ପାଇଁ ପ୍ରବଳ ବେଗରେ ଊର୍ଦ୍ଧ୍ୱମୁଖ ହେଲେ । ଗୋଟାଏ ମଧ୍ୟମ ଧରଣର ବେଙ୍ଗ । ପେଟର ପଦାର୍ଥମାନଙ୍କୁ ଆଉ ସେ ଗୁପିରଖି ପାରିଲାନି । ଭକ୍‌କରି ସେଇ ପତର ଉପରେ ଓକାଳି ପକାଇଲା । ସମବେଦନା ଜ୍ଞାପନ କଲାପରି ଆହୁରି ୩୪ ଜଣ ଅ—ଅ—ହୋଇ ଓକାଳି ପକାଇଲେ । ପଙ୍ଗତ ଆଇନ କାନୁନ ନମାନି ଦଳେ ଉଠି ପଳେଇଲେ । ଡିଅଣରେ ବେଙ୍ଗଟାଏ ପଡ଼ିଥିଲା, ସେହି ଡିଅଣକୁ ସମସ୍ତେ ଠିକିଏ ଠିକିଏ ରଖିଛନ୍ତି, ଏଇଟା ପଙ୍ଗତ ଭିତରେ ବାରୁଦରଞ୍ଜକର ନିଆଁ ପରି ଖେଳିଗଲା । ସମସ୍ତେ ଅସ୍ୱସ୍ତି ଓ ଭବିଷ୍ୟତ ପେଟ ଗଣ୍ଡଗୋଳ ଆଶଙ୍କା କରି ଉଠି ପଳେଇଲେ ।

ବଜୁଲି ସାହାବଙ୍କ ମୁହଁରେ ଆଉ କଥା ନାହିଁ । ନଟବାବୁ ରାନ୍ଧୁଣିଆ ଉପରେ ଚଡ଼ଉ କରିନ୍ତ ସେ ମୁହେଁ ମୁହେଁ ହାଙ୍କି ଦେଲା—"ଓଲଟା ଆମକୁ ଦୋଷ ବଜୁଳି ସାହାବଙ୍କ କାମ, ସମସ୍ତେ ବଜୁଳି ଅଫିସର ଲୋକ ବଜୁଳି ଫୁଡ଼ୁ ଫୁଡ଼ୁ କରୁଥିଲ କାହିଁକି ? ନିଆଁ ପାଣି ଫୁଲୁ ଫୁଲୁକୁ ଧରି ବସୁଛ । କାହିଁକି ଏ ଫୁଟୁଫୁଡିଆ ବଜୁଳି ରଖିଛ ? ବଜୁଳି ଉପରେ ଯଦି ଅକ୍ତିଆର ନଥିଲା ଦଶ ପନ୍ଦରଟା ଡେଲାଇଟି ରଖିଲନି । ଅନ୍ଧାରରେ ଆମେ କଅଣ କରିବୁ ? ଅନ୍ଧାରରେ ବେଙ୍ଗ କେମିତି ଡେଇଁ ପଡ଼ୁଛି । ଲୁଣର ଅନ୍ଦାଜ ବି ରହିବ କେମିତି—"

ନଟବାବୁ କାନରେ ହାତଦେଇ ସେଠାରୁ ପଳେଇଲେ । ତେଣେ ଭଦ୍ରବ୍ୟକ୍ତିମାନେ ଉପହାର ସବୁ ନେଇ ଗୋଟିଏ କୋଠରୀରେ ପଡ଼ିଥିବା

ଟେବୁଲ ଉପରେ ଥୋଇଦେଇ ପଦାକୁ ପଳାଉଥାନ୍ତି । ପେଟ ଭିତରେ ଶବ୍ଦ ବେଗର ଆର୍ତ୍ତନାଦ ସେମାନଙ୍କୁ ଯେପରି ଶୁଭୁଥାଏ । କେମିତି ଘରକୁ ପଳେଇବେ ତାର ବାଟ ଦିଶୁ ନ ଥାଏ । ବହୁତ ଉପଦ୍ରବ ଥୁଆ ହୋଇଗଲା । ଶୁଖିଲା ମୁହଁରେ କେବଳ ଓଠ ଦୁଇଟାକୁ ଜବରଦସ୍ତି ମେଲାଇ ବିଜୁଳି ସାହାବ ଜଣଜଣକୁ ବିଦାୟ ଦେଉଥାନ୍ତି । ଉପଦ୍ରବ କୋଠରୀ ପାଖରେ ଭିଡ଼ ସାମାନ୍ୟ କମିଛି କି ନାହିଁ, ବିଜୁଳି ବତି ପୁଣି ଫ୍ୟୁଜ ହୋଇଗଲା । ଜଣେ କିଏ ବଡ଼ ପାଟିରେ ଥଟ୍ଟେଇ କରି କହିଦେଲା ଏଥର ବମ୍ବେଇରେ ଗଣ୍ଡଗୋଳ । ଆଉ ଜଣେ କହିଲା—ହଁ, ଗଣ୍ଡଗୋଳଟା ପଛେଇ ପଛେଇ ଯାଉଛି । ପହିଲେ ଚଉଦୁଆର ତାପରେ ଢେଙ୍କାନାଳ, ତାପରେ ହୀରାକୁଦ, ଏଥର ବମ୍ବେଇରେ ନଷ୍ଟାମି ହେବ ।

ବିଜୁଳି ଆସିବାରେ ଡେରି ହେବାରୁ ପେଟ୍ରୋମାକ୍ସ ଲଣ୍ଠନ ସବୁ ପୁଣି ଅଣାଗଲା । ଭଦ୍ରବ୍ୟକ୍ତିମାନେ ତମ୍ବୁ ଭିତରୁ ଧୀରେ ଧୀରେ ବାହାରି ଯାଉଥାଆନ୍ତି । ଠିକ୍ ଏତିକିବେଳେ ମେଙ୍ଗାନାୟକେ ଦେଖିଲେ ଯେ କିଏ ଜଣେ ଗୋଟାଏ ନଳିବତି ଆବୋରି ଠିଆହୋଇ କଅଣ କରୁଛି । ପୂର୍ବ ଅନ୍ଧାର ବେଳେ ଗୁଡ଼ାଏ ନଳିବତି ଚୋରି ହୋଇଯାଇଛି । ଚୋରଙ୍କ ଉପରେ ପ୍ରଚଣ୍ଡ ରାଗଥିଲା । ସେ ଦାନ୍ତ କଡ଼ମଡ଼େଇ ଗୋଟାଏ ବେତବାଡ଼ି ଧରିଲା । ପାଦ ଚପି ଚପି ସେ ଲୋକଆଡ଼େ ଗଲା । ମୂର୍ଖ ଚୋରଟାଏ, ବାଘ ଆସି ପଛରେ ହେଲାଣି ତାକୁ ମାଲୁମ ନାହିଁ । ଦୃଢ଼ ମୁଷ୍ଟି କରି ମେଙ୍ଗାବାବୁ ଜମେଇ ଦେଲେ ଏକ ଜବର ପାହାର । ଲୋକଟା 'ବୋପାଲୋ' ବୋଲି କହି ବସି ପଡ଼ିଲା । ପାଟି ବାରି ନେବାରୁ ମେଙ୍ଗାଙ୍କ ହାତରୁ ବାଡ଼ିଟା ଖସିପଡ଼ିଲା । ସେ କାବୁଛୁ ହୋଇପଡ଼ି ପଚାରିଲେ —"ପହଲି କରେ ? ଓଃ କି ଭୁଲଟାଏ ନ କଲି । ହଇରେ ତୁ ଏଠି କଅଣ କରୁଥିଲୁ ?"

"ଇଲୋ ବାପା ମରିଗଲି । ବତିଟା କଡ଼ପଟିଆ ଥିଲା, କାଳେ ଚୋର ନେଇଯିବ ସେଥିଲାଗି ତାକୁ ଧରି ଠିଆହୋଇ ଥିଲି, ଲୋ ବାପା ମରିଗଲି—"

ଖବରଟା ରାଷ୍ଟ୍ର ହୋଇଗଲା । ସେ ଗୋଟାଏ ପେଟ୍ରୋମାକ୍ସ ଲଣ୍ଠନ ନେଇ ଦେଖିଲା ବେଳକୁ ପହଲାଙ୍କ ମୁଣ୍ଡରୁ ଝର ଝର ରକ୍ତ ବୋହୁଛି । ସଙ୍ଗେ ସଙ୍ଗେ ତାଙ୍କୁ ଡାକ୍ତରଖାନା ନିଆଗଲା । ଅପରାଧୀ ପଛ ମେଙ୍ଗାବାବୁ ତା ସଙ୍ଗେ ସଙ୍ଗେ ଗଲେ ।

ଏଥର ଖୁବ୍ ଜୋରରେ ବିଜୁଳି ଆସିଲା । ସାହାବ ଉପହାର ଘର ଭିତରକୁ ପଶିଯାଇ ଦେଖିଲେ, ଗୁଡ଼ାଏ ଜିନିଷ ହରଣଚାଲ । ତା ପରିବର୍ତ୍ତେ କଳା କନାରେ ଗୁଡ଼ିଆ ହୋଇଥିବା ଗୋଟାଏ ବଡ଼ ପୁଡ଼ିଆ । ଏଇଟାତ ଆଗରୁ ନଥିଲା ? କୌତୁହଳୀ ହୋଇ ସେ ତାକୁ ଫିଟାଇଲେ । ବଡ଼ ପୁଡ଼ିଆ ଭିତରେ ଆଉ କେତୋଟି ଛୋଟ ପୁଡ଼ିଆ । ଗୋଟି ଗୋଟି କରି ଖୋଲି ତା ଭିତରେ ଥିବା ଚିଠି ଓ ଅଜବ ଉପହାର ସବୁ ଦେଖିଲେ । ଲେଖାଥିଲା—

"ବାବୁ ! ନମସ୍କାର ନିଅନ୍ତୁ । ଆପଣଙ୍କ କୁମ୍ଭୀର ହରଦମ ଯେମିତି ଆଲୁଅ ନିଭଉଛି ସେଥିରେ ମୋର ବହୁତ ମହମବତି କାଟ୍ତି ହୋଇଛି, ଆପଣ ଏମିତି କଲେ ମୋର ବେପାରରେ ଆହୁରି ଉଠିଆ ହେବ । ଆପଣଙ୍କ ଗୁଣ ସୁମରି ଏ ମହମବତିଟି ଆପଣଙ୍କ ସାହ ବଖତରେ ଭେଟି ଦେଲି"—

—"ଆମର ପକେଟମାରୁ ବେପାରରେ ଖୁବ୍ ବଢ଼ନ୍ତି ହୋଇଛି । ଆପଣଙ୍କ ଯୋଗୁଁ ଏ ବଢ଼ନ୍ତି । ଏ ପକେଟକଟା କଇଁଚିଟା ଉପହାର ଦେଲି—"

"ଆପଣଙ୍କ ଯୋଗୁଁ, ମାରୁଆଡ଼ ଦୋକାନମାନଙ୍କରୁ ବହୁତ ଥାନ ଶାଢ଼ୀ, ଲୁଗା ଉଠାଇ ଆଣି ପାରିଛୁ । ଏ ଥାନଟି ଦେଲୁ । ନିମକହାରାମୀ ଆମେ କେବେ କରିବୁନି"—

ଆଉ ଗୋଟିଏ ଚିଠିର ଦୁଇ ଗାରଧାଡ଼ ପଢ଼ି ତାକୁ ଘୃଣାରେ ଫିଙ୍ଗି ପକାଇଲେ । ସମୁଦାୟ ପଢ଼ିବା ତାଙ୍କ ଧୈର୍ଯ୍ୟର ବାହାରେ ଥିଲା ।

ଉପହାର ଥିଲା ଗୋଟାଏ ବ୍ରେଷ୍ଟ୍ ଟାଇଟ । ସେଇଟାକୁ ସେ ପଦାକୁ ଫୋପାଡ଼ ଦେଲେ ।

ଆଉ ଗୋଟିଏ ଚିଠିରେ ଲେଖା ଥିଲା—"ଆପଣଙ୍କ ଯୋଗୁଁ ଆମେ ବିଲକୁଲ କାମ ନ କରି ବହୁବାର ଦରମା ପାଇଛୁ—କୃତଜ୍ଞତାର ନିଦର୍ଶନ ସ୍ୱରୂପ ଏହି ସିଗାରେଟ୍ ବାକସଟି ଦେଲୁ—

ମୁହଁଟି ଶୁଖାଇ ଦେଇ ବଜ୍ରକୂଳ ସାହାବ ସେ ଘର ଭିତରୁ ବାହାରି ଆସିଲେ ଓ ପଦାରେ ଗୋଟିଏ ଚଉକିରେ ବସି ପଡ଼ିଲେ । ଜଣେ ଆସି ଖବର ଦେଲା—'ଆଜ୍ଞା ପହଲ ଭଲ ଅଛି, ଘା'ଟା ଗୁରୁତର ନୁହେଁ । ସାହାବଙ୍କର ଗୋଟାଏ ଶ୍ୱସ୍ତିର ନିଶ୍ୱାସ ବାହାରି ଗଲା ।



# ଶଠକୁ ଶାଠ

କଲକତାରୁ ଫେରିବା ବାଟରେ ଗାଡ଼ିରୁ ପ୍ରାୟ ଦିନ ନଅଟା ବେଳେ ଗାଁ ଷ୍ଟେସନରେ ଓହ୍ଲାଇପଡ଼ି ଫାଟକ ପାର ହେବା ମାତ୍ରେ ଚିଇଁଆ ଶୁଣିବାକୁ ପାଇଲି—"ଗୁଲସ୍, ଆସ୍ ଗୁଲସ୍, ହୁଁ ଗୁଲସ, ଗୁଲସ, ହୁଁ ଆସ୍ ଗୁଲସ୍, ଆସ୍ ଗୁଲସ୍···।" ଆଡ଼କୁ ସାଡ଼କୁ ବୁଲି ଦେଖିଲି ଜଣେ ଡେଙ୍ଗା, ଧେଡଆ, ଚନ୍ଦାମୁଣ୍ଡିଆ ଲୋକ ଏପରି ରଡ଼ି ଛାଡ଼ୁଛି। ସେ ରଡ଼ିଟା ଓଷଦର ପ୍ରଶ୍ନର କ ଚଟି ବହିର ବନ୍ଦି ପ୍ରଶ୍ନର ତାହା ଭାବୁ ଭାବୁ ଚଇଁ ବ ତା ପାଖରେ ପହଞ୍ଚିଗଲି। ତାକୁ ସମ୍ବୋଧନ କଲି ଭଳି ସେ ଡେଙ୍ଗା ଲୋକଟି ପୁଣି ସେହି ରଡ଼ି ଛାଡ଼ନ୍ତେ ଚଇଁ ପଚାରିଲି—"କଥା କଅଣ, କଅଣ କହୁଛ, ମୁଁ କିଛି ସମୁଝି ପାରୁନି।"

ଲୋକଟି ମୁରୁକି ହସା ଦେଇ କହିଲା—"ହେଁ—ହେଁ ଆଜ୍ଞା ଆଜି କାଲି ଦୁନିଆଟାକୁ ତ ଦେଖୁଥିବେ—ସବୁଠି ସବୁ କଥାରେ ସମସ୍ତେ ତରତର। ଏଥିକୁ ତରତର ହୋଇ କଥା ନ କହିଲେ ଚଳିବନି। ହେଁ, ହେଁ କଥା କ'ଣ କି ଏଠି ହୋଟେଲଟିଏ କରିଛି। ଯାଆନ୍ତା ଫେରନ୍ତା ଯାତ୍ରୀଙ୍କ ପାଇଁ ସବୁ ରକମ ବ୍ୟବସ୍ଥା ଅଛି। ଦାନ୍ତକାଠି, ଗୁଡ଼ାଖୁ, ବାହାର ଯିବା ଥାନ, ଗାଧୁଆ ପାଧୁଆ, ତତା ଚଇତନ, ଭୋଜନ, ଶୟନ ଓଗେର ସବୁ କିଛିର ବନ୍ଦୋବସ୍ତ କରିଛି। ଏକୁଟିଆ ଲୋକ ଆଜ୍ଞା। ଏଣେ ଯାତ୍ରୀଙ୍କୁ ଧରିବ ତେଣେ ସବୁ ବ୍ୟବସ୍ଥା କରିବ। ସମୟ ଅଣ୍ଟୁନି। ତର ତର ହୋଇ କହି ପକାଉଛି ଆସ, ଗୁଲଆସ। ଠିକଏ ଅଖାଡ଼ୁଆ ଶୁଭୁଥିବ ହେଁ ହେଁ ଆଜ୍ଞା ଆପଣ ଆସିବେ ?"

ଚଇଁଆର ଗ୍ରାମ ଅନନ୍ତ୍ୱା । ଦାନ୍ତ ବ ଘଷିନ । ବାହାର ଚଳବ ବ ମନ୍ଦ ଦେଖାଉନ । ଗୋଟିଏ ଅଖ୍ୟାତ ଗାଁ ଷ୍ଟେସନ ପାଖରେ ଏମିତିଆ ଏକ ହୋଟେଲ୍ ଯେ ତହିଁରେ ସବୁ ଜିନ୍ଷର ବ୍ୟବସ୍ଥା ରହିଛି । କଲିକତାର ବଡ଼ ବଡ଼ ହୋଟେଲ୍ ସଙ୍ଗେ ସମାନ କହିଲେ ଚଳେ । ଏ ସୁବିଧା କ ଆଉ କିଏ ଛାଡ଼େ । ସବୁକାମ ଏଇଠି ସାରି ଦେଇ ଗାଁକୁ ଯିବାକୁ ହେବ । ଦୀର୍ଘ ଦଶବର୍ଷର ଅନୁପସ୍ଥିତି ବେଳେ ଗାଁର ଏପରି ଉନ୍ନତି କମ୍‌ବଡ଼ କଥା-ନୁହେଁ ! ଦଶବର୍ଷ ପୂର୍ବେ ଯେତେବେଳେ ସେ ଏହି ଇଷ୍ଟେସନ ବାଟେ କଲିକତା ଯାଇଥିଲା, ସେତେବେଳେ ଷ୍ଟେସନ ମାଷ୍ଟର ଓ ପଏଣ୍ଟମ୍ୟାନ ଘରଛଡ଼ା ଅନ୍ୟ ଘର ବ ଏଠି ନ ଥିଲା । ହୋଟେଲ ତ ହୋଟେଲ ମୁଢ଼ିର ଗୁଳ ଦୋକାନଟିଏ ବ ନଥିଲା । ଏ ଦଶବର୍ଷ ଭିତରେ କଲିକତା ସାଙ୍ଗରେ ଟକ୍‌କର ଦବାଭଳି ହୋଟେଲଟାଏ ଏଠି ହୋଇଗଲାଣି ! ବାଃ ! ସାବାସ୍‌ରେ ଗାଆଁ !

ଚଇଁଆର ଏମିତିଆ ଭାବନା ସ୍ରୋତକୁ ବାଧାଦେଇ ଚନ୍ଦାମୁଣ୍ଡିଆ ଲୋକଟି ରଡ଼ି ଛାଡ଼ି ଲାଗିଲା—"ଆଜ୍ଞା ଚାଲସ, ଚାଲସ । ହୁଁ ଚାଲସ-ଆସ୍ ଚାଲସ !"

ଷ୍ଟେସନରେ ଚଇଁଆକୁ ମିଶାଇ ତିନଜଣ ଓହ୍ଲାଇଥିଲେ । ଚନ୍ଦା-ମୁଣ୍ଡିଆର ସାଦର ନିମନ୍ତ୍ରଣକୁ ସ୍ୱୀକାରକରି ତିନହେଁ ତା ପଛରେ ଚାଲିଲେ । ଚଇଁଆ ଚାରିଆଡ଼କୁ ଚାହିଁ ଦେଖିଲା ଆଖପାଖରେ କେଉଁଠି ହେଲେ କୋଠାଟିଏ ଦିଶୁନ । ତହୁଁ ସେ ଚନ୍ଦାମୁଣ୍ଡିଆକୁ ପଚାରିଲା—"ହଇହେ ହୋଟେଲଟା କେତେଦୂରରେ କହୋ ?"

"ଆଜ୍ଞା ହେଇଟି ପରା" କହି ହୋଟେଲଆଟି ଷ୍ଟେସନମାଷ୍ଟରଙ୍କ ଘରଠାରୁ ମାତ୍ର କୋଡ଼ିଏ ଗଜ ଦୂରରେ ଥିବା ଗୋଟିଏ ଖଣ୍ଡିଆମଣ୍ଡିଆ ଚାଟିଲଗା କୁଡ଼ିଆ ଦେଖାଇ ଦେଲା । ଚଇଁଆକୁ ଜଣାଗଲା ସତେକି ଯେପରି ସେ ସ୍ୱର୍ଗରୁ ପାତାଳକୁ ଖସି ପଡ଼ୁଛି । କାହିଁ କଲିକତା ଭଳି ବହୁମହଲା ବଶିଷ୍ଟ ସର୍ବସୁଖଦାୟୀ କୋଠା ହୋଟେଲ ଆଉ କାହିଁ ଚାଟିଲଗା ଭଙ୍ଗା କୁଡ଼ିଆ ବଶିଷ୍ଟ ହୋଟେଲ । ସେ ହତୋତ୍ସାହ ହୋଇ ପାଟି ଫିଟେଇଲା—

"ହଇହୋ ଏଇ ଟିକ ଥାନଟି ଭିତରେ ତୁମେ ଦାନ୍ତଘଷିବା ପୋଖରୀପାଣି ଯିବାପାଇଁ ପାଇଖାନା, ଗାଧୋଇବା ପାଇଁ ବାଥ୍‌ରୁମ୍, ଖାଇବା ପାଇଁ ଡାଇନିଂ ରୁମ୍, ଶୋଇବା ପାଇଁ ବେଡ୍‌ରୁମ୍ ଆଉ କେମିତି ଖଞ୍ଜି ରଖିଲ ?"

ଅତି ବିନୟର ସହ ହୋଟେଲିଆ ପାଗ୍ଗେଟିନେବା ଢଙ୍ଗରେ କହି ଲାଗିଲା—"ଆଜ୍ଞା ଆପଣମାନେ ବଜେ କରନ୍ତୁନା, ମୁଁ ସବୁ ବ୍ୟବସ୍ଥା କରିଦେବି । ଆପଣଙ୍କୁ କିଛି ଚିନ୍ତା କରିବାକୁ ପଡ଼ିବନି । ହୁଁ ଚାଲସ— ଆସ୍ ଚାଲସ—"

ତିନିଜଣଯାକ ତା ପଛେ ପଛେ ଯାଇ କୁଡ଼ିଆ ଭିତରେ ପଶିଲେ । ଚଇଁଆ ବ୍ୟତୀତ ଅନ୍ୟ ଦୁଇଜଣଙ୍କର ଖାଇବା ଛଡ଼ା ଅନ୍ୟ କିଛି କାମ ବାକି ନ ଥିଲା । ସେ ଦୁହିଁଙ୍କୁ ଲମ୍ବା ନଡ଼ିଆପତର ଗୁଣ୍ଡରେ ବସାଇ ଦେଇ ହୋଟେଲିଆ ଚଇଁଆର ଦେଖାଚାହିଁ କଲା । ତାର ପେଡ଼ିପୁଟୁଳା ନଡ଼ି-ପଦରେ ରଖାଇ ତାକୁ ପଦାକୁ ଡାକିନେଲା । ଆଙ୍ଗୁଠିରେ ଦେଖାଇ ଦେଇ କହିଲାଗିଲା—"ଆଜ୍ଞା, ହେ ସେଇ ଯୋଉ ସାହାଡ଼ା ଗଛଟା ଦେଖୁଛନ୍ତି ସେଇଠୁ ଖଣ୍ଡିଏ ଦାନ୍ତକାଠି ଭାଙ୍ଗିନେବେ । ପୁରୁଣା ଗଛ । ଭାରି ବଢ଼ିଆ ଦାନ୍ତକାଠି । ଯିଏ ଥରେ ଘଷିଛି ସେ ଝୁରୁଛି । ଯଦି ଗୁଡ଼ାଖୁ ଦରକାର ତେବେ ହେଇ ସେ ଯେଉଁ ପଏଣ୍ଟମ୍ୟାନ ଘର ଦେଖୁଛ ସେଇଠିକି ଯାଇ ଗୋଟେ ପାଞ୍ଚପଇସି ପକେଇ ଦେବେ ସେ ବଢ଼ିଆ ଆକବର ଖାଁ ଗୁଡ଼ାଖରୁ ଟେଳାଏ ଦେବ । ବାସ୍ ମନଇଚ୍ଛା ଘଷିନେବେ । ହେଇ ସେ ଯେଉଁ ବୁଦାଟା ଦିଶୁନି ସେଇଟି ଝାଡ଼ା ଫେରିବାକୁ ବଢ଼ିଆ ଜାଗା ଅଛି । ନିର୍ଘଟିଆ, ପରିଷ୍କାର ଥାନ । ଆରାମରେ ସେଠି ପୋଖରୀପାଣି ବସିବେ । ଆଉ ହେଇ ସେ ଯୋଉ ହୁଡ଼ାଟା ଦିଶୁଛି ସେଇଟା ହେଉଛି ନାଳ । କାଚକେନ୍ଦୁପରି ପାଣି । ଆତ୍ମା ତୃପ୍ତ ହୋଇଯିବ । ସେଇଠି ଶୌଚ ହୋଇ ପଡ଼ିବେ । ଗାଧୁଆ ପାଧୁଆ କରି ନିତ୍ୟକର୍ମ ସାରିଦେବେ । ହଁ, ସେ ପଏଣ୍ଟମ୍ୟାନ ଘରେ ନଡ଼ିଆ ତେଲ ବି ଅଛି । ଦରକାର ହେଲେ ପାଞ୍ଚପଇସିଟିଏ ପକେଇ ଦେଇ ତେଲ ଲଗେଇ ନେବେ । ଓଦା ଲୁଗାପଟା ଏଇ କତା ଦଉଡ଼ିରେ ଶୁଖେଇ ଦେବେ । ଚାହୁଁ ଚାହୁଁ ଶୁଖି ଖଡ଼୍ ଖଡ଼୍ ହୋଇଯିବ । ଆଜ୍ଞା ଆପଣ

ଏବେ ଶୀଘ୍ର କାମ ବଢ଼ାନ୍ତୁ; ମୁଁ ସେ ଦୁଇବାବୁଙ୍କ କାମ ସାରେ । ହଜୁ ଆଜ୍ଞା ଯିବା ହୁଅନ୍ତୁ—"

ସ୍କୁଲ ମାଷ୍ଟରପରି ଅନର୍ଗଳ ପାଠ ପଢ଼େଇ ଦେବା ପରେ ହୋଟେଲଆ ଅନ୍ୟ ଦୁଇଜଣଙ୍କର ଚର୍ଚ୍ଚା କରିବା ଲାଗି କୁଡ଼ିଆ ଭିତରେ ପଶିଲା । ଚଇଁଆ ଦାନ୍ତକାଠି ଘଷି ଗଲାବେଳେ ଭାବୁଥାଏ—କି ବିଚକ୍ଷଣ ନନା ଯେ ! ସବୁ ବ୍ୟବସ୍ଥା କରି ଦେଇଛନ୍ତି । ଖାଲି ହୋଟେଲ୍ ଭିତରେ ନ ହୋଇ ଯାହା ବାହାରେ ହୋଇଛି—ଦୀର୍ଘ ଦଶବର୍ଷ ଧରି କଲିକତାର ଶ୍ୱାସରୋଧକାରୀ ପରିବେଶ ଭିତରୁ ଗାଁ'ର ଖୋଲା ଥାନକୁ ବାହାରି ଆସିବାଟା ତାକୁ ବେଶ୍ ଆମୋଦଦାୟକ ଓ ଆରାମପ୍ରଦ ଜଣାଗଲା । କଲିକତା ସର୍ବସାଧାରଣ ପାଇଖାନାରେ ବସିଥିବାବେଳେ ବାହାରୁ କଡ଼ରେ ଠିଆ ହୋଇଥିବା ପାଇଖାନା ଯାତ୍ରୀଙ୍କ ଦୁଆର ଧଡ଼୍ ଧଡ଼୍, ବିରକ୍ତିସୂଚକ ଭାଷା, ଶେଷରେ ଗାଳିଗୁଲଜ ମଣିଷକୁ ଅଧାହଗା କରି ଘୁଞ୍ଚାଉଥିଲା । ସେ ପାଇଖାନାରେ ପୁଣି ଯେଉଁ ଗନ୍ଧ ! ପେଟ ଜିନିଷଗୁଡ଼ାକ ଉପର ବାଟରେ ବି ବାହାରି ଆସିବାର ଉପକ୍ରମ କରୁଥିଲା । କିନ୍ତୁ ଆଃ ! ଏ ବୁଦା ଉହାଡ଼ ! ଆଃ ! କି ଆରାମ ! ଖୋଲା ବିଶୁଦ୍ଧ ପବନ । ଦୁର୍ଗନ୍ଧର ସନ୍ଧି ନାହିଁ ବରଂ ବଣୁଆ ଫୁଲର ବାସ । ଓଳିଏ ବସି ହଗିଲେ ବି ହୋ ହା କରିବାକୁ କେହି ନାହିଁ । ବେଧଡ଼କ ହଗୁଥାଅ । କିଛି ଚିନ୍ତା ନାହିଁ । ଦୂର୍ ଦୂର୍, ସେ କଲିକତାର ପାଇପ୍ ପାଣି । ବିହନରେ ପାଣି ପଡ଼୍ ନ ପଡ଼ୁଣୁ ପଛବାଲା ଠେଲି ପେଲି ପଶି ଯାଉଥିବ । ସେ ଗାଧୁଆକୁ ଧିକ୍ । ଆଃ ! ନାଳର ଏ କାଚକେନ୍ଦୁ ପାଣି ! ମନଇଚ୍ଛା ଉବେଇ ଟୁବେଇ ହେଉଥାଅ । ଦିନ ଗୋଟାଏ ପାଣିରେ ଗାଡ଼ଧାଇଲେ ବି କେହି କହିବାକୁ ନାହିଁ । ଚଇଁଆର ମନ ତୃପ୍ତି ହୋଇଗଲା । ନନାର ହୋଟେଲ୍ ବିଜ୍ଞାପନ କଥା ପାଶୋରି ପକେଇଲା । ଗାଧୁଆ ପାଧୁଆ ସାରି, ହୁଡ଼ା ଉପରକୁ ଉଠିବା ମାତ୍ରେ ଚଇଁଆ ଦେଖିଲା ଦୂରରେ କୁଡ଼ିଆ ପଛରେ ନନା ଲୁଚିଲା ପରି ବସି ରହିଛି । ଚଇଁଆ ଭାବିଲା ବୋଧହୁଏ ତାରି ବାଟକୁ ଚାହିଁ ବସିଛି । ଚର୍ଚ୍ଚା କରିବାରେ ପ୍ରୋଷିତ ଲୋକଟାଏ ଏକା । ନନା ପାଖରେ ପହଞ୍ଚିବା ମାତ୍ରେ ସେ ଏକ ବିଶ୍ୱସ୍ତ କୁକୁର, ପ୍ରଭୁ ପାଖରେ ଆନନ୍ଦ ପ୍ରକାଶ କଲା ପରି

ନାନା ମୁଦ୍ରା ଦେଖାଇ କହି ପକାଇଲା—"ଆଜ୍ଞା ନିତ୍ୟକର୍ମ ସରିଗଲା ତ ? କିଛି ଅସୁବିଧା ହୋଇନାହିଁ ତ ? ଆଜ୍ଞା ନାଳ ପାଣି କେମିତି ଦେଖିଲେ ? ଆଃ ! ସେ ପାଣିରେ ଦେହ ମନ ସବୁ ତୃପ୍ତ ହୋଇଯାଏ । ଆଜ୍ଞା କିଛି ତଳକ ମାଟି କରିବେ ନା ଚଟାପଟ୍ ପତର ପକେଇବାର ବ୍ୟବସ୍ଥା କରିବି—?"

ସେ ଆଉ କଅଣ ପଚାରିବାକୁ ଯାଉଥିଲା । ହଠାତ୍ ତା ନଜରରେ ପଡ଼ିଲା ପତରରେ ବସେଇ ଦେଇ ଆସିଥିବା ଦୁଇଜଣ ଲୋକ ଭୋଜନରୁ ଉଠି ହାତ ଧୋଇବାର ଉପକ୍ରମ କରୁଛନ୍ତି । ଚଇଁଆ ପାଖରୁ ଛୁଟିପିଟି ହୋଇ ତାଙ୍କ ପାଖକୁ ଧାଇଁଯାଇ ମହା ବ୍ୟସ୍ତରେ କହି ଲାଗିଲା—"ଆହା ! ଚଣ୍ଡାଳ ମୁଁ କଅଣ କଲି ! ବାବୁମାନେ ଅଧାଖିଆ ହୋଇ ଉଠିଗଲେ । ଧିକ୍ ମୋତେ ଧିକ୍, ମୋ ହୋଟେଲ୍କୁ ଧିକ୍ । ଆଜ୍ଞା କଅଣ କରିବି, ଏକୁଟିଆ ଲୋକ । ସବୁଆଡ଼େ ନ ଚାହିଁଲେ ନ ଚଳେ । ଆଜ୍ଞା ଟିକିଏ ବଡ଼ ପାଟି କରି ଡାକ ଦେଇଥିଲେ ମୁଁ ଧାଇଁ ଆସି ଥାଆନ୍ତି । ପଛରେ ଯାହା ଦରକାର ଦେଇଥାଆନ୍ତି । ଚଣ୍ଡାଳ ମୁଁ ପରା ଭାବୁଥିଲି—ବାବୁମାନେ ଭଦ୍ରଲୋକ, ଖାଇଲା ଘରର ପିଲା, ବୁନିଆଦ ବଂଶରେ ଜନ୍ମ । କାଳେ ଲାଜ କରି ପଛରେ ନ ମାଗିବେ ! ଚଣ୍ଡାଳ ମୁଁ ଯାହା ଭାବିଥିଲି ସେଇଆ ହେଲା । ଧିକ୍ ମୋ ଜନମକୁ ଧିକ୍ ।" ଏତିକ କହି ସାରିବା ସଙ୍ଗେ ସଙ୍ଗେ ନିଜ ଦୁଇ ହାତରେ ଦୁଇ ଗାଲକୁ ଠୋ ଠା ଦୁଇଟା ଚାପୁଡ଼ା ବସେଇ ଦେଲା ।

ହାତ ଧୋଉ ଧୋଉ ଜଣେ ଭୋକ୍ତା କହିଲା—"ଛାଡ଼ ହୋ ସେ କଥା । କାମତ ସରିଲାଣି ଆଉ ଚାପୁଡ଼ା ମାରି ହୋଇ ଲାଭ କଅଣ ?" ଆଉ ଜଣକ କହିଲା—"ଆମେ ଦଶ ପନ୍ଦର ଡାକ ଦେଲୁ । କେହି ନ ଶୁଣିଲାରୁ ବାଧ୍ୟହୋଇ ପତରରୁ ଉଠି ହାତ ଧୋଇଲୁ । ଯାହା ହେବାର ହୋଇଗଲାଣି ଆଉ ବ୍ୟସ୍ତ ହୋଇ ଲାଭ ନାହିଁ ।"

ବଡ଼ କୃତଜ୍ଞ ଭଂଗୀରେ ନନା କହିଲା—"ଆଜ୍ଞା ଆପଣମାନେ ଧନ୍ୟ, ବୁନିଆଦ ଘରର ଖାଇ ଆସିଥିବା ପିଲା ବୋଲି ସିନା କଥାଟାକୁ ଧରିଲେ ନାହିଁ । ଅମୀର ମିଜାସର ଲୋକ ଆପଣମାନେ । ପୂରା ନ ଖାଇଥିଲେ

ବ ଟଙ୍କାଏ ଟଙ୍କାଏ ଢ଼' ଟଙ୍କା ପକେଟରୁ କାଢ଼ି ଫୋପାଡ଼ି ଦେବେ । ନ ମାଗିଲେ ବ ଆପଣମାନଙ୍କର ମଣିଷପଣିଆ ପୂର୍ବ ଦାମ ଠଣ୍ ଠାଣ୍ ପକେଇଦେବ । ଆଜ ଆପଣମାନେ ନ ହୋଇ ଯଦି ଆଉ କେହି ଛତରଖିଆ ଏଠାକୁ ଆସିଥାଆନ୍ତା, ମୋ ଅବସ୍ଥା କଅଣ ହୋଇଥାଆନ୍ତା ! ଦୁଇଟି ମିଲ୍‌ର ଦାମ୍ ଦୁଇଟଙ୍କା ଆଉ ମୁଁ ପାଇଥାଆନ୍ତି ? ସେମିତି ଦୟାଳୁ ହୃଦୟ ଆପଣଙ୍କର ବୋଲି ଆପଣ କଥାଟାକୁ ଧଇଲେ ନାହିଁ । ମୋର କେଉଁ ସୁକୃତ ଥିଲା, ଯାହାକି ଆପଣ ଦୁଇଜଣଙ୍କ ପାଦଧୂଳି ମୋ ହୋଟେଲ୍‌ରେ ପଡ଼ିଲେ ପଡ଼ିଲା । ହଉବାବୁ ! ଅଇଣ୍ଠା ପତ୍ରର ଦୁଇଟା ନେଇ ସେ ଗାତରେ ପକାଇ ଦିଅନ୍ତୁ । ଗୃହର ଟୋକାଟା ଗାଁ'କୁ କାଲି ଛୁଟି ନେଇ ପାଇଛି ।"

ଭେକ୍ତା ଢ଼' ଜଣ ମନ୍ତ୍ରମୁଗ୍ଧଙ୍କ ପରି ଅଇଣ୍ଠା ପତ୍ରର ଓ ଠୋଲସବୁ ଗାତରେ ପକାଇ ଦେଇ, ମୁହଁ ହାତ ଧୋଇ ଗାମୁଛାରେ ପୋଛିଲେ । ପଇସା ଦେବା ସମୟ ହେଲାରୁ ନନା ପୁଣି ବଳବଳେଇଲା—'କପାଳରେ ମୋର ନାହିଁ ଯେମିତିଆ ଠାକୁର ଗରାଖ ଢ଼'ଜଣ ଆଜି ପଇଥିଲି ଦେଡ଼ଟଙ୍କା ଲେଖାଏଁ ତିନିଟଙ୍କା ଠୋପଟାସ୍ ମିଳିଥାନ୍ତା । ତା ଉପରେ ଉଣା ବକ୍‌ସିସ୍ ମିଳି ନ ଥାନ୍ତା ! କୋଉ ମୁହଁରେ ଆଉ ମାଗିବି । ଠାକୁର ଦୁହିଁଙ୍କୁ ସନ୍ତୁଷ୍ଟ କରିପାରିଲି ନାହିଁ । ମୋ କପାଳରେ ନାହିଁ । ଦିଅନ୍ତୁ ବାବୁ, ଟଙ୍କାଏ ଲେଖାଏଁ ଦିଅନ୍ତୁ । ବେଶି ମାଗିବାକୁ ମୋର ମୁହଁ ନାହିଁ ।"

ଭେକ୍ତା ଢ଼' ଜଣଙ୍କ ଅଧା ପେଟ ନନାଙ୍କ କଥାରେ ସତେ ଯେମିତି ପୂରିଗଲା । ଦୁହେଁ ଗୋଟିଏ ଗୋଟିଏ ଟଙ୍କିକିଆ ନୋଟ୍ ତା ହାତରେ ଗୁଞ୍ଜିଦେଲେ । ସଙ୍ଗେ ସଙ୍ଗେ ନନା ପୁଣି ବୋବେଇ ଉଠିଲା —"ଆଜ୍ଞା ପାନ, ବଡ଼ ଦରକାର ତ ନେଇ ସେ ଯୋଉ ପଏଣ୍ଟମ୍ୟାନ୍ ଘର ଦେଖୁଛନ୍ତି ସେଇଠି ପାଇବେ । ମୋ ନାଁ କହିଦେଲେ ପାଞ୍ଚ ପଇସାରେ ଖଣ୍ଡେ ଲେଖାଏଁ ଖିଲି ଆଉ ପଇସାରେ ଦୁଇଟା ବଡ଼ିଦେବ । ଆଉ ଟିକିଏ ଯଦି ଆସକତି ମାରିବେ ତେବେ ହୋ—ସେଇ ଯୋଉ ଷ୍ଟେସନ ଘର ପଛ

ପଟେ ବରଗଛଟା ଦେଖୁନାହାନ୍ତ, ସେଠି ଗୋଟିଏ ପକା ପିଣ୍ଡି ଅଛି, ଗାମୁଛାରେ ଝାଡ଼ିଦେଇ ଗଡ଼ିପିବେ । ବରଗଛ ଛାଇ ! ଆଖିରେ ନିଦ ପୂରେଇ ଦେବ । ଆଜ୍ଞା ଶୀଘ୍ର ଚାଲ ଯାଆନ୍ତୁ । ନ ହେଲେ ଆଉ କିଏ ଯାଇ ଗଡ଼ ପଡ଼ିବ । ଆଜ୍ଞା ଶୀଘ୍ର ଯାଆନ୍ତୁ ।"

ନନାର ଏ ସବୁ କାରବାର ଦେଖି ଚଇଁଆ ମନ ଟିକିଏ ମୋଡ଼ ମୋଡ଼ ହେଲା । ସେ ଭାବିଲା—ଭୋକିଲା ଦି ଜଣ ଏତେ ଚାଲିଥିଲେ । ହୋଟେଲ୍ ପଛରେ ଠିଆ ହୋଇଥିଲେ ସୁଦ୍ଧା ନନାକୁ ଶୁଭିଲାନି କପରି ? ଏଥିରେ ନିଶ୍ଚେ କିଛି ଚାଲ୍‌ବାଜି ରହିଛି । କଲିକତାରେ ସେ ଧାଡ଼ି ଦଶବର୍ଷ କାଳ କଟେଇଛି । ଏପରି ପାଣିରେ ସର ପକାଇବା କଥାର ମତଲବ କଅଣ ସେ ବୁଝିନି ? ମୂଳରୁ ହୁସିଆର ରହିବା ଉଚିତ୍ ବୋଲି ସେ ମନେ ମନେ ଠିକ୍ କରିନେଲା । ଟଙ୍କା ଦୁଇଟି ନିରାପଦ ସ୍ଥାନରେ ରଖିଦେଇ ନନା ଡାକିଲା, "ଆଜ୍ଞା ଠା ପିଢ଼ାରେ ବସିବା ହୁଅନ୍ତୁ ।"

ହୋଟେଲକୁ ପିଢ଼ା ବି ଠିକ୍ ଖାପି ଯାଇଥିଲା । ଏକ ଫଟା ପଟାରେ ଦୁଇଖଣ୍ଡ କାଠ ଲଗିଛି । ଜୀବନ ଯାଉଛି କି ଆସୁଛି । ପିଢ଼ା ଉପରେ ଅତି ଗମ୍ଭୀର ଭାବରେ ବସିବା ମାତ୍ରେ ଚଇଁଆ 'ବୋପାଲୋ' ବୋଲି ଚିତ୍କାର କରି ଉଠିପଡ଼ିଲା ଓ ନିଜ ପିନ୍ଧାକୁ ଆଉଁସିବାରେ ଲାଗିଲା । ନନା ବି ଅସ୍ତବ୍ୟସ୍ତ ହୋଇ ଅପରାଧୀଟି ପରି କହିଲା—"ଆହା ! ଫଟାଟା ଉପରେ ପିନ୍ଧାଟା ରହିଗଲା ପରା ! ପିନ୍ଧା ଚିମୁଟି ହୋଇଗଲା ବୋଧହୁଏ ।"

ଚଇଁଆ ଚିଡ଼ିଯାଇ ପାଟି କଲା—"ଓ—ହୋ—ହୋ—ଚିମୁଟୁଛି ବୋଲି ଜାଣୁଛଟି ? ଏମିତିଆ ଫଟା ପିଢ଼ା ରଖିଛ କାହିଁକି ? ଭଲ ପିଢ଼ାଟାଏ ରଖିପାରୁନ ?"

ନନା ଅତି ଦୁଃଖ ପ୍ରକାଶ କରି କହିଲା—"ଆଜ୍ଞା ସେ ଶଳା ଛତରା ବଢ଼େଇକୁ ପନ୍ଦର ଥର କହିଲିଣି ନୂଆ ପିଢ଼ା ଗୋଟାଏ କରି ଦେବାକୁ । ଅଲପେଇସଟା ହଁ ଦଉଛି, ହେଇ ଦଉଛି କହି ଠକିବାରେ ଲାଗିଛି । ଅଃ ! କି ଦୁର୍ଯୋଗ !" ପିନ୍ଧାପାଖ ଲୁଗାକୁ ପରୀକ୍ଷା କରି ସେ ପୁଣି

ଉତ୍ସାହଭରା କଣ୍ଠରେ କହିବା ଲାଗିଲା—"ଆଜ୍ଞା ଟିକିଏ ଡେରି ହୋଇଗଲା ସିନା, ହେଲେ ରନ୍ଧାବଢ଼ା ହୋଇନାହିଁ । ଆଉ କଷ୍ଟ ହବନି । ଉଃ ! ବଡ଼ ଦୁର୍ଯୋଗର କଥା । ହଉ ହଉ, ପଟେଇଟାଏ ଦେଉଛି ବସନ୍ତୁ ।"

ପିଠି ଆଉଁସି ଆଉଁସି ଚଇଁଆ ଡାଳପତ୍ର ପଟେଇରେ ବସିଲା । ଖାଲି ଓ ପତ୍ରର ଡୋଲାରେ ନନା ଭାତ ଡାଲି ଓ ତିଅଣ ବାଢ଼ିଦେଲା । ଶାଗ, ଲୁଣ, ଲଙ୍କା ଯେଉଁଠି ଯେମିତି ପରଶିବାର କଥା ସେମିତି ଦେଇଦେଲା । ଖାଇବା ଆରମ୍ଭ କରି ଚଇଁଆ ପଚାରିଲା—"ମାଛ, ଫାଛ କିଛି ନାହିଁକି ? ସେଥିରୁ ଟିକିଏ ନ ହେଲେ ଭାତ ନ ଉଠେ । ଦଶବର୍ଷର ଆଦତ୍ ଛାଡ଼ି ହେଉନି ।"—

ନନା ଚଟାପଟ୍ ଉତ୍ତର ଦେଲା—"ହଁ ଅଜ୍ଞା ଅଛି, ଦେଉଛି । ଆମିଷ ଚଳେ କି ନାହିଁ ପଚାରିବି ପଚାରିବି ହେଉଥିଲି ଆପଣତ କହିଦେଲେ, ହଉ ଆଣୁଛି"—ଏହା କହି ସେ ରୋଷେଇଘର ସିକାରେ ଥିବା ଗୋଟିଏ ସିଲଭର ହାଣ୍ଡିରୁ ଖଣ୍ଡିଏ ମାଛଭଜା ଆଣି ପତ୍ରରେ ଥୋଇଲା । ପାଞ୍ଚ ଦଶ ସେକେଣ୍ଡ ଯାଇଛି କି ନାହିଁ ହଠାତ୍ ଚଳେଇ ଉଠିଲା—"ଆଲେ ଆଲେ ସରିତ ଗଲା, ମୋର ବିଲ୍‌କୁଲ୍ ମନେ ନାହିଁ । ଆଜ୍ଞା ଖାଉଥାଆନ୍ତୁ ମୁଁ ଯାଉଛି ଯାଉଛି ଆସୁଛି ।"

ଏତିକ କହି ନନା ଛୁଟିପିଟି ହୋଇ ହୋଟେଲ ଛାଡ଼ି କେଉଁଆଡ଼େ ପଳେଇଗଲା । ଖିଆ ଅଧାଅଧି ବେଳକୁ ପତ୍ରରୁ ତିଅଣ ସରିଲାଣି । ଚଇଁଆ ଡାକଦେଲା—"ନନା କୁଆଡ଼େ ଗଲ ? ହୋ ନନା" ଦଶ ଡ଼ାକଗଲା, ଡାଲି ଓ ମାଛ ସରିଲା । ଆହୁରି ଦଶ ପନ୍ଦର ଡାକ ପଡ଼ିଲା, ନନା ଏକାବେଳକେ କୁଆଡ଼େ ଉଭାନ୍ । ଏବେ ଚଇଁଆକୁ ସବୁ ଜଳ ଜଳ ହୋଇ ଦିଶିଲା । ଆଗ ଦୁଇଜଣ ଖାଇଲାବେଳେ ସେ ହୋଟେଲ ପଛଆଡ଼େ କାହିଁକି ଲୁଚିରହି ଡାକରା ଶୁଣୁ ନ ଥିଲା ତାହା ସେ ବେଶ୍ ବୁଝି ପାରିଲା । ଲୁଣ, ଲଙ୍କା ଓ ଶୁଖିଲା ଭାତତକ ଉଦରସ୍ଥ କରି ସେ ହାତ ଧୋଇବାକୁ ପଦାକୁ ଗଲା । ସଙ୍ଗେ ସଙ୍ଗେ ନନା କେଉଁଠୁ କେଜାଣି ଧାଇଁଆସି ଭୂତପରି

ପହଞ୍ଚିଗଲା ଓ ପୂର୍ବ ଦୁଇଜଣଙ୍କ ପାଖରେ କଲାପରି ଅସ୍ତବ୍ୟସ୍ତ ହୋଇ ଅତି କାତରଭାବରେ କ୍ଷମା ପ୍ରାର୍ଥନା କଲା । ଚଇଁଆ କିନ୍ତୁ ମନକଥା ମନରେ ଗୁପ୍ତିରଖି କହିଲା—"ହଉ ଗୁଡ଼ ସେ କଥା, ଏକୁଟିଆ ଲୋକ, କେତେ ଆଡ଼କୁ ହେବ । ଆମେତ ପୁଣି ମଣିଷ, ମଣିଷର ବେଳ ଅବେଳ ପୁଣିତ ଅଛି । ଏସବୁ ସାମାନ୍ୟ କଥାକୁ ଧରିଲେ ଚଳିବ ନା ? ହଉ ଯାହା ହେବାର ହେଲାଣି । ଗୁଡ଼ ସେକଥା—ହଉ, କେତେ ଦେବ କହିଲ ?"

ନନା ପୂର୍ବପରି ଭଙ୍ଗି ଦେଖାଇ କହିଲା—"ଆଜ୍ଞା ଆପଣଙ୍କ ପରି ମହତ ଲୋକଙ୍କୁ ମୁଁ କୋଉ ମୁହଁରେ ଦେଢ଼ଟଙ୍କା କହିବ ! ଆପଣ ଯାହା କାଟିଦେବେ ତାହା ମୋର ସଇ । ଗୁଣ୍ଡାଳଟା ମୁଁ ଯଦି ଆପଣଙ୍କୁ ସନ୍ତୁଷ୍ଟ କରିପାରି ଥାଆନ୍ତି, ତେବେ ଆପଣ ମୋତେ ଦେଢ଼ ଜାଗାରେ ଦୁଇ ଦେଇ ଥାଆନ୍ତେ ।"

ଚଇଁଆ ପେଟ କଥା ପେଟରେ ରଖି କହିଲା—"ଏ—ହେ ସେସବୁ କଟାକଟି କାମ ମୋତେ ଆସେନା । ଆଠଣା, ଗୁରଣା କାଟିଦେଇ ମୁଁ କ'ଣ ଧନୀ ହୋଇଯିବି । ନିଅ ପୂରା ଦେଢ଼ଟଙ୍କା ନିଅ"—

ଦେଢ଼ଟି ଟଙ୍କା ଅଣ୍ଟାରେ ଖୋସି ନନା କହିଲା—'ଆଃ ! ହୋଟେଲ୍ କଲା ଦିନଠାରୁ ଏମିତିଆ ଅମୀର ମିଜାଜ କାହାରି ପାଖରେ ଦେଖିନି । ଆଜ୍ଞା ପାନ, ବିଡ଼ି ଆଣିବି ?"

"ନା—ନା—ମୋ ପାଖରେ ସବୁ ଅଛି । ମୁଁ ସଙ୍ଗେ ସଙ୍ଗେ ଗାଁ'କୁ ବାହାରିଲି ଜାଣ । ଆସନ୍ତା ବୁଧବାର ଦିନ ମୁଁ ଓ ଗାଁ'ରୁ ଆଉ ଚାରିଜଣ ତମ ହୋଟେଲ ହୋଇ ଏଇ ଷ୍ଟେସନରେ କଲିକତା ଗାଡ଼ି ଧରିବୁ । ଆମ ପାଞ୍ଚଜଣଙ୍କ ପାଇଁ ବଢ଼ିଆ ମାଛ ତରକାରି ଓ ଭଜା ରଖିବ । ଯାହାବି ପଡ଼ିବ ଆମେ ଦେବୁ, ହେଲେ ବଢ଼ିଆ ଖାନା ଖୁଆଇବ—"

ଏତକ କହି ଚଇଁଆ ଗାଁ' ବାଟ ଧରିଲା । ନନା ଭିତରି ମନେ ମନେ ଭାରି ଛଟପଟ ହେଲା । ଭାବିଲା—ଇସ୍ ! କି ଭୁଲଟାଏ ହୋଇଗଲା ।

ଦି’ଟଙ୍କା ମାଗିଥିଲେ ପକେଇ ଦେଇ ଥାଆନ୍ତା । କଲିକତାରେ ବେପାର ଫେପାର କରି ଗୁଡ଼ାଏ ଟଙ୍କା ଜମେଇଛି ବୋଧହୁଏ । ଗ୍ରହଡ଼ ମୋ ଭାଗ୍ୟରେ ନାହିଁ । ହଉ ବୁଧବାର ଦିନତ ଆସିବ ବୋଲି କହିଛି । ସାଙ୍ଗରେ ପୁଣି ଚାରିଜଣ ଆଣିବ । ପାଞ୍ଚଜଣଙ୍କୁ ପଟକେଇ ପନ୍ଦର ଟଙ୍କା ଆଦାୟ କରିନେବ । × ×

କଥା ମୁତାବକ ବୁଧବାର ଦିନ ଗାଡ଼ି ବେଳକୁ ଚଇଁଆ, ଚାରି-ଜଣଙ୍କୁ ସଙ୍ଗରେ ଧରି ନନା ହୋଟେଲ ପାଖରେ ପହଞ୍ଚିଲା । କୋଟିନିଧି ପାଇଲା ପରି ନନା ଆନନ୍ଦରେ ଅସ୍ଥିର ହୋଇପଡ଼ି ନସର ପସର ହେବାକୁ ଲାଗିଲା । ଜଣା ଯାଉଥାଏ ସତେକି ଯେପରି ବାହାଘର ବେଳେ ବର ଆସି ପହଞ୍ଚିଗଲାରୁ ଶଶୁର ବାପୁଡ଼ା ଅତି ଉତ୍ସାହରେ ଧାଁ ଧପଡ଼ କରୁଛି । ମେସିନ୍‌ଗନ୍ ବୁଲେଟ୍ ପରି କଥାଗୁଡ଼ାକ ଅବଶ୍ରାନ୍ତ ଭାବରେ ମୁହଁରୁ ଛୁଟି ଲାଗିଛି । କଣ୍ଢଟା ଏଣେ ଅଠର ଥର ଫିଟି ଯାଉଛି ଆଉ ବାଁ ହାତରେ ଚଟାପଟ୍ ସେ ତାକୁ ଖୋସି ଦେଉଛି । ପାଞ୍ଚଜଣ ଯାକ ତା’ର ଛଟପଟିଆ ଅବସ୍ଥାକୁ ବେଶ୍ ଉପଭୋଗ କଲେ ।

ହାତ ମଳି ମଳି ନନା ପଚାରିଲା—ଆଜ୍ଞା—ଗାଡ଼ି ଟାଇମ ହୋଇ ଗଲାଣି, ପଡରା ପକାଉଛି ? ପହିଲି ଘଣ୍ଟା ବାଜିଗଲାଣି । ବହୁତ ଡେରି କରିଦେଲେ ଆଜ୍ଞା । ଏହିକ୍ଷଣି ଠା’ରେ ବସିଲେ ଗାଡ଼ି ପାଇଯିବେ—।”

ସମସ୍ତଙ୍କର ସମ୍ମତି ଜାଣିବା ସଙ୍ଗେ ସଙ୍ଗେ ପାଞ୍ଚଗୋଟି ଠା ସଜିଲ ହୋଇଗଲା । ବଡ଼ ବଡ଼ ଧନୀ ଗରାଖ ! ତେଣୁ ନନା ଷ୍ଟେସନ୍ ମାଷ୍ଟର ଓ ପଏଣ୍ଟମ୍ୟାନ ଘରୁ ପାଞ୍ଚଟି କାଚ ଗିଲାସ ସଂଗ୍ରହ କରିଥିଲା । ସେଥିରେ ପାଣି ଭରି ଥୋଇଦେଲା । ସମସ୍ତେ ଖାଇ ବସିଲେ । ଖିଆ ଗୁରିପଣ ହେବାପରେ ମାଛ ଭଜା, ତରକାରି ଆସିଲା । ସମସ୍ତେ ମୁରୁକି ହସା ଦେଇ ମୁହଁ ତଳକୁ ପୋତି ଖାଇ ଲାଗିଥାନ୍ତି । ବେଳ ଉଣ୍ଡି ନନା—“ଆଜ୍ଞା ଖାଉଥାଆନ୍ତୁ ଗୋଟିଏ କାମ ସାରିଦେଇ ମୁଁ ଆସୁଛି । ଦରକାର କିଛି ହେଲେ ଡାକିବେ । ମୁଁ ସଙ୍ଗେ ସଙ୍ଗେ ଚାଲି ଆସିବି” ବୋଲି କହି ବାହାରକୁ ଚାଲିଗଲା ।

ଚଇଁଆ ସାଙ୍ଗେ ସାଙ୍ଗେ ଆଦେଶ ଦେଲା—"ଆରେ ଆଉ ଡେରି କରନା, ଦେଖିଛତ ମାଛଭଜା, ତରକାରୀ ଯେଉଁଠି ଅଛି, ନେଇଆସ ।" ଅଇଁଠା ହାତରେ ହାଣ୍ଡିରୁ ସମସ୍ତେ ବୋହି ଆଣିଲେ । ତରକାରୀ ହାଣ୍ଡିରୁ ମାଛତକ ଛଣାହୋଇ ଆସିଲା, ଭଜା ହାଣ୍ଡି ସଫ୍ ହୋଇଗଲା । କଣ୍ଟା-ଗୁଡ଼ାକ କାଳେ ନନା ଦେଖିଲେ ସନ୍ଦେହ କରିବ ସେଥିଲାଗି ସେଗୁଡ଼ିକୁ ତରକାରୀ ଓ ଭଜାହାଣ୍ଡି ଭିତରେ ଥୋଇ ଦେଇ ଘୋଡ଼େଇ ଦିଆଗଲା । ସବୁକାମ ସାରି ସମସ୍ତେ ପଦାକୁ ଆସିବା ମାତ୍ରେ ନନା ଆସି ଅଭିନୟ ଆରମ୍ଭ କରିଦେଲେ । ନନାର ସ୍ପର୍ଦ୍ଧା ମିଲ୍ ଗୋଟାକ ତିନିଟଙ୍କା ଆଉ ଶ୍ରୋତାଙ୍କର ମିଲ୍ ଗୋଟାକ ଦୁଇ ଟଙ୍କାରୁ ବେଶୀ ଦେବେନି ବୋଲି ଜିଦ୍ ଭିତରେ ଟଣାଟଣି ଲାଗିଲା । ନନା ମନେ ମନେ ଭାବୁଥାଏ ଟଙ୍କାକିଆ ମିଲ୍କୁ ଦୁଇଟଙ୍କା ମିଳିଲାଣି, ଉପର ଆପତ୍ତିରେ ଯାହା ମିଳିବ ସେଇ ସଇ ।

ଯୋଗକୁ ଗାଡ଼ି ଆସି ପହଞ୍ଚିଗଲା । ଏଗାରଟା ଟଙ୍କା ଆଉ ଗୋଟିଏ ପଚଶିପଇସି ପକାଇ ଦେଇ ସମସ୍ତେ ଧାଇଁ ପଳାଇଲେ । ନନା ଆନନ୍ଦରେ କହି ପକେଇଲା—"ଯଥାଲାଭ, ଅଃ ! ଏମିତିଆ ଗରାଖ ନିତି ପାଆନ୍ତି ଅଟା ମିଳନ୍ତେକି, ଗୋଟାଏ ବର୍ଷରେ କୋଠା ବାଡ଼େଇ ଦିଅନ୍ତି ।"

# ବାଡ଼ପଟିଆ ପାଣ୍

ଦାନୁ ଓ ମନୁ ଦୁହେଁ କଲେଜ ଫାଟକ ପାଖରେ ଗୋଟିଏ ଲେଖାଏଁ ବୋଲୁଅ ଧରି ନୁଙ୍ଗୁର ପୁଙ୍ଗୁର ହେଉଥାଆନ୍ତି । ବହୁତ ସମୟ ଅପେକ୍ଷା କରିକରି ଗୋଡ଼ ଢୋଲେଇ ହେଲାଣି । ନାଳପେଣ୍ଟ ହେବାରୁ ବସିହେଉନ, ଆଖ ପାଖରେ ଉଚ୍ଚ ଜାଗା କି ପଥରୁ ଟାଏ ନାହିଁ ଯାହାକୁ କି ଟୁଲ୍ ପରି ବ୍ୟବହାର କରି ହେବ । ବିରକ୍ତ ହୋଇ ଶେଷରେ ଦୁହେଁ ବୋଲୁଅ ଦୁଇଟାକୁ ତଳେ ପକାଇ ଦେଲେ ଓ ଥଣ୍ଟିଆ ଜୋତା ଅଗରେ ଘୁଞ୍ଚେଇ ଠିକଣା ଥାନରେ ରଖିଦେଲେ । ହାତଟା ଝାଡ଼ିଦେଇ ମନୁ କହିଲା, "ଦାନୁ ! ସେଇଟା ଜାଣି ପକେଇଲା କରେ ? କାହିଁ ଏତେବେଳ ଯାଏ ତ ଆସିଲା ନାହିଁ । କଲେଜ ଭିତରେ ଲୁଚିଲାଣି କମ୍ବା ପଛ ଗେଟ୍ ବାଟେ ଖସି ପଳେଇଲାଣି ।"

ମୁଣ୍ଡ କୁଣ୍ଡେଇ କୁଣ୍ଡେଇ ଦାନୁ କହିଲା—"ତୁ ପରୀକ୍ଷା ହଲ୍‌ରୁ ଆସିଲା ବେଳେ କାହାକୁ କଅଣ କହିଥିଲୁ କି ?"

"ନାହିଁ ତ—ସରମ ଆଉ ରାଗରେ କେମିତି ପଦାକୁ ଆସିବି ବାଟ ଦିଶିଲା ନାହିଁ । କାହାକୁ ପୁଣି କହିବି କଅଣ ?"

"ତେବେ ଜାଣିଲା କେମିତି ? ମୁଁ ତ ପୂରା ସୁଧାର ପିଲାପରି ଟୁଙ୍ଗୁ ଟୁଙ୍ଗୁ ହୋଇ ପଦାକୁ ଚାଲି ଆସିଲି । ମନ ଭିତରେ ଅବଶ୍ୟ ଭାବୁଥିଲି କେମିତି ତା ମୁଣ୍ଡ ଫଟେଇବି । ହେଲେ ମନ କଥା ମନରେ, ସେ ଜାଣିବ କୁଆଡ଼ୁ ?"

"ହଁ ତା ସତ ଯେ, ବେଳେବେଳେ ମୁଖଭଙ୍ଗୀଟା ମନ କଥାକୁ ପଦାରେ ପକାଇ ଦଏ । ତୁ ତ ସହଜେ ମାର୍କାମରା ଟୋକା; ଆସିଲା ବେଳେ ବନ୍ଦୁଡ଼ମୁହାଁ ହୋଇ ଆସିଥିବୁ । ସେ ତୋ ମୁହଁକୁ ଦେଖି ସବୁ କଥା ଜାଣି ପାରିଥିବ ଆଉ ହୁସିଆର ହୋଇ ନିଜ ବାଟ ଧରି ପଳେଇଥିବ । ତାପରେ ବି ତା ପଛରେ ତ ଦଳେ ଟୋକା ଅଛନ୍ତି, ସେମାନେ ହୁଏତ ଆମ ଚାଲିଚଳନ ଠଉରେଇ ନେଇ ତାକୁ ସତର୍କ କରାଇ ଦେଇଥିବେ ।"—

"ହଁ ! ହୋଇ ପାରିଥିବ । ମତେ ଲାଗୁଛି ସେ ବୋଧହୁଏ ଡେରି କରି ଆସିବ । ଖାତା ଗଣେଇ, ମିଳେଇ, ବନ୍ଧେଇ, ଜଉ ମୁଦେଇ ଆହୁରି କେତେ କାମ ଅଛି । ସେ ସବୁ ଶେଷକରି ଆସୁ ଆସୁ ବେଳେ ବେଳେ ରାତି ନଅ ହୋଇଯିବାର ମୁଁ ଦେଖିଛି । ତାକୁ ବୋଧହୁଏ ସେଇ ରାତି ଆଠ ନଅ ହୋଇଯିବ । ରାତି ହେଲେ ତ ବଢ଼ିଆ । ଗୋଟାଏ ବୋଲୁଅରେ ଖପୁରି ଉଡ଼େଇଦେଇ ଅନ୍ଧାରରେ ଖସି ପଳେଇବା ।"

ଏହିପରି ଚର୍ଚ୍ଚା ଚାଲିଥିବାବେଳେ ଦୂରରୁ ନାଳପେଣ୍ଠିଆ ସର୍ଦ୍ଦାର ଭରତ ପରିଡ଼ା ଆସୁଥିବାର ଦେଖାଗଲା । ହନୁ ସେଇ ଆଡ଼କୁ ଆଙ୍ଗୁଠି ଦେଖାଇ କହିଲା—"ଆରେ ହେଇଟି ଆମ ଗୁରୁଜୀ ଆସୁଛନ୍ତି । ଯାହାହେଉ ଭଲବେଳରେ ଦେଖା ହୋଇଛି । କିଛି ଇଲମ ତାଙ୍କଠୁଁ ହାସଲ କରିନେବା ।"—

ଦୁହିଁଙ୍କୁ ଅଥାନରେ, ଅବେଳାରେ, ଅବାଗରେ ଠିଆ ହୋଇଥିବା ଦେଖି ଭରତ ତାଙ୍କ ପାଖକୁ ମାଡ଼ି ଆସିଲେ ଓ ପଚାରିଲେ "କିରେ ! ଏଠି ଏମିତି ନଙ୍ଗର ପଙ୍ଗର କାହିଁକି ?"

ହନୁ ଆରମ୍ଭ କଲା, "ଗୁରୁଜୀ ! ବଡ଼ ଖରାପବେଳ ପଡ଼ିଗଲା । ସାରୁଖୋଳ ଅଧ୍ୟାପକଟା ସବୁ ସାରିଦେଲା ।"

"କଅଣ କଲା ?"

"ଆଜଯାଏ ସବୁ ଜଗୁଆଳଙ୍କୁ ଶତା କାଟି ଆସିଥିଲି । ହେଲେ ସାରୁଖୋଳଟା ଆଜି ସବୁ ପଣ୍ଡ କରିଦେଲା । ଆମ ଦୁହିଁଙ୍କଠାରୁ ବେଶି ଗୁଳାଖ ଓ ଚଟକା ପଡ଼ିଗଲା ।"

"କପି ବିଲ୍‌କୁଲ୍ ଉତାରି ପାରିଲନି ?"

"ଛଅଟାରୁ ତିନିଟା ଉତାରି ଦେଇଥିଲି । ଆଉ ଗୋଟାଏ ଅଧା ଉତାରିଛି କି ନାହିଁ, ପଛଆଡ଼୍ ବାଘ ମାଡ଼ିବସିଲା ପରି ଘାଉଁ କରି ମାଡ଼ି ବସିଲା । ଅଃ ! ଠିକିଏ ଅଣହୁସିଆର ହୋଇଗଲି । ନହେଲେ ସେ ନା ତା ଭଳିଆ ସତର ଗଣ୍ଡା ପାରିଥାଆନ୍ତେ !! ପାଦ ଟିପି ଟିପି କେତେବେଳେ ଆସି ମୋ ପଛରେ ହୋଇଗଲାଣି, ମୁଁ ଜାଣି ପାରିଲି ନାହିଁ । ଠିକିଏ ଆଗରୁ ପଛ ଆଡ଼କୁ ଗୁହିଁ ଦେଇଥିଲେ ବେଟାକୁ ଭୁଆଁ ବୁଲେଇ ଦେଇ ଥାଆନ୍ତି ! ଅଃ ! ସବୁସାରି ଦେଲା । ମନୁ ଉପରେ କୁଦିବାକୁ ବି ତାକୁ ପାଞ୍ଚ ମିନିଟ ଲାଗିଲାନି । ଆମ ଦୁହିଁଙ୍କୁ ସାରିଦେଲା ।—ଏଇଠି ତାକୁ ଛକିଛୁ । ବୋଲୁଅରେ ତା ଖପୁରି ଉଡ଼େଇ ଦେବୁ ।"

—"ଖାତା ଛଡ଼େଇ ନେଇଛି ?"

"ନା—ସେତିକି ଧର୍ମ ବିଚରା କରିଛି । କପି ଛଡ଼େଇ ନେଲାବେଳେ ବହୁତ ନଉନ ହୋଇ କହିବାରୁ ସେ କହିଲା—ଆଚ୍ଛା ! ଆଡ଼କୁ ମନରୁ ଲେଖ । ମୁଁ ଖାତା ଛଡ଼େଇ ନେବିନି କି ରିପୋର୍ଟ କରିବନି । ଆଉ କନ୍ତୁ କପି କରିବାକୁ ଦେବିନି ! ଯାହା କରିବାର କଲଣି ଏବେ ମନରୁ ଲେଖ—ଆଜି ଯେମିତି ହେଲେ ତା ଖପୁରି ଉଡ଼େଇବାର କଥା"—

"ଲେଖିଲନି ?"

"ପାଠଗୁଡ଼ାକ ତ କପିରେ ଥିଲା । ମନଭିତରେ ତ ବିଲ୍‌କୁଲ୍ ପଶିଲାନି । ମନରେ ଥିଲେ ସିନା ବାହାରି ଥାଆନ୍ତା ! ଦୁହେଁଯାକ ମୁହଁପୋଡ଼ି କରୁ ସମସ୍ତ ବସିଲୁ ତା ପରେ ଖାତା ଫୋପାଡ଼ି ଦେଇ ପଳେଇ ଆସିଲୁ । ଆଜି ତାର ନିସ୍ତାର ନାହିଁ ।"

"ହଇବେ ! ତମେ ବହଟା ଏଡ଼କ ଛତରା, ଓଲୁ ପଡ଼ିଲଣି । ଆରେ ସେ ଖଚରା ତମ ଦୁହିଁଙ୍କୁ ପ୍ରାଣରେ ମାରନ । କିଏ ଜାଣେ ହୁଏତ ଯେତିକ ଲେଖିଛ ସେତିକରେ ପାଶ୍ ନମ୍ବର ରହିଯାଇପାରେ । ଖାତା ଛଡ଼େଇ ନେଇ ରିପୋର୍ଟଟା କରି ଦେଇଥିଲେ ଏକାବେଳକେ ତିନିଟି ବର୍ଷ ଯାଇ ଥାଆନ୍ତା । ଆବେ ତା ଗୋଡ଼ତଳେ ନପଡ଼ି ତା ମୁଣ୍ଡ ଉପରେ ବୋଲୁଅ ପକେଇବାକୁ ବସିଛ, ଗୋବା ହୁଣ୍ଡା କୋଉଠିକାର ।"

"ଆଉ ତେବେ ଗୁରୁଜୀ—କରିବା କଅଣ ? ସାରୁଖୋଳ ଯେତେବେଳେ ଆମ ଦୁହିଁଙ୍କଠାରୁ କପିତକ କାଢ଼ିନେଲା ସେତେବେଳେ ଆମକୁ ଜଣାଗଲା ସତେ କି ଯେମିତି ଆମ ପେଟ ଭିତରୁ ଅନ୍ତନାଡ଼ିଗୁଡ଼ିକ ଟାଣି କାଢ଼ି ନେଉଛି । ଆଖ ପାଖରେ ବସିଥିବା ପିଲାମାନଙ୍କ ମୁରୁକିହସା ଆମ ଗୁଣ୍ତରେ ଗୃକୁ ଟଳେଇ ଦେଲାପରି ଲାଗୁଥାଏ । ଯାର ବଦଳା ନ ନେଲେ ଆମ ପିଣ୍ଡଟା ଛଟପଟ ହୋଇଯିବ । ମନା କରନ ଗୁରୁଜୀ ?"

"ଚୁପ୍‌ବେ ଚୁପ୍ । ଆଗପଛ ନ ଦେଖି ମାଡ଼ିଗଲେ ମୁହଁମାଡ଼ି ପଡ଼ିଯିବ କେଉଁଠି । ଦାନ୍ତ ଭାଙ୍ଗିବା ସାର ହେବ । ଆଚ୍ଛା ଆଉ ସବୁ ଖାତାରେ କେମିତି କରିଛ ?"

"ଆଉ ସବୁଥିରେ ବଢ଼ିଆ ହୋଇଛି । ଗୋପାଳ, କାହ୍ନୁ, ଗୋରା ଜାନକୀ, କଳା ଜାନକୀ, ବଇଁଶୀ, ମଦନ ସମସ୍ତଙ୍କ ଆଖିରେ ଧୂଳି ପକେଇ ଦେଲୁ । ସବୁଖାତାରେ ଛଅ ଛଅଟା କପି ଉତାରି ପକେଇଲୁ । ଆଜି ଶେଷ ଦିନ ଥିଲା । କିଏ ଜାଣିଥିଲା ଡଙ୍ଗାଟା କୂଳରେ ଲାଗିଲା ବେଳକୁ ବୁଡ଼ିଯିବ !! ଅଲକ୍ଷଣା ସାରୁଖୋଳଟା ଡଙ୍ଗାଟା ବୁଡ଼େଇ ଦେଲା । ଆମ ମନଟା ଖାଲି ଉଦ୍ଧଳବକଳ ହୋଇଯାଉଛି । ମନା କରନ ଗୁରୁଜୀ ।"

ଦୂର୍ ହୋ ବୋକା, ଟିକିଏ ଲାଗିଲେ ପାଶ୍‌ଟା ହୋଇଯିବ । ତୁଚ୍ଛାଟାରେ ଅନର୍ଥ ଲଗେଇବ କାହିଁକି ? ଧରାପଡ଼ିଲେ ସିଧାସଳଖ ମାମୁଁଘର···।

"ଏଁ ଏଁ ପାଶ୍ ! ଆଶା ଅଛି ଗୁରୁଜୀ ?"

"ଆଶା ନଥିଲେ କହନ୍ତୁ କେମିତି । ମୁଁ ତ ପାଶ୍ କରେଇଦେବି କହୁଛି । ସେ ସବୁ ଗୋଳମାଳିଆ ବାଟ ଛାଡ଼ । ତୋ ନମ୍ବର କେତେ ?"

"ଛଅଶ କୋଡ଼ିଏ" ।

"ଆରେ ଭାରି ବଢ଼ିଆ ନମ୍ବର ତ ! ତା ନମ୍ବର ?"

"ଆଠଶ ଛଅଳିଶି ।"

"ଆରେ ବାଃ, କାଣିଆ କପିଳା ଭେଟ ! ହଉ ଏବେ ଯାଅ ପିଅନକୁ ଦୁଇଟଙ୍କା ଦେଇ ଏ ବ'ଠା ଖାତା କୁଅଡ଼େ ଯାଇଛି ବୁଝିନିଅ । ସେ ହୁଏତ ଭୁଲ କଥା ଦେଇପାରେ । ସବୁଠୁ ଭଲ ଫ୍ୟାକଂ କରାଣୀ ଘରକୁ ବ'ହାଣ୍ଡି କଟକଚଣ୍ଡୀ ଭୋଗନେଇ ପହଞ୍ଚିଯିବ । ଠିକଏ ପାମ୍ପଲା ପାମ୍ପଲ ଆଉ ବ'ଗୁରପଲା ତେଲ ମାଲିସ୍ କରିଦେଲେ ଠିକଣାତକ ମିଳିଯିବ । ବଡ଼ା ଥାନରୁ ଠିକଣା ସଂଗ୍ରହ କରି ମିଳେଇ ନେବା ଭଲ । ଯଦି ନମିଳେ ତୃତୀୟ ସ୍ଥାନରୁ ଫେର୍ ସଂଗ୍ରହ କରିବାକୁ ପଡ଼ିବ । ନ ପାରିଲେ ମୁଁ ଅଛି । କେଉଁବାଟେ ହେଲେ ଯୋଗାଡ଼ କରି ନେବ । ଏବେ ଯାଅ ଠିକଣା ଯୋଗାଡ଼ କରିସାରି ମୋ ବସାକୁ ଯିବ । ତାପରେ ମୁଁ ଯାହା କରିବାର କରିବ ।"

× × ×

ତିନି ଚାରିଦିନ ପରେ ହନୁ ମନୁ ଦୁହେଁ ବଡ଼ ଖୁସ୍ ମିଜାଜରେ ଭରତ ପଟ୍ଟନାୟକଙ୍କ ବସା ଘର ଭିତରକୁ ପଶିଯାଇ ଏକ ସ୍ୱରରେ ଚିଲେଇ ଉଠିଲେ—"ଗୁରୁଜୀ ! କସ୍ତୁରୀମାତ୍ ।"

"ଠିକଣା ଠିକ୍ ଠିକ୍ ପାଇଲ ?"

ଅତି ଉତ୍ସାହର ସହିତ ମନୁ କହି ପକେଇଲା—"ଯେଉଁ ବାଟ ବତେଇଥିଲ ଠିକ୍ ସେହି ବାଟରେ ଯାଇ କାମ ହାସଲ କରିନେଲୁ । ଦୁଇ ଥାନରୁ ମିଳିଥିବା ଠିକଣା ଠିକ୍ ଠିକ୍ ମେଳ ଖାଇଗଲା । ପରିହେଲେ ଫ୍ୟାକଂ କରାଣୀ ଟିକଏ ଫେର ଦେଖେଇଲା । ନାଲୁଆ ଗାଈପରି ନାତ କୋଡ଼ି

ପକେଇଲା । ଗୋଟାଏ ହାଣ୍ଡିରେ ମୁହଁ ମୋଡ଼ିଥିଲା । ସେ ହାଣ୍ଡିରେ କୋଚଆ ବନିଗଲା । ସୁଧାର ଲୋକପରି ଠିକଣାଟା ଦେଇସାରି ମାତଶାସ୍ତ୍ର ପୁଡ଼ାଏ ଓକାଲିଲା—ମନ ଦେଇ ପାଠପଢ଼—ଏସବୁ କାମ ଭଲ ନୁହେଁ—ଧରାଧରି କରି ଏ ପରୀକ୍ଷାରୁ ସିନା ଖସିଯିବ, ଜୀବନ ସଂଗ୍ରାମରେ ଯେଉଁ ପରୀକ୍ଷା ଦେବାକୁ ପଡ଼ିବ ସେଠି କାହାକୁ ଧରିବ ?—ଆଉ କେବେ ଏମିତିଆ କାମ କରିବନି—ଇତ୍ୟାଦି ଇତ୍ୟାଦି ।"

"କେଉଁଠି-ଖାତା ପଡ଼ୁଛି ?"

"ସେ ଯେଉଁଠି ପଡ଼ୁଛି ବୋଲି କହିଲା, ପିଅନଟା ଠିକ୍ ସେଇଆ କହିଥିଲା । ପିଅନକୁ ଗୋଟିଏ ଟଙ୍କାଦେଇ ଯାହା ପାଇଲୁ, କରାଣୀକୁ ପାଞ୍ଚଟଙ୍କିଆ ମିଠେଇ ହାଣ୍ଡିରୁ ଦୁଇଟା ଦେଇ ସେଇଆ ମିଳିଲା । ଅକାରଣରେ ଦଶଟା ଟଙ୍କା ଚାଲିଗଲା ।"—

ସନୁ ବାଧା ଦେଇ କହିଲା—"ହେ ହେ ଗୋବା, କଅଣ ବକି ଚାଲିଛୁ । ଶଗଡ଼ ଗୁଳାରେ ଚାଲ, ଅମଡ଼ା ମାଡ଼ୁଛୁ କଆଁ ?— କହୁତ ସବୁ ବ୍ରହ୍ମପୁର କଲେଜର ମେଟ୍ରିଆ ମହାନ୍ତି ହାତରେ ଦୁଇଟାଯାକ ଖାତା ପଡ଼ିଛି । ଏତେ ଅଲୋଡ଼ା ଗପ ଗପିବାରେ ଲାଭ କଅଣ ?"

ଫୁଟୁକଟାଏ ମାରିଦେଇ ଭରତ କହିଲା—"ବାଃ ! ଗୋଟାଏ ଗୋଳରେ ଦୁଇଟା ଚଢ଼େଇ ଖତମ ହେବ । ଦେଖୁଛୁ ତମର କପାଳ ବଡ଼ ତେଜ ଅଛି । ଆଉ ଡେରି ନାହିଁ । କାଲି ସକାଳୁ ବ୍ରହ୍ମପୁର ବସ୍ ଧରିବାକୁ ହେବ । ଆଜି ରାତିରେ ସବୁ ଯୋଗାଡ଼ ଯନ୍ତ୍ର କରିନିଅ । ତିନିଜଣଙ୍କ ଯିବା ଆସିବା ଟିକେଟ୍ ଷାଠିଏ ଆଉ ତିନିଜଣଙ୍କ ରହଣି ସେଦିନ ପାଇଁ ହାରାହାରି ଚବିଶ ଏମିତି ମୋଟ ଚୌରାଅଶୀଟି ଟଙ୍କା ଯୋଗାଡ଼ କରିନିଅ । ଯାଅ ସେ'ଜଣ ଯାକ ବୟାଳିଶୀ ଲେଖାଏଁ ସଂଗ୍ରହ କରିନିଅ । କାଲି ବଡ଼ଭୋରରୁ ଏଇଠିକି ଚାଲିଆସିବ ସଙ୍ଗହୋଇ ବାହାରି ଯିବା"—

ମନୁ ମନକୁ ପାପ ଛୁଇଁଲା । ବୟାଳିଶୀ ଟଙ୍କା ଯୋଗାଡ଼ କରିବାକୁ ହେବ । ଏତକ କାମ ଦେଖେଇବ କି ପାଣିରେ ପଡ଼ିବ କିଏ ଜାଣେ । ଯଦି

ବିଗିଡ଼ି ଯିବ । ତେବେ କଥା ଶେଷ । ମାସେ ଯାଏ ସିନେମା ଦେଖା ଓ ସିଗାରେଟ୍ ବନ୍ଦ । ଜୀବନଟା କାଲୁବାଲୁ ହୋଇଯିବ ସିନା । ବହୁତ ଧନ୍ଦି ହୋଇ ଶେଷରେ ସେ ମୁହଁ ଖୋଲି ପଚାରିଲି—"ଆଚ୍ଛା ଗୁରୁଜୀ ! କାମଟା ସତରେ ହୋଇ ପାରିବ କି ନାହିଁ କହିଲ ?"

"ଦୂର୍ ଓଲୁ, କିଛି ତୋ ମୁଣ୍ଡରେ ପଶିବ ନାହିଁ । ଆରେ ପାଶ୍ ହେଲା ଦୁଇ ପ୍ରକାରର ଗୋଟାଏ ହେଲା ସଦର ଦରଜା ପାଶ୍ । ଯେଉଁମାନେ ପାଠୁଆ ସେମାନେ ସିଧା ସରପଟ ସାମନା ବାଟରେ ଯାଇ ଏ ପାଶ୍‌କୁ ହାସଲ କରନ୍ତି । ଏଥିରେ ଲୁଚ୍ଚ-ଗୋଲ୍ଲି ନାହିଁ, ମଳି-ଧୂଳି ନାହିଁ । ଆଉଟି ହେଲା ବାଡ଼ପଟିଆ ପାଶ୍ । ଏଥିପାଇଁ ସଦର ଦରଜା ବନ୍ଦ । ବାଡ଼ପଛପଟ ଦରଜା ବାଟେ ଯିବାକୁ ପଡ଼େ । ତା ପୁଣି ଅନ୍ଧାରରେ । କେହି ଯେମିତି ନ ଦେଖନ୍ତି ନ ଶୁଣନ୍ତି । ବେଳେ ବେଳେ ଗୋଡ଼ରେ କଣ୍ଟା ଭୁକିଯାଏ । ତମ ଭଳିଆ ପିଲାଏ ଏଇ ବାଟରେ ପାଶ୍ ହାସଲ କରନ୍ତି । ଆମେ ହେଲୁ ଗୁରୁଜୀ, ତମ ଦୁହିଁଙ୍କୁ ସେଇ ବାଟରେ ଚଳେଇ ନେବୁ । ସିଦ୍ଧିପ୍ରାପ୍ତି କରାଇଦେବୁ । ଗୁରୁଜୀ ଉପରେ ପୂରା ଭରସା ରଖ"—

"ତାହେଲେ ଆମେ ଦୁହେଁ କାଲି ବଡ଼ଖେମୁଣ୍ଡିରୁ ଲୁଗାପଟା ଧରି ଆସି ପହଞ୍ଚିବୁ"—?

"ହଁ ହଁ ଆଉ ଗୋଟିଏ କଥା । ଭେକଟିକୁ ସଜାଡ଼ିବାକୁ ହେବ । ଏ ନାଳ ପେଣ୍ଟ ବାବୁ ଚଳିବନି । ସାମାନ୍ୟ ମଇଳା ଲୁଗା ଓ କାମିଜ ଯୋଗାଡ଼ କରିବ । ମୁଣ୍ଡବାଳକୁ ସାବୁନରେ ଧୋଇଦେବ । ଅଣ୍ଡିଆ ଜୋତା ବଦଳରେ ଛିଣ୍ଡା ଚପଲ ପିନ୍ଧିବ । ବାସ୍ ଆଉ ସବୁ ପାଠ କାଲି ବ୍ରହ୍ମପୁରରେ ଠିକ୍ କାମ ପୂର୍ବରୁ ଶିଖାଇ ଦେବ । ଯାଅ କାମରେ ଲାଗିଯାଅ"—?

× ×

ଅତ ବଶମ୍ବଦ ଶିଷ୍ୟ ପରି ହନୁ ଓ ମନୁ ଗୁରୁଜୀ ଭରତଙ୍କ ସଙ୍ଗେ ଯାଇ ବ୍ରହ୍ମପୁରରେ ପହଞ୍ଚିଲେ । ହୋଟେଲରେ ବାକିଆ ପାଠ ପଢ଼ାଟା

ଖତମ ହୋଇଗଲା । ଗୁରୁଜୀ ତିନୋଟି ସଙ୍କେତ ଉପରେ ଖୁବ୍ ବେଶି ଜୋର ଦେଲେ । ସାଙ୍ଗେ ସାଙ୍ଗେ ପରୀକ୍ଷା ବି କରେଇ ନେଲେ । ଶିଷ୍ୟ ଦୁହେଁ ଠିକ୍ ଠିକ୍ ଉତ୍ତର ଦେଲେ । ଗୁରୁଜୀ ମୁଣ୍ଡରେ ହାତ ଦେଲେ—ନମସ୍କାର କରି ମୁଣ୍ଡପୋତି ଠିଆ ହେବ । ଗୁରୁଜୀ ଗୋଡ଼ ହଲେଇଲେ ଲମ୍ବ ଲମ୍ବ ହୋଇ ଗୋଡ଼ତଳେ ପଡ଼ିବାକୁ ହେବ । ଯଦି ଗୁରୁଜୀ ଆଖି ମଳନ୍ତି ତେବେ ବିକଳ କ୍ରନ୍ଦନ ଧ୍ୱନି ଆରମ୍ଭ କରିବାକୁ ହେବ । ଶିଷ୍ୟ ଦୁହିଁଙ୍କର ସବୁଥିରେ ପାଶ୍ ହୋଇଗଲା । ଗୁରୁଜୀଙ୍କ ମନଖୁସ୍ ତଥାପି କୌଣସି କାମ ସେ ବାକି ରଖିବାକୁ ଚାହିଁଲେ ନାହିଁ । ରାତିରେ ସହରଟା ବୁଲି ମେରିଆ ମହାନ୍ତିଙ୍କ ସ୍ୱରୂପ, ମିଜାଜ, ସ୍ୱଭାବ ବିଷୟରେ ବିଶେଷ ବିଶେଷ ତଥ୍ୟ ସଂଗ୍ରହରେ ଲାଗି ପଡ଼ିଲେ । ହୋଟେଲକୁ ଫେରିବା ବେଳେ ଦୁଇଟି ପକେଟ୍-ବାଇବେଲ୍ ନେଇ ଆସିଲେ । ପରିଶିଷ୍ଟ ପାଠ ପଢ଼େଇ ସାରୁସାରୁ ରାତି ବାର ବାଜିଗଲା ।

ଆରଦିନ ସକାଳ ସାତଟା ବେଳେ ଦୁଇଶିଷ୍ୟଙ୍କୁ ଧରି ଗୁରୁଜୀ ମେରିଆ ମହାନ୍ତିଙ୍କ ବସାଘର ଫାଟକ ପାଖରେ ପହଞ୍ଚିଲେ । ଦୁହିଁଙ୍କୁ ପଦାରେ ରଖି ନିଜେ ଭିତରକୁ ପଶିଲେ । ଦୁହିଁଙ୍କୁ ତାଗିଦ୍‌କରି କହିଲେ— "ଦେଖ ଯଦି ସେ ତିରଣିରି ଏ ପାଖ ହୋଇଥାଏ ତେବେ ତାକୁ ପଟେଇ ପାଟେଇ ନେବି । ତୁମର ଯିବା ଦରକାର ପଡ଼ିବ ନାହିଁ । ଯଦି ୪୦ ଡେଇଁ ଯାଇଥିବ ତେବେ ତମ ଦୁହିଁଙ୍କୁ ଯିବାକୁ ପଡ଼ିବ । ମୁଁ ଡାକିବା ମାତ୍ରେ ତୁମେ ଦୁହେଁ ଯାଇ ସେଠି ହାଜର ହୋଇଯିବ, ଆଉ ମୋ ଠାର ଅନୁସାରେ କାମ କରିବ । ଜାଗ୍ରତ ଥାଅ । ଏଥର ମୁଁ ଚାଲିଲି ।"

ଭିତର ଦରଜା ପାଖରେ ଗୋଟିଏ ଚାକରାଣୀ ଘର ଓଳାଉ ଥିଲା । ଭରତ ତାକୁ ପଚାରିଲା—"ଦିଦି ଉଠିଲେଣି ?"—"ପ୍ରଭୁଙ୍କୁ ପ୍ରାର୍ଥନା କରୁଛନ୍ତି । ସେ ଏବେ କାହା ସଙ୍ଗେ ଦେଖାକରି ପାରିବେନି ଆଉ ଏଠି ରହିବାର ଲୋଡ଼ା ନାହିଁ । ଯାଆନ୍ତୁ ପଛେ ଆସିବେ ।"

"ହଉ ହଉ ପ୍ରାର୍ଥନା ସରିଲେ ଟିକିଏ ଖବର ଦେବୁ । ଏଇ ସୁକିଣିଟି ନେ ପାନ ଖାଇବୁ ।"

ଗୃହକର୍ତ୍ତ୍ରୀ ସଙ୍ଗେ ସଙ୍ଗେ ଚଉକି ବସିବାକୁ ଦେଇ କହିଲା—"ହଉ ବାବୁ ! ଏଠି ବସ, ମୁଁ ସାଙ୍ଗେ ସାଙ୍ଗେ ଡାକି ଦେଉଛି ।"

ଭରତ ପାଞ୍ଚମିନିଟ ବସିଛି କି ନାହିଁ, ମେରିଆ ମହାନ୍ତି ଆସି ପହଞ୍ଚି ଗଲେ । ଧଡ଼ପଡ଼ ହୋଇ ଉଠିପଡ଼ି ଭରତ କହିଲା 'ନମସ୍କାର' ।

"ପ୍ରଭୁ ଆପଣଙ୍କର ମଙ୍ଗଳ କରନ୍ତୁ ।"

ଭରତ ମେରିଆଙ୍କ ମୁଣ୍ଡକୁ ଚାହିଁ ଦେଖିଲା ବାଳପଣ ଧଳା ପଡ଼ିଗଲାଣି । ନିଜର ରଣ କୌଶଳ ଚଟାପଟ୍ ସଜାଡ଼ି ନେଇ ଆରମ୍ଭକଲା, ମାଉସୀ ! ଅତି ବାଧ୍ୟ ବାଧକତାରେ ପଡ଼ି ଦୁଇଟି ଅନାଥ ପିଲାଙ୍କ ଜୀବନ ରକ୍ଷା ପାଇଁ ଆପଣଙ୍କ କୃପାପ୍ରାର୍ଥୀ ହୋଇଛି । ଆପଣଙ୍କ ଅନୁମତି ପାଇଲେ ଦୁହିଁଙ୍କୁ ଆପଣଙ୍କ ନିକଟକୁ ଅଣାଇବ ।"

"ହଉ ଅଣାନ୍ତୁ । ଘଟଣା କଅଣ ?"

ଭିତରୁ ଡାକରା ପାଇବା ମାତ୍ରେ ହନୁ, ମନୁ ଅତି ସନ୍ତର୍ପଣରେ ସହିତ ଭିତରେ ପ୍ରବେଶ କରି ଦେଖିଲେ ଗୁରୁଜୀ ମୁଣ୍ଡରେ ହାତ ଦେଇଛନ୍ତି । ଦୁହେଁ ସଙ୍ଗେ ସଙ୍ଗେ ୯୦ ଡିଗ୍ରୀ କୋଣ କରି ଗୋଟିଏ ଗୋଟିଏ ନମସ୍କାର କଲେ ଏବଂ ଅଧୋବଦନରେ ଠିଆହୋଇ ରହିଲେ । ଭରତ ବକ୍ତୃତା ଆରମ୍ଭ କଲେ···

"ଆଜ୍ଞା ଏ ହତଭାଗା ଦୁଇଟା କଟକ ଚର୍ଚ୍ଚ ପାଚେରି ପାଖରେ ବସି ଆତ୍ମହତ୍ୟା କରିବାକୁ ବସିଥିଲେ"—

"ଆହା ! ଆତ୍ମହତ୍ୟା !"

"ମୁଁ ଚର୍ଚ୍ଚ ଭିତରୁ ବାହାରି ଆସିଲାବେଳେ ଦୁହିଁଙ୍କୁ ଦେଖିଲି । ମୋର କେମିତି କେଜାଣି ସନ୍ଦେହ ହେଲା । ପାଖକୁ ଯାଇ ଦେଖିଲି ହାତରେ ତାଙ୍କର ଦ' ପୁଡ଼ିଆ ପଟାସିଅମ୍ ସାଇନାଇଡ୍ । ଛଡ଼ାଇ ଫୋପାଡ଼ି ଦେଲି । ଦୁଇଟାଯାକ ଭେ ଭେ କାନ୍ଦି ଉଠିଲେ । ପ୍ରବୋଧ ଦେଇ ସବୁକଥା

ତାଙ୍କଠୁଁ ବୁଝିଲା । ଦୁହେଁଯାକ ଅତି ଗରିବ । ସେ ଗୀର୍ଜାର ମହାନ୍ତ ଦୁହିଁଙ୍କୁ କିଛି କିଛି ସାହାଯ୍ୟ ଦିଅନ୍ତି''—

''ମହାନ୍ତ ନୁହନ୍ତି, ରେଭରେଣ୍ଡ ଫାଦର୍''—

''ହଁ ଆଜ୍ଞା ରେଭରେଣ୍ଡ ଫାଦର୍ ବରାବର ସାହାଯ୍ୟ ଦିଅନ୍ତି । ତାଙ୍କରି ସାହାଯ୍ୟରେ ବିଚରା ଦୁହେଁ ପଢ଼ୁଥିଲେ । ଗଲା ପରୀକ୍ଷାରେ ସବୁ ଖାତାରେ ଭଲ କରିଥିଲେ । ଶେଷଦିନ ଅଧାଅଧି ଲେଖି ସାରିଲେଣି ହଠାତ୍ ଟେଲିଗ୍ରାମ୍ ଆସି ପହଞ୍ଚିଲା ସ୍ୱାର ବାପା ମରିଗଲା ଆଉ ସ୍ୱାର ବୋଉ ମରିଗଲା । ଖବର ପାଇବା ମାତ୍ରେ ଦୁହେଁ ବେହୋସ ହୋଇ ପଡ଼ିଗଲେ । ଶେଷ ଖାତା ଦୁହିଁଙ୍କର ନଷ୍ଟ ହୋଇଗଲା । ଦୁହିଁଙ୍କ ହାତରୁ ବିଷ ଛଡ଼ାଇ କହିଲି—ଦେଖ, ପ୍ରଭୁଙ୍କ ଇଚ୍ଛା ନୁହେଁ ତୁମେ ଦି' ଜଣ ମର । ତା ନ ହେଲେ ମୁଁ ଏଠାକୁ କାହିଁକି ଆସନ୍ତି । ମୋର ସନ୍ଦେହ ବା ହୁଅନ୍ତା କାହିଁକି ? ଦୁହେଁ ଏକା ଜଗର ଧରିଲେ ଯଦି ଫେଲ ହୁଅନ୍ତି ତେବେ ନିଶ୍ଚୟ ଜୀବନ ହରେଇ ଦେବେ । ଦୁହିଁଙ୍କୁ ବୁଝେଇ ବାଝେଇ ଆପଣଙ୍କ ପାଖକୁ ଅଣେଇଛି । ପ୍ରଭୁଙ୍କ ଇଚ୍ଛା ଆପଣ ହିଁ ପୂରଣ କରିପାରିବେ''—

ମେରିଆ ଟିକିଏ ଚମ୍ପିତ ହୋଇ ଉଠିଲେ । ଭରତ ଦେଖିଲେ ସଙ୍ଗେ ସଙ୍ଗେ ଆକ୍ରମଣ ଦରକାର । ଏକ ସଙ୍ଗେ ସେ ଗୋଡ଼ ହଲେଇ ଆଖି ମଳିଲେ । ବୋତାମ ଟିପିଲେ ଯେପରି ବତୀ ଜଳି ଉଠେ ଠିକ୍ ସେହିପରି ସଙ୍କେତ ପାଇବା ମାତ୍ରେ ଦିନୁ, ମନୁ ଦୁହେଁ ମେରିଆଙ୍କ ଗୋଡ଼ତଳେ ପଡ଼ିଯାଇ ଦୁଇ ଗୋଡ଼ ଜକଟି ମକଟି ଧରି ପକାଇଲେ ଓ ଭେରେଣ୍ଡାଙ୍କ ପରି ବୋବେଇ ଉଠିଲେ—''ମାଉସୀ ! ଆପଣ ରକ୍ଷା ନ କଲେ ଆଉ ଏ ନିର୍ଲଜ ଜୀବନକୁ ଆମେ ରଖିବୁ ନାହିଁ''—

ମେରିଆ ଦୁହିଁଙ୍କୁ ଉଠେଇ ଦେଲା ବେଳେ ଦେଖିଲେ ଦୁହିଁଙ୍କ ଗ୍ଭଟପକେଟରେ ଦୁଇଟି ପକେଟ ବାଇବେଲ । ସସ୍ନେହ ପଚ୍ଛରିଲେ—''ତୁମେମାନେ ବାଇବେଲ୍ ପଢ଼ ?''

ଭରତ ଆଗରୁ କହିପକାଇଲା— ''ମହାନ୍ତ—ନାହିଁ ନାହିଁ ରେଭରେଣ୍ଡ୍ ଫାଦର୍ ସେ ବାଇବେଲ୍ ଦୁଇଟି ଦି'ଜଣଙ୍କୁ ଦେଇଛନ୍ତି ।''

ପ୍ରଫୁଲ୍ଲିତ ହୋଇ ଉଠି ମେରିଆ କହିଲେ, "ଉତ୍ତମ, ଅତି ଉତ୍ତମ ।" ଭରତ ସଙ୍ଗେ ସଙ୍ଗେ ଯୋଡ଼ି ଦେଲା—"ପ୍ରଭୁଙ୍କର ଇଚ୍ଛା ଆପଣଙ୍କଦ୍ୱାରା ହିଁ ପୂରଣ ହେବ । ପୁା ନମ୍ବର ୪୨୦ ଓ ପୁା ନମ୍ବର ୮୪୦ ।"

ଦୀର୍ଘଶ୍ୱାସଟିଏ ତ୍ୟାଗ କରି ମେରିଆ କହିଲେ—"ବିଶ୍ୱାସ କର ଈଶ୍ୱରଙ୍କ ଅନନ୍ତ ପ୍ରେମ ରହିଅଛି । ତାଙ୍କର ଇଚ୍ଛା ଅନ୍ୟଥା ହେବାର ନୁହେଁ ।"

ହନୁ ମନୁଙ୍କୁ ଅତ୍ୟଧିକ ହସ ମାଡ଼ିବାରୁ ଦୁହେଁ ମୁହଁ ପୋତି ପକାଇ ସେକଇ ହେବାକୁ ଲାଗିଲେ ଓ ଲୁଗା କାନିରେ ମୁହଁ ଘୋଡ଼େଇ ପକେଇଲେ । ପ୍ରବୋଧ ଦେଇ ମେରିଆ ଘର ଭିତରକୁ ଗଲେ । କିଛି ସମୟ ବାଦ୍ ପୁଣି ଫେରି ଆସି କହିଲେ—"ଖୁବ୍ ଅଳ୍ପ ନମ୍ବର କମ୍ ଥିଲା । ଦୁହିଁଙ୍କର ୩୬ ଲେଖାଏଁ କରିଦେଲି ଆଉ କାନ୍ଦନା । ପ୍ରଭୁଙ୍କର ଉପରେ ବିଶ୍ୱାସ ରଖ । ପ୍ରତିଦିନ ବାଇବେଲ୍ ପଢ଼ ।"

ଚାକରାଣୀଟି ଏହି ସମୟରେ ଚାହା, ବିସ୍କୁଟ୍ ଓ କେକ୍ ଆଣି ପରଷି ଦେଲା । ମେରିଆ ବାଧ୍ୟ କଲାରୁ ସମସ୍ତେ ଖାଇଲେ । ବିଦାୟ ନେଲାବେଳେ ହନୁ, ମନୁ ମେରିଆଙ୍କ ପଦଧୂଳି ମୁଣ୍ଡରେ ମାରି ପଦାକୁ ଆସିଲେ ।

କଟକରେ ପହଞ୍ଚି ହନୁ, ମନୁ ଗୁରୁଜୀଙ୍କ କର୍ମକୁଶଳତା ପାଇଁ ଢେର ଢେର ପ୍ରଶଂସା କଲେ ଓ ଅନୁରୋଧ କରି କହିଲେ—"ଗୁରୁଜୀ ଏ କଥା ଆମ ବାପା ବୋଉଙ୍କ କାନକୁ ଯେପରି ନଯାଏ ।"

---

# ଠକ ଠକେଇ

ପନ୍ଦର ଥର ଦାନ୍ତରେ କୁଟା କାମୁଡ଼ି ଗୋଡ଼ତଳେ ପଡ଼ିଲେ, ତିରିଶଥର ବେକରେ ପାଲଦଉଡ଼ି ପକାଇ ଅଧିଆ ପଡ଼ିଲେ, ଷାଠିଏ ଥର ନାକ ଘଷି ନେହୁରା ହେଲେ ବି ବିଜ୍ଞାପନ ଦାତାମାନଙ୍କଠାରୁ ଗୋଟିଏ ବିଜ୍ଞାପନବରି ମିଳିବା ବଡ଼ ଦୁଷ୍କର । ଅକସ୍ମାତ୍ ଯଦି ପୂର୍ବ ଜନ୍ମର ସୁକୃତ ଫଳରେ ଗୋଟାଏ ମିଳିଗଲା ତେବେ ତହିଁରେ ପ୍ରତିଷ୍ଠାନର ମେନେଜର, ବିଜ୍ଞାପନ ଏଜେନ୍‌ସି, ମଧ୍ୟସ୍ଥି ଇତ୍ୟାଦିଙ୍କ ପାଉଣାରେ ଅଧାଅଧି ଖତମ୍ । ବାକି ପଇସାଟା ଆଦାୟ କରିବାକୁ ଚପଲ ମରାମତି ବାବଦରେ ମୋଚିକୁ ବି ଦି' ତିନି ଟଙ୍କା ଦବାକୁ ପଡ଼େ । ଏ ଅଭିଜ୍ଞତା ଆଉ କାହାର ଥାଉ ବା ନଥାଉ 'ଶିଳପୁଆ' ପତ୍ରିକା ସମ୍ପାଦକଙ୍କର ଭଲ ଭାବେ ଥିଲା । ଶୁଖିଲା ମୁହଁରେ ନିତି ଚିଠିପତ୍ର ଦେଖନ୍ତି । ବଡ଼ ଉଦାସ ଭାବରେ ଲଫାପା ସବୁ ଖୋଲନ୍ତି ।

ଦିନେ କିନ୍ତୁ 'ଶିଳପୁଆ' ସମ୍ପାଦକ ଲଫାପାଟିଏ ଚିରି ଚମକି ପଡ଼ିଲେ । ଶୁଖିଲା ମୁହଁଟି ଛନଛନେଇ ଉଠିଲା । ଆଖି ମେଲା ହୋଇଗଲା । ଆଶା, ଆନନ୍ଦ ଓ ବିସ୍ମୟର ଢେଉ ମୁହଁରେ ଖେଳିବାକୁ ଲାଗିଲା । ଛାତିରେ ଆଲୁଅ କଣାକରି ଦେଲେ କି ଆଉ ! ସମ୍ପାଦକଙ୍କ ଆଖିଦୁଇଟା ଅଜାଣତରେ ଉପରକୁ ଉଠିଗଲା । କି ଆଶ୍ଚର୍ଯ୍ୟ !

ମଗା ନାହିଁ, ଯାଚ୍ଛା ନାହିଁ ଘରେ ଜବରଦସ୍ତି ଜୋଇଁ ପଶିଲା ପରି ଏକ ବିଜ୍ଞାପନ ଘୁଏଁ ଘୁଏଁ ଆସି ହାଜର । ଟାଇପ୍‌ହୁଆ ଚିଠି, ଛପା ଫାରମ । ଦେଲାବାଲା ହେଉଛି ଗମ୍ଭୀର 'ଗୃମେଲଅନ୍ ଆଡ଼ଭଟାଇଜିଂ-ଏଜେନ୍‌ସି' । ଅର୍ଡ଼ର ବି ବେଶ୍ ଲୋଭମାୟ ।

ପ୍ରକାଶନ—ମାସକୁ ଥରେ ।

ଆକାର—ଯଥା ସମ୍ଭବ ।

ମୂଲ୍ୟ—ରେଟ୍‌ଗୃହରେ ଯାହା ଅଛି ।

ଦେଖୁ—ବଲ୍‌ର ଦୁଇ ପ୍ରତିଲିପି ସହ ପତ୍ରିକାର ଦୁଇଟି କପି ପାଇବାର ସମ୍ପାଦକ ମଧ୍ୟରେ ମନିଅର୍ଡ଼ର ଯୋଗେ ପଠାଇ ଦିଆଯିବ ।

ଆଃ ! ସମ୍ପାଦକଙ୍କ ହାଡ଼୍‌ଆ ପଞ୍ଜରା ଭିତରୁ ଗୋଟାଏ ମିଠାଳିଆ ପବନ ପଦାକୁ ବାହାରି ଆସିଲା । ଆନନ୍ଦଟା ହୃଦୟାକ ଚରିଗଲା । ତାଙ୍କୁ ଜଣାଗଲା ସତେକି ଚଟିଟା ତାଙ୍କୁ କୁତୁକୁତୁ କରୁଛି ।

ସଙ୍ଗେ ସଙ୍ଗେ ସେ ଅଙ୍କ କଷାରେ ଲାଗିଗଲେ । ବିଜ୍ଞାପନରେ ଯେତେକ ବିଷୟ ଅଛି ତାହା 'ଶିଳପୁଆ' ପତ୍ରିକାର ଏକ ପୃଷ୍ଠାଥାନ ନେବ । ଏତକର ଦାମ୍, ରେଟ୍‌କାର୍ଡରେ ଦୁଇଶହ ଟଙ୍କା । କମିଶନ ଫମିଶନ ତ କିଛି ନାହିଁ । ମାସକୁ ମାସ ପୋଫଟାସ୍ ଦୁଇଶହ ଟଙ୍କା । ବର୍ଷକୁ ଚବିଶିଶହ ଥୁଆ । ମଳା ନାହିଁ ଧୂଳି ନାହିଁ । ଚବିଶି ବଡ଼ା ଟଙ୍କାକିଆ ନୋଟ୍ । ଜନ୍ତେରହୋ ଗୃମେଲଅନ୍ ଆଡ଼ଭର୍ଟାଇଜିଂ ଏଜେନ୍‌ସି । ଗପୁଟା ତୁମକୁ ପାଇ ଧନ୍ୟ ହୋଇଛି । ତୁମର ବଡ଼ତରୁ ବଡ଼ତ ହେଉଥାଉ । ଅଃ ଏଠି ଆମ ସହରରେ ଗୋଟାଏ ଶାଖା ସ୍ଥାପନ କରୁନାହାଁ କାହିଁକି !

ଏଇ ଶେଷ ପଦଟାକୁ ବୁଦ୍ଧି ହଜମ କରିପାରିଲାନି । ସେ ବିଦ୍ରୋହକରି ଉଠିଲା । ବୁଝେଇଦେଲା—ଆରେ ବୋକା ! ପାଖରେ ରହିଲେ,ଟୁନୁ, ମୁନୁ ଆଦି ସବୁ ପତ୍ରିକା ତାକୁ ସହଜରେ ଦେଖିଯାଇ ବିଜ୍ଞାପନ ଦୁହିଁ ପକାଇବେ । ତୋ ଭାଗରେ ଗୋଟେ ଅଧେ ପଡ଼େ କି ନ ପଡ଼େ । ବରଂ ବହୁଦୂର ଗପୁରେ ରହିଛି, ଭଲ ହୋଇଛି । କିଏ ସନ୍ଧାନ ପାଇବ ନା । ଯାଇ ବିଜ୍ଞାପନ ଦୁହିଁବ । ତୋ ଭାଗ୍ୟ ଭଲ ତୋତେ ଆଲୁଅ ଯୁଟେଇ ଦେଇଛି ।

ମନ ବି ବୁଝିଗଲା-ହଁ ସତ କଥା ତ ନାହିଁ ନାହିଁ ସେ ଆମ ସହରରେ ଶାଖା ନଖୋଲୁ ତା ଠିକଣା ବି ଆମଠାରୁ କେହି ପାଇ ପାରିବ ନାହିଁ । ତାକୁ ଆମେ ସାତତାଳ ପାଣି ଦଶତାଳ ପଙ୍କ ଭିତରେ ରଖିଦେବା ।

ବିଜ୍ଞାପନଟି ପାଖ ସଂଖ୍ୟାରେ ବାହାରି ପଡ଼ିଲା । ଖୋଦ୍ ସମ୍ପାଦକ ଅଠରଥର ତନଖି କରି ବିଜ୍ଞାପନଟି ବସେଇଲେ । ତାଙ୍କର "ଉଁ ହୁଁ ଏ ହେଲାନି, ଉଁ ହୁଁ ଏମିତି କର, ଉଁ ହୁଁ ଯ୍ୟାକୁ ବଦଳାଅ, ଉଁ ହୁଁ ଏମିତି କଲେ ଭଲ ହୋଇଥାନ୍ତା" ଆଦି ଟିପ୍ପଣୀରେ ଅକ୍ଷର ସଜାଳି ବିଚରା ବ୍ୟତିବ୍ୟସ୍ତ ହୋଇ ପଡ଼ିଲା । ତାର ମୁଖ ବିକୃତି ଦେଖି ସମ୍ପାଦକ ବୁଝେଇ ଦେଲେ—"ଆରେ ଯ୍ୟାକୁ ଏମିତି ସେମିତି ବିଗୁରି କରିବୁନି । ଜଏ ଚବିଶି ଶହ ଟଙ୍କାର ଥଳି । ଅସୁନ୍ଦର ହେଲେ କାଲେ ମଝିରୁ ବନ୍ଦ କରିଦେବ ! ଆଗରୁ ହୁସିଆର ହେବା ଦରକାର । ଗରାଖର ମନ ମଜେଇ ଦେବା ଦରକାର । ବର୍ଷେ ସନ୍ତୁଷ୍ଟ ହୋଇଗଲେ ପୁଣି ବର୍ଷେ ଦେଇପାରେ । ମନକୁ ଏମିତି ମଜେଇ ଦେବା ଯେ ଏଇଟା ଆମର ଇସ୍ତମରାରିପଟା ହୋଇଯିବ ।

ବିଜ୍ଞାପନ ବାହାରିବା ସଙ୍ଗେ ସଙ୍ଗେ ବିଲ୍ ସହ ଦୁଇଟି ପତ୍ରିକା ଗୋଟାଏ ସୁଦୃଶ୍ୟ ଲଫାପାରେ ଭର୍ତି କରାଯାଇ ଓ ଗୋଲ୍ ଗୋଲ୍ ଅକ୍ଷରରେ ଠିକଣା ଲେଖାହୋଇ ଠିକଣା ଥାନକୁ ପଠେଇ ଦିଆଗଲା । ତା'ପରେ ଗୁଲିଲା ଦିନଗଣା ।

ବିଲ୍ଟା ଯାଇ ପହଞ୍ଚିବାକୁ ଖୁବ୍ ବେଶୀରେ ୩ ଦିନ । ତାଙ୍କ ଅଫିସରେ ୨ ଦିନ ବିଶ୍ରାମ ନେଉ । ହିସାବ ପାଞ୍ଜି ଆଉ ବିଲ୍ ତନଖି, ଖାତା ପତ୍ରରେ ହିସାବ ଦରଜ ଓ ମେନେଜରଙ୍କ ଟଙ୍କା ପଠେଇ ଆଦେଶ ଇତ୍ୟାଦିରେ ଆଉ ୪ ଦିନ ଯାଉ । ତାପରେ ଟଙ୍କା ମନିଅର୍ଡର ଯୋଗେ ବା ଚେକ୍ ଯୋଗେ ଆସିବାକୁ ଗୁଡ଼ିଦିଅ ଗୁରିଦିନ । ଗାଯୁମୋଟ ୧୩ ଦିନ । ବିଲ୍ ପଠେଇବାର ତ୍ରୟୋଦଶ ଦିନଠାରୁ ଆଶାର ଅମରିଗଛ ପଲ୍ଲବି ଉଠିଲା । ସେହିଦିନଠାରୁ ଡାକବାଲା ନିତି ଶୁଣିଲା—"ଗପୁଆରୁ ମନିଅର୍ଡ଼ର ଆସିଛି ?" ଶୁଣି ଶୁଣି ତା କାନ ବି ତାବଦା ହୋଇଗଲା । ପଛକୁ ସେ ଅଫିସ ଭିତରେ ପଶିବାମାତ୍ରେ ଆଗରୁଭିରି କହିଦିଏ—"ଗପୁଆରୁ କିଛି ମନିଅର୍ଡ଼ର ନାହିଁ ।" ସମ୍ପାଦକେ ଅଯଥା ପ୍ରଶ୍ନ ଓ ଆଶା କରିବାର ଦାଉରୁ ଅବଶ୍ୟ ରକ୍ଷା ପାଆନ୍ତି । ଆଶାର ଅମରି ଗଛ କି ସହଜେ ମରେ ! ନପାଉ ପାଣି, ନ ପଡ଼ୁ କାକର, ମାସ ମାସ ଧରି ଟାଆଁସିଆ ଖରା ପଛକେ ଜାଳୁ

ତାର ପତର ଟିକଏ ବ ଝାଉଁଳବ ନାହିଁ । ମାସେ ଗଡ଼ିଗଲା । ସମ୍ପାଦକେ ଭାବିଲେ ଦୁଇମାସର ଟଙ୍କା ଏକାଠି ଆସିଲେ ଭଲ ହେବ । ଦୁଇମାସରୁ ତିନି ମାସ, ତିନିମାସରୁ ଚାରିମାସର ଟଙ୍କା ଏକାଠି ହେବାର ଆଶା ବା ଆଶଙ୍କା ହେବାରୁ ଅମର ଗଛର ପତ୍ର ଟିକଏ ଝାଉଁଳିଲା । ଦୁଇ ତିନିଟା ସ୍ମାରକୀ ଚିଠି ଗଲା । ତଥାପି ଉତ୍ତର ନାହିଁ । ଅନନ୍ୟୋପାୟ ହୋଇ ସମ୍ପାଦକ ଗସ୍ତାରେ ଓକିଲାତି କରିଥିବା ଜଣେ ବନ୍ଧୁଙ୍କ ପାଖକୁ ଚିଠି ଦେଲେ । ଚିଠିର ଉତ୍ତର ବି ଚଟାପଟ୍ ଆସିଗଲା । ତାକୁ ପଢ଼ିବାମାତ୍ରେ ସମ୍ପାଦକଙ୍କ ଅମର ଗଛ ମରି ମାଟିରେ ମିଶିଗଲା ।

ଚିଠିରେ ଥିଲା—ଗସ୍ତାରେ ଦଳେ ଡାକୁ ଏପରି ଆଡ଼ଭର୍ଟାଇଜିଂ ଏଜେନ୍ସି ଖୋଲିଛନ୍ତି । ପତ୍ରିକାମାନଙ୍କ ପାଖକୁ ଛପା ଫର୍ମ ଓ ଅର୍ଡର ପଠାଇ ଦିଅନ୍ତି । ବିଲ୍ ଓ ଭାଉଚର୍ କପି ଫର୍ମମାନଙ୍କୁ ଦେଇ ସେମାନଙ୍କଠାରୁ ଟଙ୍କା ଆଦାୟ କରି ନିଅନ୍ତି । ପତ୍ରିକାମାନଙ୍କୁ ସେମାନଙ୍କର ଦେୟ ଦୁଇତିନି ହଜାର ଟଙ୍କା ହୋଇଗଲେ ସେମାନେ ନାଁ'ଟାକୁ ବଦଳେଇ ଦିଅନ୍ତି । ପୁଣି ନୂଆ ନାଁ'ରେ ଆଉ ଦି'ତିନି ହଜାର ଟଙ୍କା ହେବା ପର୍ଯ୍ୟନ୍ତ ବେଉସା ଚାଲେ । ସମ୍ପାଦକମାନଙ୍କୁ ଚିତା କାଟି ଏ ଡାକୁମାନେ ଏହିପରି ପଇସା ରୋଜଗାର କରନ୍ତି । ଉପସ୍ଥିତ ଗ୍ଲାମରଲାଇନ୍ ଆଡ଼ଭର୍ଟାଇଜିଂ ଏଜେନ୍ସି ଦୁଇ, ତିନିବର୍ଷ ଭିତରେ କୋଡ଼ିଏ ପଚିଶି ଥର ନାଁ ବଦଳେଇ ସାରିଲେଣି ।

ସମ୍ପାଦକଙ୍କ ରାଗ ମୁଣ୍ଡରୁ ଗୋଡ଼ଯାଏ ସିରସିର ହୋଇ ଚରିଗଲା । ପ୍ରତିହିଂସାର ନିଆଁ ହୁତୁ ହୁତୁ ହୋଇ ଜଳି ଉଠିଲା । ଅସ୍ପଷ୍ଟ ସ୍ୱରରେ ତାଙ୍କ ପାଟିରୁ ବାହାରିଲା—"ରୁହ ଡାକୁକା ବଚ୍ଚେ, ତୁମକୁ ମଜା ଚଖଉଛି ।"

କୋମ୍ପାନିର ବିଜ୍ଞାପନଟି ପୂର୍ବପରି ପତ୍ରିକାରେ ଛପାଗଲା । ଦୁଇଟି ଭାଉଚର୍ କପିରୁ କିନ୍ତୁ ଅସଲ ବିଜ୍ଞାପନଟି କାଢ଼ିନେଇ ଆଉ ଗୋଟିଏ କଟୁ ବିଜ୍ଞାପନ ଭର୍ତ୍ତିକରି ଦିଆଯାଇ ପଠେଇ ଦିଆଗଲା ।

× × ×

ବିଜ୍ଞାପନଟି ଥିଲା ହ୍ୱଣ୍ଟର୍ ଓ୍ୱାର୍ କୋମ୍ପାନିର । ସେ ଗ୍ଲୁମେଲଅନ୍ ଏଜେନ୍‌ସିଠାରୁ ସବୁଥର ପରି ବିଲ୍ ଓ ଭାଉଚର କପି ପାଇଲା । ଓଡ଼ିଆ ଜାଣିଲାବାଲା କର୍ମଚାରୀ ତାର କେହି ନ ଥାନ୍ତି । ତେଣୁ ସେ ସବୁଥର ପରି ଓଡ଼ିଆ ଜାଣିଥିବା ସ୍କୁଲ ମାଷ୍ଟରକୁ ବିଜ୍ଞାପନଟି ଠିକ୍‌ଅଛି କି ନା ଦେଖାଏ । ଏଥରକ ବିଜ୍ଞାପନଟି ଦେଖି ସେ ନାକ ଟେକିଦେଲା । ହିସାବ ପାଞ୍ଜିଆ ନାକଟେକାର କାରଣ ବାରମ୍ବାର ପଚାରିବାରୁ ମାଷ୍ଟରଟି ବୁଝେଇଦେଲା —"ଏ ବିଜ୍ଞାପନରେ ବାହାରିଛି ଯେ ତମ କୋମ୍ପାନି ଗୋଟାଏ ଠକ ଯୁଆଚୋର କୋମ୍ପାନି । ଓଡ଼ିଆ ଲୋକଙ୍କୁ ବୋକା ବୋଲି ଠଉରେଇ ତୁମେ ସେମାନଙ୍କୁ ତାହା ଠକା ଠକାଉଛ । ବିଜ୍ଞାପନଟି ଓଡ଼ିଆମାନଙ୍କୁ ସତର୍କ କରାଇ ଦେଇଛି ଯେ କେହି ଯେପରି ତୁମପରି ଠକ, ଯୁଆଚୋର, ଦଗଲବାଜ୍ କୋମ୍ପାନିର ପାଲରେ ନ ପଡ଼ନ୍ତି ।

ଏତକ ଶୁଣିବା ମାତ୍ରେ ହିସାବ ପାଞ୍ଜିଆର ମୁଣ୍ଡ ବୁଲେଇ ଦେଲା । ସେ ମେନେଜରକୁ ସବୁ କଥା ଜଣେଇଲା । ଗୋଟାଏ ରାକ୍ଷସ ପରି ଚେହେରା ବିଶିଷ୍ଟ ଦୁର୍ଦ୍ଦାନ୍ତ ମେନେଜର ସବୁ ଶୁଣି ଗମ୍ଭୀର ହୋଇଗଲା । ହିସାବ ପାଞ୍ଜିଆକୁ ନିର୍ଦ୍ଦେଶ ଦେଲା ଯେ ଗ୍ଲୁମେଲଅନ୍‌ର ଲୋକ ଟଙ୍କାପାଇଁ ଆସିଲେ ସିଧା ସଳଖ ତା ପାଖକୁ ପଠାଇ ଦେବାକୁ ହେବ । ବିଜ୍ଞାପନ ବିଷୟରେ ଉଁ କି ଚୁଁ କିଛି କୁହାଯିବ ନାହିଁ ।

× × ×

ସବୁଥର ପରି ଗ୍ଲୁମେଲଅନ୍ ଆଡ଼୍‌ଭର୍ଟାଇଜିଂ ଏଜେନ୍‌ସିର ସର୍ଦ୍ଦାର ବିଜ୍ଞାପନ ବାବଦ ଟଙ୍କା ଆଣିବାକୁ ହ୍ୱଣ୍ଟର ଓ୍ୱାର୍ କୋମ୍ପାନିର ହିସାବ ପାଞ୍ଜିଆ ପାଖରେ ପହଞ୍ଚିଲେ । ଅଳ୍ପ ସମୟ ଭିତରେ ମିଳିବାକୁ ଥିବା ଟଙ୍କା ସିଗାରେଟ୍‌ବାଲା, ମଦ ଖଟି, ଭଡ଼ାଘରବାଲା, କାବୁଲି ମହାଜନ ଭିତରେ କିପରି ବଣ୍ଟାଯିବ ତାର ଏକ ଅଟକଳ ମନେ ମନେ ତିଆରି କରୁଥାନ୍ତି । ହିସାବ ପାଞ୍ଜିଆ ତାକୁ ସିଧା ସଳଖ ମେନେଜରଙ୍କ ପାଖକୁ ପଠେଇଦେଲା । ପୂର୍ବର ବ୍ୟତିକ୍ରମ ଦେଖି ସେ ଭାବିଲେ ବୋଧହୁଏ

ମେନେଜର କିଛୁ କଟାକଟି କରିବେ। ସେ ମନରେ ଆଣି କଲେ—ପଇସା-ଟିଏ ଛାଡ଼ିବ ନାହିଁ। କଅଣ ସାରୁ ବାଇଗଣ ବେପାର ହୋଇଛି କି! ଏହିପରି ଭାବି ଭାବି ସେ ମେନେଜର ଆଗରେ ପହଞ୍ଚିଲେ।

ମେନେଜର ପଚାରିଲେ—"କିଏ, କଅଣ ଦରକାର ?"

ଗମ୍ଭୀର ହୋଇ ସର୍ଦ୍ଦାର ଉତ୍ତର ଦେଲେ—"ଜେଣ୍ଟେଲମେନ୍ ଆଡ଼୍ ଗ୍ରହାଇଙ୍ଗ ଏଜେନ୍‌ସିର ବିଲ୍ ଟଙ୍କାଟା ଦିଅନ୍ତୁ।

ମେନେଜର ବିଲ୍ ଓ ଶିଳପୁଆ ପତ୍ରିକାର ବିଜ୍ଞାପନଟି ଦେଖାଇ କହିଲେ—

"ଏଇ ବିଜ୍ଞାପନର ଟଙ୍କା ?"

"ହଁ—ହଁ—ଏଇ ବିଜ୍ଞାପନର ଟଙ୍କା।"

"ଆମ କୋମ୍ପାନିର ନାଁ ଜାଣିଛ ?"

"କାହିଁକି, ହଣ୍ଟରଓ୍ୱାଚ୍ କୋମ୍ପାନି"

"ହଁ। ଠିକ୍ ଜାଣିଛ" କହି ମେନେଜର ଡ୍ରୟର ଭିତରୁ ବିଜୁଳି ବେଗରେ ହଣ୍ଟରଟାଏ କାଢ଼ି ସଫାଚ୍ କରି ପାହାରେ ଦେଲେ।

ଏ କି ପ୍ରକାର ଘଡ଼ଘଡ଼ ବୋଲି ଭାବିବା ପୂର୍ବରୁ ଆହୁରି ପାହାରେ। ରାକ୍ଷସ ହାବୁଡ଼ରୁ କେମିତି ଖସି ପଳେଇବ ତାକୁ ବାଟ ଦିଶିଲା ନାହିଁ।



# ଅଟ୍ଟନକ ଚଡ଼କ

'ମା ଲକ୍ଷ୍ମୀ ଶରଣ, ମା ଲକ୍ଷ୍ମୀ ଶରଣ' ମନେ ମନେ ସୁମରଣା କରି ରାମଚନ୍ଦ୍ର ପରିଡ଼ା ଓରଫ୍ ରାମା ବନ୍ଧ ଦୋକାନ ଖୋଲିବା ଉଦ୍ଦେଶ୍ୟରେ ଘରୁ ଗୋଡ଼ କାଢ଼ିଛି କି ନାହିଁ, ଠିକ୍ ଦୁଆର ମୁହଁରେ ବସି ଆପଣା ପାଦ ଜୋରସୋରରେ ଗୃହି ଲଗିଥିବା ବିରାଡ଼ିଟିଏ ଛିଙ୍କି ଦେଲା । ରାମା ରାଗରେ ପାଚିଯାଇ ହାତରେ ଥିବା ଦୋକାନ ଗୃବି ପେନ୍ଥାକ ତା ଉପରକୁ ଲକ୍ଷ୍ୟ କରି ଫୋପାଡ଼ିଲା । ହେଲେ ତାହା ବିରାଡ଼ିଠାରୁ ଦୁଇହାତ ଦୂରରେ ଯାଇ ଝମ୍‌କରି ପଡ଼ିଲା । ବିରାଡ଼ିଟି ହି'ଗୋଡ଼ିଆଙ୍କ ଏପରି ବିଚିତ୍ର ବ୍ୟବହାରରେ ବିସ୍ମିତ ହୋଇ ଏବଂ ସେ ସ୍ଥାନ ତା ପକ୍ଷେ ନିରାପଦ ନୁହେଁ ଭାବି ଆଉ ଗୋଟିଏ ଥାନକୁ ପଳାଇ ଯାଇ ରାମା ଆଡ଼େ ବାରମ୍ବାର ସନ୍ଦିଗ୍ଧ ଦୃଷ୍ଟିରେ ଗୃହିଁବାକୁ ଲଗିଲା । ବୋଧହୁଏ ଭାବୁଥିଲା—କଥା ନାହିଁ ବାର୍ତ୍ତା ନାହିଁ ବିନା ଦୋଷରେ ଗୃରିଗୋଡ଼ିଆଙ୍କ ଉପରେ ହିଗୋଡ଼ିଆଙ୍କର ଏତାଦୃଶ ଆକ୍ର-ମଣର ପଟାନ୍ତର ନାହିଁ । ଏଗୁଡ଼ାକ ନିର୍ଲଜ, ଭୀରୁ, କାପୁରୁଷ ବା କୁ-ହି-ଗୋଡ଼ିଆଙ୍କ ଲକ୍ଷଣ ।

ରାମା କିନ୍ତୁ ଅନ୍ୟ ପ୍ରକାର ଭାବୁଥିଲା । "ଛିଙ୍କିଲାତ ଟିକିଏ ଦୂରକୁ ଯାଇ ଛିଙ୍କିଲାନି । ନହେଲେ ମୋର ଗୃଲିଯିବା ପରେ ଛିଙ୍କିଲାନି । ଦେଖୁଛି ମୁଁ ଗୋଟାଏ ଅନୁକୂଳ କରି ବାହାରିଛି, ଶଳାଟା ସେତିକି ବେଳକୁ ଛିଙ୍କୁଛି । ଶଳା ଅଭଦ୍ର କେଉଁଠିକାର !"

ରାମା ଆଉ ନ ଆଗେଇ, ଗୃବି ପେନ୍ଥାଟା ଗୋଟେଇ ଆଣି, ଫେରି ଆସି ପୁଣି ଘରଭିତରେ ଥିବା ଖଟ ଉପରେ ବସିଲା । ତା'ର ଦୃଢ଼ ବିଶ୍ୱାସ

ଥିଲି କୌଣସି ବଦମାସ ଗ୍ରହର ଖରାପ ପ୍ରଭାବ ନ ପଡ଼ିଲେ ଝଗଡ଼ା ଏପରି ଛୁଙ୍କିବାକୁ ସାହସ କରିନଥାନ୍ତା । ବଦମାସ ଗ୍ରହ ଗ୍ଭହିଁଥିବାବେଳେ କୌଣସି କାର୍ଯ୍ୟାରମ୍ଭ ବା ଯାତ୍ରାରମ୍ଭ ଅନୁଚିତ୍ । ଏଣୁ ଗ୍ରହକୁ ଚିଟା କାଟିବାର ପ୍ରକୃଷ୍ଟ ପନ୍ଥାହେଲା—ସେ ଗ୍ଭହିଁଥିଲା ବେଳେ କୌଣସି ପ୍ରକାର କର୍ମ ନ କରି ଚୁପ୍ ହୋଇ ବସି ରହିବା ଓ ସେ ଗ୍ଭଲିଯିବା ପରେ କାମ ସୁରୁ କରିବା । ଏହି ପଦ୍ଧତି ଅନୁଯାୟୀ ରାମା ୫ ମିନଟ୍ ଖଣ୍ଡେ ଖଟ ଉପରେ ଚୁପ୍‌ହୋଇ ବସିରହି ମନେ ମନେ 'ମୁଁ କଣ୍ଟ କରୁନି ମୁଁ କଣ୍ଟ କରୁନି' ଭାବ ଲାଗିଲା । ଗ୍ରହ-ଗୁଡ଼ାକ ମନକଥା ଜାଣିପାରନ୍ତି ବୋଲି ତାକୁ ଜଣାଥିଲା । ରାମା ଏହି ପନ୍ଥାରେ କୁଗ୍ରହକୁ ଆଚ୍ଛାକରି ଚିଟାକାଟି ଦେଲା । ଗ୍ରହର ଦୃଷ୍ଟି ଖୁବ୍ ହେଲେ ଢ'ଗ୍ଭରି ମିନଟ୍ ରହିପାରେ । ତେଣୁ ରାମା ପୁରା ପାଞ୍ଚ ମିନଟ୍ ଚୁପ୍ ଗ୍ଭପ୍ ବସି ରହି ପୁନର୍ବାର ଦୋକାନ ଉଦ୍ଦେଶ୍ୟରେ ଯାତ୍ରା ଆରମ୍ଭ କରିଦେଲା । ଥୋଡ଼ାଏ ବାଟ ସାଇକେଲରେ ଯାଇଛି କି ନାହିଁ ସମ୍ମୁଖରେ ଆସୁଥିବା ଆଉ ଗୋଟିଏ ସାଇକେଲ ଚଢ଼ାଳି ତାକୁ ସତର୍କ କରାଇଦେଲା —"ଆଗରେ ଲାଇସନ୍‌ବାଲା ସାଇକଲ ଧରୁଛି, ହୁସିଆର ।"

ରାମାର ମନେ ପଡ଼ିଗଲା ଯେ ସେ ଏ ପର୍ଯ୍ୟନ୍ତ ମୁନିସିପାଲଟି ଲାଇ-ସେନ୍‌ସ୍‌ଟା କରିପାରି ନାହିଁ, ମନେ ମନେ ସତର୍କକାରୀକୁ ଧନ୍ୟବାଦ ଦେଇ ସେ ସେହିଠାରୁ ବାଟ ଭାଙ୍ଗି ଅନ୍ୟବାଟ ଧରିଲା । ଦୁଷ୍ଟ ଗ୍ରହକୁ ପଟିମାରି ଦେଇଥିବାର ଠିକ୍ ଠିକ୍ ପ୍ରମାଣ ସେ ଏହି ଘଟଣାରୁ ପାଇଗଲା । ନୂଆ ବାଟଟା ପରିବା ହାଟ ଭିତରଦେଇ ଯାଇଥିବାରୁ ଟିକଏ ଗହଳିଆ, ମଠେଇ ମଠେଇ ସାଇକେଲ ଚଳାଇବାକୁ ହେବ, ଟିକଏ ଡେରି ହୋଇଯାଇପାରେ । ହେଲେ ମୁନିସିପାଲଟି ଲାଇସନଆଙ୍କ ହାବୁଡ଼ରେ ପଡ଼ି ହଇରାଣ ହେବା ଅପେକ୍ଷା ଏତିକ ଡେରି ଶହେ ଗୁଣ ଶ୍ରେୟସ୍କର ।

ପରିବା ହାଟ ପାଖରେ ରାମା ସାଇକେଲ ଧୀରେ ଧୀରେ ଚଳାଇଲା । ମଣିଷ, ଗାଈ, ଷଣ୍ଢ ଓ କୁକୁର ସମସ୍ତେ ହାଟକୁ ସରଗରମ କରିଥାନ୍ତି, ମଣିଷମାନଙ୍କ ସଙ୍ଗେ ଗାଈ ଓ ଷଣ୍ଢମାନେ ବି ପରିବା କିଣାରେ ବ୍ୟସ୍ତ ଥାଆନ୍ତି । ଅବଶ୍ୟ ମଣିଷଙ୍କ ପରି ସେମାନଙ୍କୁ ଦାମ୍ ଦେବାକୁ ପଡ଼ୁନଥାଏ । ବରଂ ପରିବା ସହିତରେ ଢ'ଗ୍ଭରି ଧଡ଼ା ବା ବଟକରାରେ ମୁଣ୍ଡ ଛେଚି

ଦାନ ସଙ୍ଗେ ଦକ୍ଷିଣା ସ୍ୱରୂପ ନେବାକୁ ପଡ଼ୁଥାଏ । ସାଇକେଲ ଉପରୁ ରାମା ଦେଖିଲା ଗୋଟିଏ ଷଣ୍ଢ ଅତି ବେପରବାଏ ଭାବରେ ଗୋଟିଏ ପରିବା ଦୋକାନର ପସରାରେ ମୁହଁ ଭର୍ତ୍ତି କରିଦେଲା । ହେ— ହେ, ହାଁ-ହାଁ ଆଦି ସମସ୍ତ ନିବର୍ତ୍ତନ ସୂଚକ ଶବ୍ଦ ନିଷ୍ଫଳ ହେବାରୁ ଦୋକାନୀଟି ଗୋଟିଏ ଠେଙ୍ଗାର ଆଶ୍ରୟ ନେଲା । କଥାରେ ଅଛି ମାଡ଼କୁ ମହାଦେବଙ୍କର ଡର । ଷଣ୍ଢ ଯେତେହେଲେ ତାଙ୍କର ବାହାନ, ସେ କିବା ଛାର ! ଶେଷରେ ଷଣ୍ଢଟା ପୁଳାଏ ପରିବା ପାଟିରେ ଧରି ଆଖିବୁଜା ଦଉଡ଼ିଲା । ଲୋକେ ଏଣେ ତେଣେ ହୋଇଯିବାରୁ ରାମା ସାଇକେଲ ଗତି ଶିଥିଳ କଲା । ଓହ୍ଲେଇବ କି ନାହିଁ ଭାବୁଛି ଷଣ୍ଢଟା ଆଖିବୁଜା ସାଇକେଲ ଉପରେ ଚଢ଼ିଗଲା । ରାମା ଭୟରେ ସାଇକେଲ ଛାଡ଼ିଦେଇ ଅଲଗା ହୋଇଗଲା । ତାର କୌଣସି କ୍ଷତି ହେଲାନି । ଦୁଷ୍ଟ ଗ୍ରହର ଦୃଷ୍ଟି ତା ଉପରେ ନାହିଁ ଭାବି ମନେ ମନେ ଭଗବାନଙ୍କୁ ଧନ୍ୟବାଦ ଦେଲା । କିନ୍ତୁ ହାୟ ! ସାଇକେଲଟି ଉଠାଇବାକୁ ଯାଇ ଯାହା ଦେଖିଲା ସେଥିରେ ଭଗବାନଙ୍କୁ ଦେଇଥିବା ସମସ୍ତ ଧନ୍ୟବାଦ ଫେରାଇ ନେବାକୁ ଇଚ୍ଛାକଲା । ଷଣ୍ଢଟାର ଗୋଡ଼ପଡ଼ ଗୁଡ଼ାଏ ଅରି ବା ସ୍ପୋକ୍ ଛିଣ୍ଡି ମୁହଁ ମୋଡ଼ି ଦେଇଛି । ସାଇକେଲଟା ବି ଇଞ୍ଚେ ଆଗେଇବାକୁ ନାରାଜ । ଆଗଚକାଟି ଏକାବେଳେକେ ଅଷ୍ଟାବକ୍ର ଋଷି ପାଲଟି ଯାଇଛି ।

ରାମା ମନେ ମନେ ଠିକ୍ କରିନେଲା—ନା ବଦମାସ ଗ୍ରହଟା ବୋଧହୁଏ ଟେରା । ଚାଲିଗଲା ବେଳେ ଟିକିଏ ଟେରେଇ କରି ଚାହିଁ ଦେଇଛି । ସେ ବାଟେ ଯାଇଥିଲେ ଲାଇସନ୍ସଆଲା ଖୁବ୍ ହେଲେ ପାଞ୍ଚଟଙ୍କା ଦେବାକୁ ପଡ଼ିଥାନ୍ତା । ଏ ବାଟେ ଦଶଟଙ୍କାରୁ ଊଣା ଚଳିବ ନାହିଁ । ଏତେବାଟ ସେ ସାଇକେଲ ଉପରେ ଚଢ଼ି ଆସିଲା । ଏଥରକ ସାଇକେଲ ତା ଉପରେ ଚଢ଼ିବ । ସାଇକେଲଟିକୁ ବାଧ୍ୟ ହୋଇ କାନ୍ଧେଇ କାନ୍ଧେଇ ଗୋଟିଏ ସାଇକେଲ ଡାକ୍ତରଖାନାକୁ ଗଲା । ସେଇଠି ସାଇକେଲଟି ଫୋପାଡ଼ି ଦେଇ ଚାଲି ଚାଲି ଦୋକାନକୁ ଗଲା ।

ଦୋକାନଟା ଖୋଲିଦେଇ ଝାଡ଼ୁଦେବା ପରେ ବସ୍ତୁ ବସ୍ତୁ କରି ଘରଆଡ଼େ ଟିକିଏ ପାଣି ଆଣି ଛିଞ୍ଚିଦେଲା । କାନ୍ଥ କୁରାରେ ଥିବା ଗଣେଶଙ୍କ

ପାଖରେ ଧୂପ କାଠିଟାଏ ଲଗେଇଦେଇ ମୁଣ୍ଡିଆଟିଏ ମାରିଲା । ତାପରେ ବହି, ଖାତା ପେନ୍‌ସିଲ୍ ସବୁ ସଜେଇରଖି ଗରାଖ ଆଗମନକୁ ଅପେକ୍ଷା କରି ରହିଲା, ଠିକ୍ ଯେପରି ଜାଲ ମେଲେଇଦେଇ ବୁଢ଼ିଆଣୀଟାଏ ମାଛିକୁ ଅପେକ୍ଷା କରି ରହିଛି ।

ଘଣ୍ଟାଏ ଗଲା, ଗରାଖର ଧାସ ବି ନାହିଁ । ଯିଏ ତା ଦୋକାନ ସାଇନବୋର୍ଡ ଆଡ଼େ ଚାହିଁ ଦେଉଥାଏ ତାକୁଇ ଗରାଖ ଆସିଲା ବୋଲି ଭାବନେଉଥାଏ । ସେ ମୁହଁ ଫେରାଇ ଚାଲିଯିବା ପରେ ତାକୁ ଗୁଣୁ ଗୁଣୁ ହୋଇ ଗାଳିଦେବା ଆରମ୍ଭ କରିଦିଏ—"ଶଳା, ବହି ନ କିଣିବୁତ ସାଇନ-ବୋର୍ଡକୁ ଚାହିଁଥିଲୁ କିଆଁ ? ଶଳା ଆସିଛି ସହର ଦେଖି । ବୋପା ଜିହାଜରେ ଦେଖିନଥିଲା । ଏମିତି ପ୍ରାୟ ୪, ୫ ଜଣଙ୍କୁ ଗାଳିଦେବା ପରେ ତାର ରାଗ ସ୍କୁଲ ମାଷ୍ଟରଗୁଡ଼ାଙ୍କ ଉପରେ ପଡ଼ିଲା । ଏଇମାନେ ତ ପ୍ରକାଶକମାନଙ୍କଠାରୁ ସିଧାସଳଖ ବହି ବାକ୍ସରେ ନେଇ ଘରେ ଘରେ ବହିବେପାର କଲେ; ଦୋକାନୀଙ୍କୁ ଆଉ ପଚାରିବ କିଏ ? ପିଲାଏ ମାଷ୍ଟରଙ୍କ-ଠାରୁ ବହି ନକିଣି ଦୋକାନୀଠୁ କଅଣ କିଣିବେ ? ମାଷ୍ଟରର ବେପାରକୁ ବଢ଼େଇଲେ ଖାତାରେ ତାର ନମ୍ବର ବଢ଼ିବ । ଗଲା ଏ ବହିବେପାର ସରିଲା ।

ଭାବନା ସୁଅଟା ହଠାତ୍ ବନ୍ଧରେ ବାଜି ଅଟକି ଗଲା । ଗୋଟାଏ ବୁଢ଼ା ପସରା ଆଲମାରୀକୁ ନିରେଖି ଚାହିଁଛି । ଗାଳିଦେବ କି ନାହିଁ ସେ ସ୍ଥିର କରିପାରିଲା ନାହିଁ । କାଳେ ସଚ୍ଚା ଗରାଖ ହୋଇଥିବ । ନ ହେଲେ ଠିଆହୋଇ ପସରା ଆଲମାରି ( ସୋକେଶ୍ )କୁ ଏମିତି ଗାରଡ଼େଇ ଚାହାନ୍ତା କିଆଁ ?

ବୁଢ଼ାଟି ଦୋକାନ ଉପରକୁ ଉଠିଲା । ପହିଲି ଗରାଖ ଭାବି ରାମା ଭାରି ଖୁସିଟାଏ ହୋଇଗଲା । ତା ହୃଦଟା ଉଷୁମ ହୋଇଉଠିଲା । ଏତେବେଳ କଟେଇବା ପରେ ପହିଲି ଗରାଖର ଦେଖା । ତେଣୁ ତାଙ୍କୁ ସର୍ବୋତ୍‌କୃଷ୍ଟ ସମ୍ମାନ ଦେବାକୁ ହେବ । ଅତି ବିନୟର ସହିତ ସେ ଅଳପ ହସି ପଚାରିଲା—"ଆଜ୍ଞା, ଆପଣଙ୍କର କ'ଣ ଦରକାର ?"

"ଗୋଟାଏ ଅସଲ କଣ୍ଟ୍ ଦାବାନଳ ଦିଅନ୍ତୁ ।"

ରାମାର ଗୋଡ଼ଆଉ୍ ରଗ ସିର୍ ସିର୍ ହୋଇ ଉଠିଲା । ମନକଥା ମନରେ ଗୁପିରଖି ପଚାରିଲା—"ତମର କଅଣ କୁଣ୍ଡେଇ ହଉଛି ?"

ଲୋକଟି ଇତସ୍ତତ ହୋଇ କହିଲା—"ସେଇଟା ଦେଖି ହବନି, ଦେଖେଇ ହବନି କି କହି ହବନି । ତମ ଦୋକାନରେ ଅଛି ଯଦି ଦିଅ, ନ ହେଲେ ମନା କରଦିଅ ଚାଲିଯିବି ।"

ଲୋକଟିର ବଚରା ଅଥାନରେ କଣ୍ଡୁ ହେଉଥିଲା । ରାମା ମନରେ ଦୟା ହେଲା । ତାଙ୍କ ଦୋକାନକୁ ଲାଗିରହିଥିବା ଓ ଏକାପରି ଦିଶୁଥିବା ଔଷଧ ଦୋକାନଟା ଦେଖାଇ ଦେଇ କହିଲା—"ହେଇ ଏ କଡ଼ ଔଷଦ ଦୋକାନକୁ ଯାଅ, ସେଇଠି ଔଷଦ ପାଇବ । ଏଇଟା ବହି ଦୋକାନ ।"

ବୁଢ଼ାଟି ଅପ୍ରସ୍ତୁତ ହୋଇ କଡ଼ ଔଷଧ ଦୋକାନକୁ ଚାଲିଯିବା ପରେ ରାମା ବିବ୍ରତ ହୋଇପଡ଼ି ଭାବିଲା—"ନାଃ ସେ ଗ୍ରହଟା ବୋଧହୁଏ ଖରାପ ନୁହେଁ । ତାର ଗଳିବାଟରେ ନଯାଇ ଭଲବାଟରେ ଆସି ବୋଧହୁଏ ମୋ ଆଡ଼େ ଚାହିଁଦେଲା ଓ ନିଜର ଭୁଲ ବୁଝିପାରି ମୁହଁ ବୁଲେଇ ଦେଇ ଚାଲିଗଲା । ଗୁଡ଼ ସେତ ମୋର ଗରାଖ ନୁହେଁ । ମନ କଷ୍ଟକରି ଲାଭ ନାହିଁ ।"

ଦଶ ପନ୍ଦର ମିନିଟି ଯାଇଛି କି ନାହିଁ ସତ ସତିଆ ପହିଲି ଗରାଖଟି ରାମା ଦୋକାନକୁ ଉଠିଲା । ଗରାଖ କି ଅଗରାଖ ଠିକ୍‌କରି ନ ପାରି ରାମା ବିଶେଷ ଆଗ୍ରହ ଦେଖାଇଲା ନାହିଁ କି ଆଦର କଲାନାହିଁ । ପ୍ରୌଢ଼ ଗ୍ରାହକଟି ପଚାରିଲା—"ହାଡ଼ମ୍ବା ନନ୍ଦନ ବହିଟା ଅଛି ?" ରାମାର ମନେ ପଡ଼ିଗଲା—ଗୋଟାଏ ମାନ୍ଧାତା ଅମଳର ବହି । ଅଚଳନ୍ତ ବହି ଗଦାରେ ଥରେ ସେ ଦେଖିଥିଲା । ହଁ ଅଛି କହି ସେ ଅଚଳନ୍ତ ବହିଗଦା ପାଖକୁ ଗଲା । ବହୁତ ଘଣ୍ଟାଘଣ୍ଟି ପରେ ବହିଟି ନେଇ ଗରାଖ ପାଖକୁ ଆସିଲା । ବହିଟି ଦେଇ କହିଲା, 'ଛଅଟଙ୍କା' ।

ଗରାଖଟି ଉତ୍ତର ଉଠୁଥିବା ଆନନ୍ଦକୁ ଚୁପି ଦେଇ କହିଲା—"ହେଃ ! ଏ ପୁରୁଣା ମଇଳା ବହିଟାକୁ ଛଅଟଙ୍କା ଦେଇ କିଣିବ କିଏ ?"

ସେ ବହି ଯେ କେବେ ବିକିହେବ ସେ ଆଶା ରାମା ଛାଡ଼ି ଦେଇଥିଲା । ପହିଲି ଗରାଖକୁ ଛାଡ଼ି ନଦେବା ଲାଗି ସେ କହିଲା—"ହଉ ଚରିଟଙ୍କା ପଚାଶ ପଇସା ଦିଅ । ପଚିଶି ପରସେଣ୍ଟ୍ କମିସନ କାଟି ଦେଉଛୁ ।"

"ନାହିଁ ହେ-ମଇଳାବହି । ଅଧା ଦାମରେ ଦେଲେ ନେବି" କହି ଗରାଖଟି ଫେରି ଯିବାର ଛଳନା କଲା । ରାମା ଦେଖିଲା, ଅଚଳନ୍ତି ବହିଟା । ଯେତିକି ମିଳିଲା ସେତିକି ଲାଭ । ତା ଉପରେ ପୁଣି ପହିଲି ଗରାଖକୁ ଛାଡ଼ି ଦେଲେ ଦିନଟାଯାକ ଗରାଖ ସବୁ ଫେରୁଥିବେ । "ହଉ ହଉ ଦିଅ" କହି ରାମା ଗରାଖଠାରୁ ତିନଟଙ୍କା ନେଇ ମୁଣ୍ଡରେ ମାରି କ୍ୟାସ୍ ବାକ୍ସରେ ଥୋଇଲା । ଗରାଖଟି ବହିଟାକୁ ଝାମ୍ପି ନେଲା ପରି ନେଇଯାଇ ପଳେଇଲା ।

ଦଶ ମିନିଟ ଯାଇଛି କି ନାହିଁ, ରାମାର ଦୋକାନୀ ସାଙ୍ଗ ଗଣି ଦୋକାନ ଭିତରକୁ ପଶିଆସି କହିଲା—"ହେ ରାମା ! ଗୋଟାଏ ଲୋକ ଏହିକ୍ଷଣି ଆସିବ । ବହି ଦାମର ଡବଲ ଦାମ ତାଠୁଁ ନେବୁ । ସେ ବହିଟା ସବୁ ବହି ଦୋକାନରେ ବୁଲି ବୁଲି କାହାରଠୁଁ ପାଇନି । ତୁ ରେଣ୍ଟି ବସିଲେ ସେ ଡବଲ ଦାମ ଦେବ । ଯାହାବି ଦାମ ହେଉ ସେ କିଣିବ ବୋଲି ମୋତେ କହିଲା । ବହି ଖଣ୍ଡିଏ କରେଇ ଦେଲେ ମୋତେ ବହିର ଦାମ ଯେତିକି ସେତିକି ପୁରସ୍କାର ଦେବ । ଦେଖ ବହିର ଡବଲ ଦାମ ରଖିବୁ, ତୁ ଅଧଭାଗ ରଖିବୁ, ମୋର ଭାଗ ମୋତେ ଦେବୁ । ଲୋକ-ଟାର ଫେରରେ ଭୁଲିବୁ ନାହିଁ । ସେ ଫେରିଗଲା ଭଳି ପେଖନା ଦେଖେଇବ ତୁ କିଛିହେଲେ ଶୁଣିବୁ ନାହିଁ । ବଳେ ବଳେ ଫେରିଆସି ମାଲ ମାଲ ହୋଇ ନେବ ।"

ରାମା ଖୁସି ହୋଇଯାଇ ଅତି ଆଗ୍ରହରେ ପଚାରିଲା—"କି ବହି କହିଲୁ ?"

ଗଣି କହିଲା—ସେ ବହିଟା ତୋରି ପାଖରେ ଥିଲା । ମୁଁ ନିଜେ ଥରେ ତୋ ଅଚଳନ୍ତି ବହି ଗଦା ଭିତରେ ଦେଖିଥିଲି । ସେଇଟା ହେଉଛି 'ଝିଅମା ନନ୍ଦନ' ।

ରାମା ହଠାତ୍ ଯେମିତି ଜୀବ ଗୁଡ଼ଗଲା । ମୁଣ୍ଡରେ ହାତକୋଡ଼ି ସେ ଚିଲିବିଲେଇଲା "ହା ଶଳାଟା ମୁଁ କଅଣ କଲିରେ !''

ଗଣି ଅବାକ ହୋଇ ପଚାରିଲା—"କଅଣ ହେଲା କିରେ ?''

ମହାବ୍ୟସ୍ତ ହୋଇପଡ଼ି ରାମା କହିଲା—"ସବୁ ସରି ଯାଇଛି । ସେହି ଗରାଖଟା ଆସି ଅଧାଦାମରେ ସେ ବହିଟାକୁ ନେଇ ଚାଲିଗଲାଣି । ଓଃ ! ମୋ ମୁହଁରୁ ଆହାର ଯେମିତି କିଏ ଛଡ଼େଇ ନେଲା । ଗୁଡ଼ ମୋ ଭାଗ୍ୟରେ ନାହିଁ ।''

ଗଣି ପ୍ରବୋଧ ଦେଇ ଚାଲିଯିବା ପରେ ରାମା ମନେ ମନେ ଭାବୁ-ଥାଏ—"ଶଳା ଯେଉଁ ଗ୍ରହ ଆଜି ମୋ ଉପରେ ଦୃଷ୍ଟି ଦେଇଥିଲା ସେଇଟା ପକ୍‌କା ଟାଉଟର ପକ୍‌କା ଚାରିଶବିଶ୍ ।''

ଦୁଇ ତିନିଟା ଗରାଖ ଯିବାପରେ ଜଣେ କୋଟ୍ ପେଣ୍ଟ୍ ପିନ୍ଧାବାବୁ ଦୋକାନକୁ ଉଠିଲେ । ରାମା ତଡ଼ବଡ଼ ଠିଆ ହୋଇପଡ଼ି ଗରାଖଙ୍କୁ ନମ୍ରତା ସହ ପଚାରିଲା—"ଆଜ୍ଞା କଅଣ ଦରକାର ?''

ଆଗନ୍ତୁକ ଜଣକ କହିଲେ—"ତୁମେ ସ୍କୁଲ କଲେଜ ଲାଇବ୍ରେରୀ ଆଦିକୁ ବହି ସପ୍ଲାଇ କର ?''

"ହଁ ଆଜ୍ଞା ସ୍କୁଲ, କଲେଜ ସବୁ ଲାଇବ୍ରେରୀକୁ ସପ୍ଲାଇ କରୁ ।''

"ମୋର ବିଶ୍ୱାସ ହେଉନି । ଏତିକ ବୋଲି ତୁମର ଷ୍ଟକ୍ । ଏଥିରେ କି ସପ୍ଲାଇଟା କରିବ ? କଲେଜ ପାଇଁ ହଜାର ହଜାର ଟଙ୍କାର ବହି, ଷ୍ଟେସନାରି ଦରକାର । ତମର ଷ୍ଟକ୍ କାହିଁ ?''

"ଆଜ୍ଞା ଏତିକ ଜାଗା ଭିତରେ ସବୁ ଷ୍ଟକ୍ ରଖି ହବନି । ଆମେ ଆହୁରି ଦୁଇଟା ଘରଭଡ଼ା ନେଇ ଷ୍ଟକ୍ ଖୁନ୍ଦି ଦେଇଛୁ । ଆହୁରି ଘର ଦରକାର ପଡ଼ୁଛି ।"

"ସେମିତି ସବୁ ଦୋକାନୀ କହନ୍ତି । ଗୋଦାମରୁ ଆଣୁଛୁ ବୋଲି କହି ସବୁ ବହିଦୋକାନରୁ ବହି ସଂଗ୍ରହ କରି ଆଣି ଥୋଇ ଦିଅନ୍ତି । ମୋତେ ଏଇଟା ବହୁ ଆଗରୁ ଜଣା ।"

"ଆଜ୍ଞା ଆପଣତ ଜାଣନ୍ତି ଆଉ କହିବି କଅଣ ? ସବୁ ବହି ଦୋକାନୀ ସେଇଆ କରନ୍ତି । ସବୁ ବହି ସମସ୍ତଙ୍କ ପାଖରେ ରହିବା ସମ୍ଭବ ନୁହେଁ । ସେଥିରେ ଆପଣଙ୍କର ଯାଏ ଆସେ କେତେ ? ସମସ୍ତେ ଯେଉଁ କମିଶନ ଦିଅନ୍ତି ଆମେ ସେଇଆ ଦେଉ । ଆପଣ ଲାଇବ୍ରେରୀ ପାଇଁ କେତେ ଟଙ୍କାର ବହି ବା ଷ୍ଟେସନାରୀ ନେବେ କହନ୍ତୁ ।"

"ହଁ ହଜାରେ ଦି'ହଜାର ଟଙ୍କାର ନେଇଥାଆନ୍ତି, ହେଲେ ବିଶ୍ୱାସ ହେଉନି ତୁମେ ଦେଇପାରିବ ।"

"ଆଜ୍ଞା ଆପଣଙ୍କର ଅବିଶ୍ୱାସ କରିବାର କୌଣସି କାରଣ ନାହିଁ । ଆପଣ ଲିଷ୍ଟ ଦିଅନ୍ତୁ । ଲାଇବ୍ରେରୀକୁ କମିଶନ ଦେବୁ । ଯଦି ଆପଣ ଚାହିଁବେ ଆମେ ବିଲ୍‌ଟାକୁ ବେଶି କରିଦେଇ ସେ ଟଙ୍କାତକ ଆପଣଙ୍କୁ ଦେଇଦେବୁ ।"

"ପ୍ରକୃତରେ ଏପରି ଅଧିକ ବିଲ୍ କରି ଦେଇପାରିବ ନା ଖାଲି ମନ ନେବା ଲାଗି ବଢ଼େଇ କଥାଗୁଡ଼ାକ କହୁଛ ?"

"ଆଜ୍ଞା ଯାହା ନ କରି ପାରିବୁ ତାହା କହିବୁ କାହିଁକି ? ଆପଣ ଅର୍ଡର ଦିଅନ୍ତୁ ଯଦି ଆମେ ଆପଣଙ୍କ ପାଉଣା ନ ଦେବୁ ତେବେ ଆପଣ ଆମଠୁ କିଣିବେ କାହିଁକି ?"

"ବଡ଼ ଆଶ୍ଚର୍ଯ୍ୟ କଥା ! ତୁମେ କେମିତି ଏପରି କରୁଛ ବା କରିବ ତାହା ମୁଁ ବୁଝି ପାରୁନ । ଏତା ବିଲ୍ ଉପରେ ତୁମକୁ ତ ତୁମ୍ଭଠାରେ ଇନ୍‌କମ୍ ଟ୍ୟାକ୍‌ସ ଦେବାକୁ ପଡ଼ୁଥିବ ?"

"ଆଜ୍ଞା ଇନ୍‌କମ୍ ଟିକସବାଲଙ୍କ ବଡ଼ବୋପାକୁ ସତର ପଟ ଛଡା କାଟି ଆମେ ବେଉସା କରୁଛୁ । ସେମାନେ ଆମକୁ ଧରିବେ କଅଣ ! ସେମାନେ ଡାଳେ ଡାଳେ ଗଲେ ଆମେ ପତ୍ରେ ପତ୍ରେ ଗଲ୍‌ବାଲ୍ । ଏମିତି ବେଶୀ ବିଲ୍ କରିବାକୁ ପଡ଼ିଲେ ଆମେ ଗ୍ରେଭ୍ ଫର୍ମ ବିଲ୍‌ରେ କରୁ । ପ୍ରତ୍ୟେକ ଦୋକାନ ପରି ଆମେ ବି ଦୁଇ ଗୃହିଟା ବିଲ୍ ଫର୍ମ ରଖିଛୁ । ଆପଣଙ୍କୁ ସେହି ବିଲ୍ ଫର୍ମରେ ବିଲ୍ କରିଦେବୁ । ଇନକମ୍ ଟିକସ-ବାଲଙ୍କ ଚଉଦ ପୁରୁଷ ତାର ଟେର ପାଇବେ ନାହିଁ ।"

"ସତରେ କହୁଛ ନା ମିଛରେ କହୁଛ ? କାହିଁ ଦେଖାଇଲ ସେମିତିଆ ବିଲ୍ ଫର୍ମ୍ ?"

ରାମା ସଙ୍ଗେ ସଙ୍ଗେ ତିନିଟା ବିଲ୍ ଫର୍ମ ବହି ଆଲମାରି ପଛରେ ଥିବା ଗୋଟାଏ କାନ୍ଥ ଆଲମାରିରୁ କାଢ଼ି ଆଣି ଦେଖାଇଲା । ଗରାଖବାବୁ ଗୋଟି ଗୋଟି କରି ଦେଖିଲେ—'ଗଣେଶ ଭଣ୍ଡାର', ସରସ୍ୱତୀ ଭବନ' ଆଉ 'ବାଣୀଷ୍ଟୋର୍ସ' ଏହିପରି ତିନିଟା ଗ୍ରେଭ୍ ବିଲ୍ ଫର୍ମ । ଏଟାଯାକ ହାତରେ ଧରି କହିଲେ—"ଏଗୁଡ଼ାକ ଖାଲି ଗୁପି ଦେଖାଅ ନା ଏଥିରେ କାହାକୁ ବିଲ୍ କରିଛ ?"

"ଆପଣଙ୍କର ତେବେ ବି ବିଶ୍ୱାସ ହେଉନ, ହଉ ତେବେ ଦେଖନ୍ତୁ" କହି ରାମା ପୁଣି ଆଉ ଗୋଟିଏ ଆଲମାରି ପଛରୁ ଗୋଟାଏ ଗ୍ରେଭ୍ ବିଲ୍ ବହି ଆଣି ଦେଖାଇଲା । ଗରାଖବାବୁ ସତକୁ ସତ ଦେଖିଲେ ବହୁ ସ୍କୁଲ୍, କଲେଜ ନାଁରେ ଗୁଡ଼ାଏ ବିଲ୍ ହୋଇଛି । ତନ୍ନ ତନ୍ନ କରି ସବୁ ଦେଖି ସାରିବା ପରେ ସେ ପଚାରିଲେ ଏଗୁଡ଼ାକ ଇନ୍‌କମ୍ ଟ୍ୟାକସ୍‌ବାଲ ଦେଖନ୍ତି ନାହିଁ ।".

"କୁହନ୍ତୁନା ସେ ଶଳା ଇନ୍‌କମ୍ ଟ୍ୟାକସ୍ ଇନସ୍‌ପେକ୍‌ଟରଙ୍କ ଦାଉ ! ଶଳେ ଗଣଗଣିଆ ମାଛି ପରି ଦୋକାନୀମାନଙ୍କ ସଙ୍ଗରେ ଲାଗି ରହିଥାନ୍ତି । ଶଳା ଛତରାଏ ଦିନେ ଦୁଇଦିନ ଯାଇଥିବ କି ନାହିଁ ପୁଣି ଆସି ବେଢ଼ିଯିବେ । ଶଳାଙ୍କ ଆଖି ଏତେ ତିଖା ଯେ ଗଣ୍ଡଗୋଳିଆ ଥାନରେ ତାଙ୍କ ଆଖି ପଟ୍ କରି ପଡ଼ିଯାଏ । ଶଳାଏ ଦୟାମାୟା କିଛି ଜାଣନ୍ତି ନାହିଁ । ଶହ ଶହ ଲୋକଙ୍କ ତଣ୍ଟି ଚିପି ସରକାରଙ୍କ ଘରେ ଧନ ଭରୁଛନ୍ତି । ଶଳାଙ୍କ ଗିଧ ଆଖି ଏଡ଼ାଇବା ପାଇଁ ସବୁ ଦୋକାନୀ ଏହିପରି କନ୍ଦମନ୍ଦରେ ଗୈରା ଖାତା ସବୁ ଲୁଚେଇ ଥାଆନ୍ତି, ଓହୋ ! ସେ ଶଳା ଛତରଖିଆ ଗିଧମାନଙ୍କୁ ଦୂରୁ ଜୁହାର ।"

ବାବୁ ଜଣକ ସବୁ କାଗଜପତ୍ର ଖାତା ହାତରେ ଧରି ଅଳ୍ପ ହସି କହିଲେ "ହଇହେ ତମେ ମୋତେ ଏପରି ଶଳା, ଛତରଖିଆ, ଗିଧ କହୁଛ କାହିଁକି ? ମାଛ ଜବରଦସ୍ତ ଆସି ଖାଲେଇରେ ପଶିଲା ପରି ତମେତ ଆସି ମୋ ହାତରେ ସବୁ ଗୈରା କାଗଜପତ୍ର ସଅଁପି ଦେଲ, ଏଥିରେ ମୋ ପରି ଜଣେ ଇନ୍‌କମ୍ ଟ୍ୟାକସ୍ ଇନସ୍‌ପେକ୍‌ଟରର ଦୋଷ ରହିଲା କେଉଁଠି ?"

ରାମା ଗ୍ଲୋବ ଖାଇ ତଳେ ଲଥୁକରି ପଡ଼ିଗଲା । ପାଟିଟା ମେଲା ହୋଇଗଲା ଓ ଆଖି ଦୁଇଟା ଡ଼ମା ଡ଼ମା ହୋଇ ଦିଶିଲା । ତଣ୍ଟି ଶୁଖିଗଲା । ମୁହଁରୁ କଥା ବାହାରିଲା ନାହିଁ । ଏପରି ଅଘଟନ ଚଡ଼କ ପାଇଁ ସେ ମନେ ମନେ ସେହି ବଦମାସ ଓ ହାରମଜାଦା ଗ୍ରାହକୁ ଦାୟୀ କଲା ।

---

# ବକ୍ତୃତାକାଣ୍ଡ

ରତନାର ବକ୍ତୃତା-ତଲବ ଦେଖି ଅନ୍ୟମାନେ ପ୍ରମାଦ ଗଣିଲେ । ପ୍ରତିଯୋଗିତାବଜାରରେ ଜନିଷପତ୍ରର ଦର ଯେମିତି ହୁ ହୁ ହୋଇ କମି ଯାଏ ରତ୍ନାକର ଓରଫ୍ ରତନାର ଖୋଲ୍‌ଖୋଲ ପ୍ରତିଯୋଗିତା ଫଳରେ ବକ୍ତୃତା ବଜାର ମାନ୍ଦା ପଡ଼ିଗଲା । ଗୋଟାଏ ବକ୍ତୃତାର ଦାମ୍ ଡଜନେ କୁକୁଡ଼ା ଅଣ୍ଡାଠୁଁ ବି କମିଗଲା । ଏ ଦର ଖସିବାପାଇଁ ଯେ ରତନା ଦାୟୀ ତାହା ଅନ୍ୟାନ୍ୟ ବକ୍ତୃତା ବେପାରୀମାନେ ପହିଲେ ଜାଣି ନ ଥିଲେ । ରତନା ଯେ ଭିତରେ ଭିତରେ ଗୋଇନ୍ଦାଗିରି କରି ସମସ୍ତଙ୍କ ଦାନାରେ ଧୂଳି ପକାଉଛି ବହୁଦିନ ଯାଏ ତା'ର ଟେର୍ ଅନ୍ୟମାନେ ପାଇ ନ ଥିଲେ । ପହିଲେ ସନାତନ ଓରଫ୍ ସନିଆ ନାକରେ ଏ ଗନ୍ଧଟା ବାଜିଲା । ଭଣ୍ଡାରି ପୋଖରୀ ଯୁବକଦଳର କାରପଟ୍‌ଦାର୍‌ମାନେ ତାଙ୍କ ବାର୍ଷିକ ଉତ୍ସବ ପାଇଁ ଗୋଟାଏ ବକୁଆ ଖୋଜି ଆସିଥିଲେ । ଦଳର ସଭ୍ୟମାନେ, ଠିକ୍ ବଳଦଟାଏ କିଣିବାପାଇଁ ପସନ୍ଦ କରିବାର ସତର୍କତା ଅବଲମ୍ବନ କରିବାକୁ ବାରମ୍ବାର ତାଗିଦ୍ କରିଥିଲେ । ବହୁ ଖୋଜାଖୋଜି ପରେ ସେମାନେ ସନିଆକୁ ପାଇଥିଲେ । ବଳଦ କିଣା ବେଳର ସମସ୍ତ ସତର୍କତା ଅବଲମ୍ବନ ପରେ ସନିଆକୁ ସେମାନେ ପସନ୍ଦ କଲେ । ଭାଉ କଷାକଷି, ମୂଲଚୂଲ ସବୁକିଛି ତୁଟି ଯାଇଥିଲା । ଦୁଇ ବକତ ଖୋରାକ, ବକିବା ଆଗରୁ ଛଅ-ପଟ ଫିଙ୍କାର ସାହୁ ବିସ୍କୁଟ, କପେ ଗୁଲୁଗୁହା ଆଉ ଗୋଟିଏ ସ୍ୱିରମିନାର ସିଗାରେଟ୍‌ର ନିଶ୍ଚିତ ବ୍ୟବସ୍ଥା ହୋଇଛି । ଖୋରାକ ଅବଶ୍ୟ ଯାହା ତାହା ନୁହେଁ । ଭିଟାମିନ ପୂର୍ଣ୍ଣ ନାଲି ମୋଟା ଚୂଡ଼ଉଳର ଭାତ ଚଇତି ମୁଗର ଡାଲମା, ଗଛ ତୋଳା ସଜ ସୂର୍ଯ୍ୟମୁଖୀ ଲଙ୍କାମରିଚ । ଖଟା ଚାହିଁଲେ

ଆମ୍ବୁଲ ଫଡ଼ା ଯୋଗାଇ ଦିଆଯିବ । ସର୍ବୋପରି ଯିବା ଆସିବା ଖର୍ଚ୍ଚବାଦ୍ ମଜୁରି ରୋକ୍‌ଠୋକ୍ ପାଞ୍ଚଟଙ୍କା । ଆଗେ ଅବଶ୍ୟ ବକ୍ତୃତା ମଜୁରି ଦିନକୁ ଚାଳିଶି ପଚିଶ ଟଙ୍କା ଥିଲା । ବେଳେ ବେଳେ ଶହେ ଦୁଇଶହକୁ ଉଠି-ଯାଇଥିଲା । କି ଦୁର୍ଯୋଗ ! ଏଇ ରତନା ଭଳିଆ ବିକଳିଆ ବକ୍ତୁଆମାନଙ୍କ ଯୋଗୁଁ ଦର ଖସି ଖସି ପାଞ୍ଚଟଙ୍କାରେ ପହଞ୍ଚିଲାଣି । ଅଲକ୍ଷଣା ରତନାର ତେବେ ବି ହମ ହମ ଯାଇନି । ଆହୁରି କମେଇବାକୁ ବି ତାର ଇଚ୍ଛା । ଯାହାହେଉ ସନିଆ ଏଥର ମଜୁରିରେ ରାଜି ହୋଇ ଯାଇଥିଲା । କଥା ଥିଲା ପରଦିନ ସକାଳୁ କାରପଟ୍‌ଦାରଗଣ ତାକୁ ସାଙ୍ଗରେ ଧରି ଯାଇଥାନ୍ତେ । ରାତି ତିନିଟାରୁ ବିଚରା ସନିଆ ଉଠି, ବାହାର କାମ ସାରି ବାସନା ସାବୁନରେ ମାଜିମୁଜି ଗାଧୋଇ, ଭୁରୁଭୁରୁ ବାସନା ତେଲ ଟିକିଏ ମୁଣ୍ଡରେ ମାରି, ଆଗରୁ ଇସ୍ତ୍ରି ହୋଇ ରହିଥିବା ଲୁଗା ଓ କାମିଜରେ ଶୋଭନା ଅତରରୁ ଟିକିଏ ଟିକିଏ ମାରିଦେଇ ପୁରା ପ୍ରସ୍ତୁତ ହୋଇ ବସି ରହିଥିଲା । ନିର୍ଦ୍ଧାରିତ ସମୟ ସକାଳ ଛଅଟା ଗଲା । ସନିଆ ଭାବିଲା ଏଥିରେ ବ୍ୟସ୍ତ ହେବାର କାରଣ ନାହିଁ । କାରପଟଦାରମାନେ ଭାରତୀୟ ସମୟାନୁବର୍ତ୍ତିତାର ପରମ ପୂଜକ । ୭ଟା ଗଡ଼ିବାପରେ ସେ ଟିକିଏ ଅସ୍ୱସ୍ତି ବୋଧକଲା । ୮ଟା ପରେ ଛଟପଟ, ୯ଟା ପରେ କ୍ରୋଧ ଏବଂ ଦିନ ୧୨ଟାପରେ ହତାଶ ହୋଇ ବେଶଭୂଷା କାଢ଼ି ଅଲଗୁଣିଆକୁ ଫୋପାଡ଼ି ଦେଲା ଏବଂ କାରପଟଦାର-ମାନଙ୍କ ଜନ୍ମର ବୈଧତା ସମ୍ପର୍କରେ ଗମ୍ଭୀର ଚିନ୍ତା ଆରମ୍ଭ କରିଦେଲା । ଦି' ଚାରିଟା ଦିନ ତାର ଖଟିଖଟିଆ ମିଜାଜରେ କଟିଲା । ତା'ପରେ ସ୍ୱାଭାବିକ ଅବସ୍ଥା ଫେରି ଆସିଲା । ହେଲେ ବେଳେ ବେଳେ ଚୋରା କଣ୍ଟା ଗୋଡ଼କୁ ଧକ ଧକ କଲାପରି ଏଇ କଥାଟା ତା ମନରେ ବେଳେବେଳେ ପଡ଼ିଯାଇ ମନଟାକୁ ବିକଷେଇ ପକାଉ ଥାଏ । କାରପଟ୍‌ଦାରମାନେ ଏମିତି କାହିଁକି ତାକୁ ହଲାପଟାକଲେ ତାର କାରଣ ବୁଝିବାକୁ ସନେଇଟାର ମନ ଭାରି ଗୋଳେଇ ପୋଳେଇ ହେଲା । ବୁଝିବୁଝି ଏଥିରେ ଅସଲ ମଞ୍ଜିଟା ହେଉଛି ରତନା । ସକାଳ ପାହିଲେ ସନେଇ ଯାଇଥାନ୍ତା ବକ୍ତୃତା ଦେବାକୁ । ଦେଖିଲା ବେଳକୁ ସେ ଗଲା ଗାଧୋଇ, ତା ଥାନ ମାଡ଼ି ବସିଲା ଆଉ ଜଣେ, ସେ ଜଣଙ୍କ ପୁଣି ଆଉ କେହି ନୁହେଁ—ରତନା !

—ଅ.ହୁର ଖୋଳତାଡ଼ କରିବାରେ ଜଣାଗଲା ଯେ ଏଇ ମଜୁଡ଼ା ରଚନା, କାରପଟ୍ ଦାରମାନଙ୍କର ସନ୍ଦଆ ପାଖକୁ ଯିବାର ସୁରାକ୍ କପରି ପାଇଯାଇ ସେମାନଙ୍କର ଫେରନ୍ତା ବାଟକୁ ଚାକି ରହିଥିଲା । ଦେଖାହେଲା ମାତ୍ରେ ସେମାନଙ୍କୁ ନିଜ ବସାକୁ ଡକାଇ ନେଇ, ଯାଦେଡ଼ ସାହେବ ଜଣେ ଆଦିବାସୀକୁ ଧର୍ମୋପଦେଶ ଦେଲା ପରି ବୁଝେଇ ଲଗିଲା—"କହୋ ତୁମେ କରୁଛ କଅଣ ? ଭଣ୍ଡାର ପୋଖରୀ ଯୁବକ ସଂଘ ଜଣ୍ଠୁ ଗୋଟାଏ ମାମୁଲି ଅନୁଷ୍ଠାନ ନୁହେଁ ଯେ ସେଠି ଯିଏ ନାହିଁ ସିଏ ଯାଇ ବକ୍ତୃତା ଦେଇପାରିବ । ଆରେ କାହାକୁ ତୁମେ ଡାକୁଛ ? ସେଇଟାକୁ ବକ୍ତୃତା ଦେଇ ଆସେନା ? ସେଇଟା ବକ୍ତୃତା ଦେଲେ ଶ୍ରୋତାମାନେ ପରା ନାକରେ ଲୁଗା ଦେଇ ହସନ୍ତି—"

ଏତିକବେଳେ ଜଣେ କହି ପକାଇଲା—"ତେବେତ ବଢ଼ିଆ ହୋଇଛୁ । ଆମର ତ ସେମିତିଆ ହସେଇବା ଲୋକ ଦରକାର ଥିଲା । ଆମ ସେଠିକା ଲୋକେ ଯାତ୍ରାପାର୍ଟିରେ ଦୁଆଲୀକୁ ବେଶି ପସନ୍ଦ କରନ୍ତି । ଆମର ସେଠି ପାଠୁଆ ପର୍ଫେସରିଆ (ପ୍ରଫେସରିଆ) କଥା କେହି ଶୁଣିବାକୁ ଭଲ ପାଆନ୍ତି ନାହିଁ । ଯାହା ହେଉ ଭଲ ଲୋକଟିଏ ପାଇଗଲୁ ।"

ରତନା, ଗୁଳଟା ବାଏଁ ବାଏଁ ଉଡ଼ିଯିବାର ଦେଖି ହତଭମ୍ବ ହୋଇପଡ଼ିଲା । ପୁଣି ଶକ୍ତି ସଞ୍ଚୟ କରି ଆରମ୍ଭ କଲା "ଆରେ ନାହିଁ ହୋ ଲୋକେ ତା କଥାକୁ ଭଲ ପାଇ ହସନ୍ତି ନାହିଁ, ତାର ଭୁଲ ଭଡ଼କ ପାଗଲାଙ୍କ ପରି ବକ୍ତୃତା ଦେଉଥିବା ଦେଖି ଉପହାସ କରି ହସନ୍ତି । ହଇହେ ତୁମେ ମୁଠା ମୁଠା ଏତେଗୁଡ଼ାଏ ଟଙ୍କା ଖର୍ଚ୍ଚ କରି ଗୋଟାଏ ଫାଲ୍ତୁ ଲୋକ ମୁହଁରୁ ଆବୁରି ଜାବୁରି କଥାଗୁଡ଼ାଏ ଶୁଣିବ । କୋଉ ଠୋ ଠୋ କରି କହିପାରିବ ଭଲା ! ପଦୁଟିଏ କହିଲେ ଦିପଦ 'ଉଁ ଉଁ' ହେବ । ତୁଚ୍ଛାଟାରେ କାହିଁକି ଟଙ୍କାଗୁଡାକ ପାଣିରେ ପକାଇବ ।"

ଜଣେ କହିଲା—"ଅଜ୍ଞା ବହୁ ପାକଳା ଯାକଳ କରିବା ପରେ ତାଙ୍କୁ ପାଞ୍ଚ ଟଙ୍କାରେ ରାଜି କରାଇଛୁ । କେହି ତିରିଶିରୁ କମି ନ ଥିଲେ । ସେବ ସେଇଆ ଧରିଥିଲେ, ବହୁ କଷ୍ଟରେ ତାଙ୍କୁ ମଙ୍ଗେଇଛୁ । ଏଇକ୍ଷଣି

ଆମେ କାହାକୁ ପାଇବୁନ । ଯାହା କହିବାର କହିବେ ପଛକେ । ଆଜକାଲି କିଏ କେଉଁଠି ବକ୍ତୃତାର ମାନେ ବୁଝୁଛି ! ତାଙ୍କୁ ନ ନେଇ ଆଉ ଗତି ନାହିଁ ।"

ରତନା କାଠପାଣି ଲଗେଇଲା—"ଦେଖ ଭଣ୍ଡାରି ପୋଖରୀ ପ୍ରତି ମୋର ବିଶେଷ ଶ୍ରଦ୍ଧା ଅଛି । ମୁଁ ଜାଣୁ ଜାଣୁ ତୁମମାନଙ୍କୁ ହାସ୍ୟାସ୍ପଦ ହେବାକୁ ଦେବି ନାହିଁ । ତୁମମାନଙ୍କର ଇଜ୍ଜତ ମହତ ବଞ୍ଚେଇବାକୁ ମୁଁ ନିଜେ ଯିବି । କେବଳ ଭଣ୍ଡାରିପୋଖରୀର ଇଜ୍ଜତ ରଖିବାକୁ ସେହିଦିନ କଲିକତା ପ୍ରେସିଡ଼େନ୍‌ସି କଲେଜରେ ମୋର ବକ୍ତୃତା ଦେବାର ଥିଲା, ତାକୁ ନା କରିଦେବି । ଭଣ୍ଡାରି ପୋଖରୀର ମାନସମ୍ମାନ ପାଇଁ ସେ ଟଙ୍କାକୁ ଥୁ କରିଦେଉଛି ।"

ଏତିକି କହିବା ସଙ୍ଗେ ସଙ୍ଗେ ରତନା ଥୁ କରି ଲେଣ୍ଡାଏ ଛେପ ତଳକୁ ଛାଡ଼ିଦେଲା । କାରପର୍‌ଦାରମାନେ ପରସ୍ପରର ମୁହଁ ଚାହାଁଚୁହିଁ ହେଲେ । ଖୋଦା ଯେତେବେଳେ ଦିଅନ୍ତି ସେତେବେଳେ ବଡ଼ ରୋହି ମାଛ ଏମିତି ଘୁଏଁ ଘୁଏଁ ଆସି ଖାଲେଇ ଭିତରେ ପଶିଯାଏ । ଅନନ୍ତୁତ ଅଉଲ୍ ନମ୍ବର ବକୁଆଟାଏ ଆମକୁ ମିଳିଯାଉଛି । ସେଥିରେ ପୁଣି ମଜୁରି ଟଙ୍କାଏ କମ୍ ! କ୍ଷତି କଅଣ ? ସେମାନେ କିଛି ଏଗ୍ରିମେଣ୍ଟ୍ ହାତ କାଟି ଲେଖି ଦେଇନାହାନ୍ତି ଯେ ଆଗ ଜଣକ ତାଙ୍କ ଉପରେ ଘୋଡ଼ା ଚଢ଼ିବ ! କୋଉ ଏବେ ଆଉ ତା ସାଙ୍ଗରେ ଦେଖା ହେବ !

ରତନା ତାହେଲେ ଏମିତି ସନିଆକୁ ଚିତା କାଟିଛି । ଏହା ଶୁଣି ସନିଆର ଯେତେ ଦୁଃଖ ହେଲାନି ତହିଁରୁ ବେଶି ଦୁଃଖ ହେଲା ରତନା ଯାହା ବକ୍ତୃତା ମଜୁରି ୫ଟଙ୍କାରୁ ଚାରିଟଙ୍କାକୁ ଖସାଇ ଦେଲା । ସେଇ ହତ-ଲକ୍ଷ୍ମୀଟା ଯୋଗୁଁ ମଜୁରି ୩୦ରୁ ୫କୁ ଖସିଥିଲା । ଏବେ ସେଇ ବିକଳା ନଅଙ୍କିଆ ଯୋଗୁଁ ଫେରେ ପାଞ୍ଚଟଙ୍କାରୁ ଚାରିଟଙ୍କାକୁ ଖସିଲା । ନାଃ ଏ ଛତରଖିଆକୁ କସ୍ କଦରରେ ପାନେ ନ ଦେଲେ ଆଉ ନିସ୍ତାର ନାହିଁ । ଆଉ କେତେଦିନ ଗଲେ ସବନାଶିଆଟା ନିଜ ଅଣ୍ଟାରୁ ଟଙ୍କା ଦେଇ ବକ୍ତୃତା ଦେବାକୁ ଯିବ । ବକ୍ତୃତା ବେଉସା ଆଉକୁ ଶେଷ ପାଇଲା

ଜାଣ । ବକ୍ତୃତା ବେପାରୀମାନେ ରତନାକୁ ପାନେ ଦେବାକୁ ଘମାଘୋଟ ମନ୍ତ୍ରଣା ଚଳେଇଲେ । ସେମାନଙ୍କୁ ଗୋଟାଏ ବାଟ ବି ସିଧାସଳଖ ଦିଶିଗଲା ।

× × ×

ଭୋର ଭୋରଟାରେ ରତନା ନିଦରେ ସ୍ୱପ୍ନ ଦେଖୁଥାଏ ସେ ଜାତିସଂଘର ସାଧାରଣ ଅଧିବେଶନରେ ବକ୍ତୃତା ଦେଉଛି । ତାଳି ଉପରେ ତାଳି ପଡ଼ି ଘର କମ୍ପେଇ ଦେଉଛି । ସଭାରେ ହଠାତ୍ ଗୋଟାଏ କଳକଳା ରଡ଼ି ଉଠିଲା । ତା ନିଦ ଭାଙ୍ଗିଗଲା । ଦେଖିଲା ବେଳକୁ ଯୋଡ଼ାଏ ଭୂଆ ତାରି ଉପରେ କାମୁଡ଼ା କାମୁଡ଼ି, ରାମ୍ପୁଡ଼ା ରାମ୍ପୁଡ଼ି ଲଗେଇଛନ୍ତି । ଅତର୍କିରେ ଉଠି ପଡ଼ି ସେ ଭୂଆ ଦୁହିଁଙ୍କୁ ପେଲିଦେଇ ଖଡ଼କା ମୂଠାରେ ପାହାରେ ଲେଖାଏଁ ଦେଲା । ଭୂଆ ଦି'ଟା ଗୁଡ଼ ପକେଇଲେ । ରତନା ନିଜର ରୁଗୁ ରୁଗୁ ହେଉଥିବା ପେଟକୁ ଚାହିଁ ଦେଖିଲା ଭୂଆ ନଖରେ ତାହା ଲହୁଲୁହାଣ ହୋଇଯାଇଛି । ପ୍ରାଥମିକ ଚକିତା ପରେ ସେ ଭୂଆ ଦୁଇଟାଙ୍କ ଗୋଡ଼ ଭାଙ୍ଗି ଦେବାକୁ ପ୍ରତିଜ୍ଞା କଲା । ସକାଳଟାରୁ ଏପରି ଅନିଷ୍ଟ ଦେଖା ଦେଲାଣି, ଆଉ କଅଣ ଦୁର୍ଯୋଗ ପଡ଼ିବ, ତାହା କିଏ କହିବ । ଏହିପରି ଭାବି ଭାବି ସେ ବଡ଼ ଶଙ୍କିତ ହୋଇ ପଡ଼ୁଥିଲା । ଦିନ ଏଗାରଟା ବେଳକୁ ଗୋଟାଏ ଚିଠି ପାଇଲା । ଚିଠିଟା ନିଶ୍ଚୟ ଗୋଟିଏ ଅପସ୍ମର ହୋଇଥିବ । ସକାଳୁ ଖରାପ ଶକୁନଟାଏ ଦେଖିଛି । ତେଣୁ ସଶଙ୍କ ଭାବେ ପଢ଼ିବାକୁ ଲାଗିଲା । କ୍ରମେ ତା ମୁହଁ ଆନନ୍ଦରେ ଉତ୍ଫୁଲ୍ଲ ହୋଇ ଉଠିଲା । ଚିଠିଟାକୁ ଡାହାଣାଙ୍କ ପରି ଦୁଇ ଚାରିଥର ପଢ଼ି ପକେଇଲା । ଆନନ୍ଦରେ ବିଳବିଳେଇ ଉଠିଲା—"ଆଃ କି ସୌଭାଗ୍ୟ ! ସକାଳୁ କାହା ମୁହଁ ଚାହିଁଥିଲିରେ !" ତାର ମନେ ପଡ଼ିଗଲା ଭୂଆ ଦୁଇଟାଙ୍କ କଥା । ମନଟାରେ ଅବଶୋଷ ଆସିଗଲା । କଅଣ କରିବାକୁ ସେ ଯାଉ ନ ଥିଲା ! ଯେଉଁ ଭୂଆ ଦିହ ରାମ୍ପୁଡ଼ି ସୌଭାଗ୍ୟ ଦିହରେ ଭର୍ତ୍ତିକରି ଦେଇଗଲେ, ତାରି ଗୋଡ଼କୁ ଭଙ୍ଗାଟା କରିବାକୁ ଯାଉଥିଲା ! ଛି, ଛି ! ତାକୁ ଧିକ୍ ! ଗୋଟାଏ ଗିନାରେ

ଦୁଧ ଘିଅ ଗୋଳେଇ, 'ର୍ ରୁ' କରି ଭୁଆ ବ'ଟାଙ୍କୁ ଡାକେଇ ଅତି ଆଦରରେ ସେତକ ଖୁଆଇଲା । ଆଉଁସି ଦେଲା ।

ଗାଧୁଆ ପାଧୁଆ ସାରି ପୁଣି ଥରେ ଚିଠିଟି ପଢ଼ିଲା । ମଝିରେ ମାତ୍ର ଦୁଇଦିନ ବାକି । ଯେକୌଣସି ପ୍ରକାରରେ ନିଜକୁ ସମ୍ପୂର୍ଣ୍ଣ ପ୍ରସ୍ତୁତ କରେଇ ନେବାକୁ ହେବ । ମାସର ଶେଷ ସପ୍ତାହ, ମୁନିଟ ସାହାବଙ୍କ ପକେଟ ବି ଖଡ୍‌ଖଡ୍, ରତନା କଥା ପଗ୍ଚରେ କିଏ ? ଗୋଟାଏ ପଟରେ ବସ୍ ଭଡ଼ା ହେଉଛି ଗୁରିଟଙ୍କା ଷାଠିଏ ପଇସା । ସେତକ କୌଣସି ପ୍ରକାରରେ ଯୋଗାଡ଼ କରିନେଲେ କାମ ଫତେ । ତେଣିକି ତ ଟଙ୍କା ତା ମନକୁ ଆସି ପକେଟ ଗରମ କରିଦେବ । ଭାଗ୍ୟ ଯେତେବେଳେ ଭଲ ଥାଏ, ସେତେବେଳେ ବଳଦଟାକୁ ବି ଦୁହିଁ ଦେଲେ କ୍ଷୀର ବାହାରି ପଡ଼େ । ଅଳପ ନେହୁରା ନେହୁରି ଫଳରେ ଜଣଙ୍କଠାରୁ ୫ଟି ଟଙ୍କା ମିଳିଗଲା ।

ବସ୍‌ରେ ଚଢ଼ି ଗଲାବେଳେ ରତନା ଭାବୁଥାଏ—ବସ୍ ରହିବା ଥାନରୁ ୪ ମାଇଲ ବାଟ ଟିକିଏ ହଇରାଣିଆ କଚ୍ଚା ରାସ୍ତା, ଗ୍ଲିକରି ଯିବାକୁ ହୁଏ । ସେଥିରେ ତାର ମୁଣ୍ଡ ଖେଳେଇବାର କିଛି ନାହିଁ । ସବାରି ବନ୍ଦୋବସ୍ତ ହୋଇଛି, ଗୋଡ଼ରେ ଧୂଳି ଟିକିଏ ବି ଲାଗିବ ନାହିଁ । ବସ୍‌ରୁ ଓହ୍ଲାଇବାକୁ ପଡ଼ିବ । ବହୁ ଲୋକ ନମସ୍କାର କରିବେ । ସମସ୍ତଙ୍କୁ ଥର ଥର କରି ନମସ୍କାର ହେଲେ ହାତ ବଥେଇ ଉଠିବ, ତେଣୁ ହସ ହସ ମୁହଁରେ ସେ ହାତ ଯୋଡ଼ି ନମସ୍କାରବର୍ଷା ଶେଷ ହେବାଯାଏ ଠିଆ ହୋଇ ରହିବ । ଫୁଲମାଳ ଦେଲାବେଳେ ମୁଣ୍ଡକୁ ଅଳପ ନୁଆଁଇ ଦେବ ଓ ମାଳ ବେକରେ ପଡ଼ିବା ସଙ୍ଗେ ସଙ୍ଗେ ତାକୁ କାଢ଼ି ପକେଇ ହାତରେ ଧରିବ । ତାପରେ ସବୁ ମାଳଗୁଡ଼ିକ ସବାରି କବାଟରେ ଝୁଲେଇ ଦେବ । ମଫସଲ ଅଞ୍ଚଳ—ଟଗର, ଗୋଲାପ ଆଦର ବେଶୀ ପ୍ରଚଳନ ନ ଥିବ । ସେଠି ବଉଳ, ମଲ୍ଲୀ, ଚମ୍ପାର ହାର ବେଶୀ ଗ୍ଲୁଥିବ । ବଉଳହାର ହୋଇଥିଲେ ସେ ତାକୁ ବେକରୁ କାଢ଼ିବ ନାହିଁ । ତା ହେଲେ ବଉଳ ଫୁଲ ବାସନାଟା ଦିହରେ ଭେଦିଯିବ । ଦୁଇ ଗ୍ରିଦିନଯାଏ ଦେହ

ମହଲକୁ ଥିବ । ପହଞ୍ଚିଗଲା ପରେ ସେମାନେ ନିଶ୍ଚୟ ଗୁହା ଆଗ ଦେବେ । ମଫସଲ ଅଞ୍ଚଳର ଲୋକେ ଆଜକାଲି ସହରଆଙ୍କ ଠାରୁ ବେଶି ଗୁହାଖୋର ହୋଇଗଲେଣି । ନଡ଼ିଆ ଗାଈ ଦୁଧର ଗୁହା ଚମତ୍କାର ଲାଗିବ । ଗୁହା ସାଙ୍ଗକୁ ଜଳଖିଆର ବନ୍ଦୋବସ୍ତ ସେମାନେ ନିଶ୍ଚୟ କରିଥିବେ । ସେମାନେ ତ ଆଉ ଅଶିକ୍ଷିତ ନୁହନ୍ତି । ଜଣେ ଭଦ୍ରଲୋକଙ୍କୁ କିପରି ଚର୍ଚ୍ଚା କରିବାକୁ ହୁଏ ତାହା ବେଶ୍ ଜାଣିଥିବେ । ସିଗାରେଟ ଦେବାକୁ ଯଦି ଭୁଲିଯାଆନ୍ତି, ତେବେ ସେ ପକେଟରେ ହାତମାରି କହିବ ଓଠିବ ଆରେ ଆରେ ସିଗାରେଟ୍ ପ୍ୟାକେଟଟା ସେ ଆଣିବାକୁ ଭୁଲିଗଲା । ଏତିକରେ ସେମାନେ ଯେଉଁଠୁ ହେଲେ ସିଗାରେଟ୍ ଆଣି ଯୋଗାଇ ଦେବେ । ଫଳଉ, ମାଉଁସ ତରକାରିଟାତ ନିଶ୍ଚୟ ହୋଇଥିବ । ଜଳଖିଆ ଅଳପ କରି ସେତିକ ବେଳକୁ ପୁରା ଠୁଙ୍କି ଦେବାକୁ ହେବ ।

ଏହିପରି ଭାବନା ଭିତରେ ଗୁରୁଟଙ୍କା ଷାଠିଏ ପଇସାର ବାଟ ଯେ କେତେବେଳେ ସରିଗଲା ତାହା ରତନାକୁ ଜଣା ନାହିଁ । ଗାଡ଼ି ବନ୍ଦ ହେଲା । ଏଇଠି ଯେ ତାକୁ ଓହ୍ଲାଇବାକୁ ପଡ଼ିବ ସେ କଥା କଣ୍ଡକ୍ଟର ଚେତାଇ ଦେଲା । ରତନା ପୋଷାକ ପରିଚ୍ଛଦକୁ ବାଗେଇ ନେଇ ବସ୍‌ରୁ ଓହ୍ଲାଇଲା । କିନ୍ତୁ ଏ କଅଣ ! ଅଭ୍ୟର୍ଥନାକାରୀଗଣଙ୍କ ଦେଖା ନାହିଁ ! ଥାନାଟା ଏକ ପ୍ରକାର ଅପନ୍ତରା ଓ ଜନଶୂନ୍ୟ କହିଲେ ଚଳେ । ରତନା ହଠାତ୍ ଭୁଷୁଡ଼ି ପଡ଼ିବାର ଲୋକ ନୁହେଁ । ସେ ମନେ ମନେ ସ୍ଥିର କଲା, ମଫସଲ ଲୋକଗୁଡ଼ାକ, ସମୟ ଜ୍ଞାନ ନାହିଁ । କିଛି ସମୟ ପରେ ବୋଧହୁଏ ଆସିବେ । ପ୍ରାୟ ଘଣ୍ଟାଏ ଟଙ୍ଗର ଟଙ୍ଗର ହେବା ପରେ ତା'ର ଧୈର୍ଯ୍ୟଚ୍ୟୁତି ଘଟିଲା । ଆଗରେ ଗୋଟିଏ ମାତ୍ର ଗୁହା ଦୋକାନ । ବସିବାକୁ ଚଉକି ବା ଟୁଲ ନାହିଁ । ମନଟା ଛଟପଟ ହେବାରୁ ଦୋକାନୀ ପାଖକୁ ଯାଇ ପଚାରିଲେ—କଲେଜଟା ସେଠାରୁ କେତେ ଦୂର । କଲେଜ ଲୋକେ ସେଠାକୁ ଆସିଥିଲେ କି ନା ଇତ୍ୟାଦି । ଦୋକାନୀ ସହାନୁଭୂତି ଦେଖାଇ ଯାହା ଯାହା କହିଗଲା ସେଥିରୁ ସେ ସ୍ପଷ୍ଟ ବୁଝିଗଲା ଯେ ଆଉ ଦୁଇ କୋଶ ପରେ ବସ୍‌ରୁ ଓହ୍ଲାଇଥିଲେ ମାତ୍ର ତାକେ ବାଟରେ କଲେଜ ପଡ଼ିଥାନ୍ତା । କେହି ଜଣେ ଭୁଲ ବାଟ ବତାଇ

ଦେଇଛୁ । ସେଠାରୁ କଲେଜ ପ୍ରାୟ ୪ ମାଇଲ ବାଟ, ବାଟଟା ସବୁଦିନେ କାଦୁଅ ପଙ୍କରେ ପୂର୍ଣ୍ଣ । ନିହାତି ଦରକାର ନପଡ଼ିଲେ ସେ ରାସ୍ତାରେ ଶଗଡ଼ ବି ଯାଏ ନାହିଁ । ପାଣ୍ଡବମାନେ ସେ ରାସ୍ତାରେ ଯାଇ ନ ଥିବାରୁ ତାର ଏପରି ଦୁରବସ୍ଥା । ଯଦି କୌଣସି ମନ୍ତ୍ରୀଙ୍କ ଗାଡ଼ି ସେ କାଦୁଅରେ ଗଳି ପଡ଼ନ୍ତା ତେବେ ସେ ରାସ୍ତାର ଅବସ୍ଥା ସୁଧୁରି ଯାଆନ୍ତା । ପାଦ ଛଡ଼ା ସେଠାକୁ ଯିବାକୁ ଅନ୍ୟ ଉପାୟ ନାହିଁ । ଚାଲିଶି ଗ୍ଭଲିଗଲେ ଘଣ୍ଟାଏରୁ କମ୍ ଲାଗିବ । ଆଉ ଡେରି ନକରି ଗ୍ଭଲିଯିବା ଉଚିତ୍ କାରଣ ସନ୍ଧ୍ୟା ହୋଇଗଲେ ଆଉ ସେ ବାଟରେ ଯାଇ ହବନି । ବିଲୁଆ, ଗଧିଆ ଓ ସାପ ମାଲ ମାଲ ହୋଇ ବାଟରେ ବୁଲିବେ ।

ସାପ ନାଁ । ଶୁଣି ରତ୍ନା ଚମକି ପଡ଼ିଲା । ରାସ୍ତାର ନକ୍ସାଟା ତାଠାରୁ ଶୁଣି ନେଇ ଯାତ୍ରା ଆରମ୍ଭ କରିଦେଲା । ସେଇଠାରୁ ଯାହାବା ସାଗରେ ଫେରି ଆସି ଥାଆନ୍ତା, ଫେରନ୍ତା ବସ୍ ଭଡ଼ା ପାଇଁ ପକେଟରେ ପଇସା ନ ଥିଲା । କଲେଜ ନ ଯାଇ ଉପାୟ ନାହିଁ । ଆଉ ଡେରି କଲେ —ସାପ !

କିଛି ବାଟ ଯିବା ପରେ ରତ୍ନା ଦେଖିଲା, ଚପଲ ଦୁଇଟାକୁ ହାତରେ ନ ଧରିଲେ ଆଉ ରକ୍ଷା ନାହିଁ । ଚପଲ ଛିଟିକା କାଦୁଅ ଧୋତି ଓ କାମିଜର ପଛପଟକୁ ଏକ ପ୍ରକାର ଚିତ୍ରିତ କରି ଦେଲାଣି କହିଲେ ଚଳେ । ବେଗର ଚପଲରେ କାଦୁଆ ବାଟରେ ଯିବାର ବିଚକ୍ଷଣ ଶୈଳୀ ତାକୁ ମାଲୁମ ନ ଥିଲା । ପାଦ ଚିପି ଚିପି, ଘାଟି ଜାଗାମାନଙ୍କୁ ଅତି ସତର୍କତାର ସହିତ ଆଡ଼େଇ ସେ ଆଗଉଥାଏ । ବିପଦ ସବୁବେଳେ ସାଙ୍ଗସାଥି ନେଇଆସେ । ରତ୍ନା ଦେଖିଲା ଆଗରେ ଗୋଟାଏ ବଡ଼ କାଦୁଅପୂର୍ଣ୍ଣ ଖମା । ଖମାଟା ରାସ୍ତାର ଏ ପାଖରୁ ସେ ପାଖ ବ୍ୟାପିଛି । ଗାଉଁଲିଲୋକଙ୍କ ପରି ଲୁଗା ଟେକିଟେକି, କାଦୁଅ ଭିତରେ ପଶି ପାରି ହୋଇଥିଲେ ଭଲ ହୋଇଥାନ୍ତା । ଆଉ ପାଖକୁ ଯାଇ କୌଣସି ଏକ ଥାନରେ ଗୋଡ଼ଟା ଧୋଇ ଦେଇଥିଲେ କାମ ସରିଥାନ୍ତା, କିନ୍ତୁ ରତ୍ନା ଏପରି ଲୁଗା ଟେକି ଗ୍ଭଲିବାର ଅସଭ୍ୟତାକୁ ପସନ୍ଦ କରୁନଥିଲା । ସେ

ଦେଖିଲା ରାସ୍ତାର କଡ଼ରେ ଖମାର ଫାନ୍ଦପର ୩ଇଞ୍ଚ ଖଣ୍ଡେ ଶୁଖିଲା ବାଟ ଅଛି । ଅତି ସାବଧାନତାର ସହ ଚାଲିଗଲେ ସନ୍ତୁଳତା ବଜାଏ ସାଙ୍ଗେ ସାଙ୍ଗେ ଖମାଟା ଅତିକ୍ରମ କରିହେବ । ଅତି ସାବଧାନତାର ସହିତ ସେ ସେହି ବାଟରେ ଧୀରେ ଧୀରେ ଆଗେଇଲା । ଅତି ଶବ୍ଦଟା ସବୁବେଳେ ଖରାପ । ଏହିପାଇଁ ତା ନାଁରେ କେତେ ଶ୍ଳୋକ ବି ଲେଖାହୋଇ ସାରିଛି । ରତ୍ନା ଠିକ୍ ମଝିରେ ପହଞ୍ଚିଛି କି ନା ଏହି 'ଅତି' ଟି ତାର ଭାରସାମ୍ୟରେ ବିଶୃଙ୍ଖଳା ସୃଷ୍ଟି କରିଦେଲା । କମ୍ପିତ ପାଦଟି ଖସଡ଼ା ବାଟରୁ ପିଚ୍‌କରି ଖସିଯିବା ଫଳରେ ସମସ୍ତ ଶରୀରଟି ଖମାର ମଧ୍ୟ ସ୍ଥଳରେ କଟାଗଛ ପରି ଭୁସ୍‌କରି ଲୋଟିପଡ଼ିଲା । କାମିଜ୍, ଧୋତି, ଚାଦର ଓ ଦେହକୁ କାଦୁଅ-ମିଶା ପାଣି ଏକାକାର କରି ଦେଲା । ସେତେବେଳେ ରତ୍ନାର ମାନସିକ ଅବସ୍ଥା ଅବର୍ଣ୍ଣନୀୟ । ସେତେବେଳେ ସେ କଲେଜ ଲୋକଙ୍କ ଭିତରୁ କାହାକୁ ଯଦି ଆଗରେ ପାଇଥାଆନ୍ତା, ତେବେ ତା ଉପରକୁ କୁଦିପଡ଼ି ଦାନ୍ତରେ ତା ଚୋଟି କଣା କରି ଦେଇଥାନ୍ତା । ରାଗରେ ଠକମକ ହୋଇ ସେ ଫୁଟୁଥାଏ । ହାୟ ହାୟ ! ଚପଲ ହଳଟା ଯେ ସେଇ କାଦୁଅ ପାଣି ଭିତରେ ହାତରୁ ଖସି କେଉଁଆଡ଼େ ଲୀନ ହୋଇଯାଇଛି । ତାର ପୁନରୁଦ୍ଧାର ପାଇଁ ପଙ୍କ ଚପୁ ଚପୁ ଗୋଟାଏ କୋଇଲିଖିଆ ଆତ୍ମଗୋପନ-କାରୀ କଣ୍ଟା ଆଙ୍ଗୁଠିରେ ଗଳିଗଲା । କ୍ରୋଧ ବେଦନାରେ ଅଥୟ ହୋଇ ସେ ଚପଲ ଦୁଇଟାର ଆଶା ଛାଡ଼ିଦେଲା ଓ କଲେଜ କର୍ତ୍ତୃପକ୍ଷଙ୍କ ଠାରୁ ଉଚିତ୍ ପ୍ରତିଶୋଧ ନେବାକୁ ଉନ୍ମତ୍ତ ପ୍ରାୟ ହୋଇ ପ୍ରଚଣ୍ଡ ବେଗରେ ଧାଇଁଲା । ଇଚ୍ଛା ହେଉଥିଲା ବାଟରେ କେଉଁଠି ଧୋଇଧାଇ ହୋଇ ପଡ଼ିବ, କିନ୍ତୁ କର୍ତ୍ତୃପକ୍ଷଙ୍କ ଯୋଗୁଁ ସେ କିପରି ଦୁର୍ଦ୍ଦଶାଗ୍ରସ୍ତ ହୋଇଛି ତାହା ସେମାନଙ୍କ ଆଖିରେ ମାଡ଼ ଦେଖାଇ ଦେବାକୁ ଚାହା କଲାନାହିଁ । ବାଟରେ ଦୁଇ-ଚାରିଜଣ ବିସ୍ମିତ ପଥିକଙ୍କୁ ଭେଟିଥିଲେ ସୁଦ୍ଧା କଲେଜ ବିଷୟରେ ସେମାନଙ୍କଠାରୁ ବିଶେଷ କିଛି ତଥ୍ୟ ପାଇଲାନାହିଁ ।

କଲେଜ ଫାଟକ ପାଖରେ ପହଞ୍ଚି ଦେଖିଲା ସଜା ସଜ ତ ଦୂରର କଥା, କୁଡ଼ିଆଟାଏ ବି ଦେଖାନାହିଁ । ତେବେ କୌଣସି କାରଣରୁ କର୍ତ୍ତୃପକ୍ଷ ଉତ୍ସବକୁ କଲେଜ ହତାରେ ନକରାଇ ଅନ୍ୟ କେଉଁଠାରେ

କରୁଛନ୍ତି । ରବିବାର ହୋଇଥିଲେ ବି ବାକିଆ କାମ ସାରିବା ପାଇଁ ମୁଖ୍ୟ କିରାନି ବିଚରା କାମରେ ଲାଗିଥିଲେ । ରଚନା ସେଠି ପହଞ୍ଚି ଯାଇ ଚିଲେଇ ଉଠିଲା—"ପ୍ରିନ୍‌ସପାଲ୍‌ କାହାନ୍ତି "?

ମଇଁଷିପରି କାଦୁଅରେ ଲଟପଟ ହୋଇଥିବା ଗୋଟେ ଢ ଗୋଡ଼ିଆ ଜୀବର ଏତାଦୃଶ ପ୍ରଶ୍ନରେ ମୁଖ୍ୟ କିରାନି ଅବାକ୍ ହୋଇଗଲେ । ତାଙ୍କୁ ନିରୁତ୍ତର ଦେଖି ରଚନା ଗର୍ଜି ଉଠିଲା, "କଅଣ ବାଲୁବାଲୁ କରି ଚାହିଁଛ ହୋ ! ମୁଁ ପଚାରି ପଚାରୁଛି ଏ ପ୍ରିନ୍‌ସପାଲ୍‌ କାହାନ୍ତି ।"

"କାହିଁକି, କଅଣ ଦରକାର୍ ?"

"ତମର ସେ ସବୁ ବୁଝିବା ଦରକାର ନାହିଁ ।"

"ଭଲକଥା ଯାଉନ ପ୍ରିନ୍‌ସପାଲଙ୍କ ପାଖକୁ, ଏଠି ଚାଲିଉଛ କାହିଁକି ?"

"ଚାଲିଉଛି । ମାରନା କେମିତି କୁହ, ଅଭଦ୍ର କେଉଁଠିକାର । ବତାବେ ପ୍ରିନ୍‌ସପାଲ୍‌ କେଉଁଠି ଅଛନ୍ତି ।"

"ଏଁ ! ବେ, ବା ଆରମ୍ଭ କଲିଣି । ମୁଣ୍ଡ ତୋର ଖରାପ ହୋଇଛି କିରେ ?"

"କଅଣ କହିଲୁ ବେ' ମୋ ମୁଣ୍ଡ ଖରାପ ? ଦେଖିବୁ ?"

"ହାଁ ହାଁ ସେଇ ପଦାରେ ଠିଆହୋଇ କଥାବାର୍ତ୍ତା କର । ଅଫିସ ଭିତରେ ପଶନା । କାଗଜ ପତ୍ର କାଦୁଅ ହୋଇଯିବ ।"

"ତେବେ ବାହାରିଆ ପଦାକୁ । ମୋତେ ଏପରି କରୁଛୁ କିଏ ତାକୁ ଦେଖିବ । ଭଲ ଦଶା ଅଛି ତ ବତା ପ୍ରିନ୍‌ସପାଲ୍‌ କାହାଁନ୍ତି ।"

କିରାନି ବିଚରା ଦବିଗଲା । ସେ ମନେ ମନେ ଭାବିଲା ବୋଧହୁଏ ଉତ୍ପାତିଆ କଲେଜ ଟୋକାଏ ଭଦ୍ରଲୋକଙ୍କୁ କାଦୁଅ ପାଣିରେ ଗଡ଼େଇ

ଦେଇଛନ୍ତି । ତେଣୁ ସେ ତାଙ୍କ ସଙ୍ଗରେ ଆଉ ନବର୍ତ୍ତି ପ୍ରିନ୍‌ସପାଲ୍‌ଙ୍କ ଘର ବଟେଇ ଦେଲା । ରତନା କ୍ରୋଧରେ ଜଳି ଜଳି ସେଇଆଡ଼େ ଅରଣା ମଇଁଷି ପରି ପଳାସିଲା । କାଳେ କଅଣ ଗଣ୍ଡଗୋଳ ହେବ ସେଇ ଆଶଙ୍କାରେ କର୍ଣ୍ଣନଟି ଚଟାପଟ୍ ଗୃହ ପକାଇ ରତନା ପଛେ ପଛେ ଧାଇଁଲା ଓ ବାଟରୁ ଜଗୁଆଳକୁ ମଧ୍ୟ ସାଙ୍ଗରେ ନେଇଗଲା ।

ପ୍ରିନସ୍‌ପାଲ୍ ଏପରି ଏକ ବଚନ ଜୀବକୁ ଘରେ ପଶିବାର ସୁଯୋଗ ନ ଦେଇ ପଦାକୁ ବାହାରି ଆସିଲେ । ରତନା କର୍ଦ୍ଦମାକ୍ତ ନିମନ୍ତ୍ରଣ ପତ୍ରଟି ତାଙ୍କ ହାତକୁ ବଢ଼ାଇ ଦେଇ ଗର୍ଜି ଉଠିଲା —"ଆପଣ ଏହି ନିମନ୍ତ୍ରଣ ପତ୍ରଟି ଦେଇଥିଲେ ନା ? କାହିଁ ଆପଣଙ୍କର ସାଂସ୍କୃତିକ ସଭା ? କୋଉଠିକି ଆପଣ ସବାରି ପଠାଇଥିଲେ ? ମୁଁ ଆପଣଙ୍କର ଶଳା ନା ଭେଣେଇ ? ମୋର ଏ ଅବସ୍ଥା ପାଇଁ ଦାୟୀ କିଏ ? ଏହାର ପୂରା ବଦଳା ନ ନେଇ ମୁଁ ଏଠୁଁ ଫେରିବ ନାହିଁ ।"

ପତ୍ରଟି ପଢ଼ିସାରି ପ୍ରିନସ୍‌ପାଲ ମୁରୁକିହସା ଦେଲେ ଓ ସ୍ଥିର ଭାବରେ କହିଲେ—"ଦେଖନ୍ତୁ ଆପଣଙ୍କର ସାଙ୍ଗମାନଙ୍କ ଭିତରୁ କେହି ପ୍ରହସନ କରିବା ଲାଗି ଏପରି ଜାଲପତ୍ର ଦେଇଛନ୍ତି । ଆମ କଲେଜର ସାଂସ୍କୃତିକ ଉତ୍ସବ ଗଲା ଚଉଦିନ ହେଲା ସରିଛି । ଆଉ ଥରେ ହେବାର ପ୍ରଶ୍ନ ଉଠୁନି । ଏ ତ ମୋର ଦସ୍ତଖତ ନୁହେଁ । ଆପଣଙ୍କୁ ହଇରାଣ କରିବା ପାଇଁ କେହି ଏପରି ଷଡ଼ଯନ୍ତ୍ର କରିଛି । ଆସିବା ଆଗରୁ ଆପଣ ଚିଠିଟିଏ ପକାଇ ଦେଇଥିଲେ ଏ ଦୁର୍ଦ୍ଦଶା ଭୋଗି ନ ଥାନ୍ତେ ।"

ଦଶଟା ହାଇଡ୍ରୋଜେନ୍ ବମ୍ ଯେପରି ତା'ର ଉପରେ ଅଜାଡ଼ି ହୋଇପଡ଼ିଲା । ଅସହାୟ ଭାବରେ ଲାଥୁକରି ସେ ତଳଟାରେ ବସି ପଡ଼ିଲା । ତା ପାଟିରୁ ବାହାରି ପଡ଼ିଲା—'ହେ ଭଗବାନ୍ !'

କର୍ଣ୍ଣନଟି ପାଟିକରି ଉଠିଲା—"ସମୟ ହୋଇଗଲାଣି ଶୀଘ୍ର ଯାଆନ୍ତୁ ବାହାରି, ବସ୍ ହରେଇଲେ ଆହୁରି ବେଶି ହଲାପଟା ହେବେ ।"

ରତନା ଖଟେଇ ଖଟେଇ କହିଲା "ଫେରନ୍ତା ବସ୍ ଭଡ଼ା ମୋ ପାଖରେ ନାହିଁ କି ଖାଇବାକୁ ପଇସାଟିଏ ବି ନାହିଁ । ବସ୍‌ଭଡ଼ା, ବକ୍ତୃତା ପାରିଶ୍ରମିକ ସ୍ୱରୂପ ଶହେ ଟଙ୍କା ଦିଆଯିବ ବୋଲି ଚିଠିରେ ଲେଖାଥିଲ, ମୁଁ କଅଣ କରିବି—ହେ ଭଗବାନ !"

ପ୍ରିନସ୍‌ପାଲ୍‌ଙ୍କ ମନରେ ଦୟା ହେଲା । ଫଳରେ ରତନା ସେଠି ଲୁଗାପଟା ଧୋଇ, ଖାଇପିଇ ତାହାଁ ଆଉଦିନ ପାଞ୍ଚଟି ଟଙ୍କା ଦାନ ଗ୍ରହଣ କରି, ଘରକୁ ଫେରିଲା । ଘରପାଖରେ ସନିଆ ତାକୁ ଦେଖିବା ମାତ୍ରେ ପଚାରିଲା—"କିରେ ଲୁଗାପଟା ଏତେ ମଇଳା କିପରି ହେଲା ? ରତନା ବିରକ୍ତ ହୋଇ କହିଲା—'ଜାଣିନି' ? ସନିଆ ମୁହଁଟାକୁ ବୁଲେଇ ନେଇ ଛୁଙ୍କିବାର ବାହାନା କଲା ।

ସେହି ଦିନଠାରୁ ରତନାକୁ ବକ୍ତୃତା ଦେବାପାଇଁ ଯିବାର କେହି କେବେ ଦେଖିନି ।



# ପତରପାଣି ଫସରଫାଣ୍

ମଧୁଆ ଭୋଇ ଘରୁ ହଠାତ୍ କଳକଳଆ ରଡ଼ ଛୁଟି ପଡ଼ିଲା । ଘାଣ୍ଟ ତରକାରିରେ ପ୍ରତ୍ୟେକ ପରିବା ଯେପରି ନିଜ ନିଜ ସ୍ୱାଦୁର ବିଶେଷତ୍ୱ ହରାଇ ଏକ ପ୍ରକାର ନୂତନ ସ୍ୱାଦୁ ସୃଷ୍ଟି କରନ୍ତି, ମଧୁଆ ଭୋଇ ଘରୁ ଉଠୁଥିବା ବିଭିନ୍ନ ଧ୍ୱନିସବୁ ଗୋଳେଇ ହୋଇ ଯାଇ ଏକ ଅଦ୍ଭୁତ ଓ ଅବୋଧ ନୂତନ ଧ୍ୱନି ସୃଷ୍ଟି କରୁ ଥାଆନ୍ତି । ସେହି ଧ୍ୱନି ଭିତରୁ ଅଂଶ-ଧ୍ୱନିଗୁଡ଼ିକର ଅଲଗା ଅଲଗା ସତ୍ତା ଅନୁଭବ କରିବା ଅସମ୍ଭବ ଥିଲା । ବାଉରି ସାହିର ସମସ୍ତେ ସିଆଡ଼େ କାନ ଡେରିଲେ । ମଧୁଆ ସାନଭାଇ ସାଧୁଆ ପଦାକୁ ବୋଧହୁଏ କୁଆଡ଼େ ଯାଇଥିଲା । ସେ ତରବର ହୋଇ ଘରକୁ ପଶିଗଲାପରେ ସବୁ ଧ୍ୱନିକୁ ବୁଡ଼େଇ ଦେଇ ଏକ ଏବଂ ଭୟଙ୍କର ସିଂହରଡ଼ ଶୁଭିଲା—"ମୋ ବୁଆଲୋ ମୋତେ ଛାଡ଼ିଦେଇ କୁଆଡ଼େ ଗଲୁ ଲୋ, ମୁ କଅଣ କରିବି ଲୋ ।"

ସାଧୁଆର ସିଂହରଡ଼ ସହିତ ସମସ୍ତେ ପରିଚିତ । ପାଏ ବାଟରେ ଥିବା ପଧାନ ଘର ବିଲରେ ସେ ହଳ ପକାଉ ପକାଉ ଯେତେବେଳେ ହାଙ୍କିଦିଏ "ହ ହ-ହ- ଡ଼ ଡ଼ ଡ଼-ହ' ଗୋସେଇଁଖିଆ ମାଣ୍ଡଉଛୁ" ସେତେବେଳେ ସେ ରଡ଼ ବାଉରିସାହିର ଆବାଳ-ବୃଦ୍ଧ-ବନିତା ସମସ୍ତେ ପରିଷ୍କାର ଶୁଣି ପାରନ୍ତି । ଆଜିର ରଡ ଶୁଣି ସମସ୍ତେ ଜାଣିଗଲେ ଯେ ମଧୁଆ-ସାଧୁଆର ୧୨୫ ବର୍ଷର ବୁଢ଼ାବାପ ଚାଲିଗଲା ।

ରଡ଼ ଆଡ଼କୁ ମନ ଟାଣି ଆଣି ସମସ୍ତେ କଳ୍ପନା ଜଳ୍ପନାରେ ଲାଗିଗଲେ । କିଏ କହିଲା "ଆରେ ବୁଢ଼ାଟାକୁ କାଲି କୋଦାଳରେ ଶାଗ ପଟାଳିଟା ହାଣୁଥିବାର ଦେଖିଛୁ, ଆଜି ଦେଖିଲ ବେଳକୁ ଠୋ !" କିଏ

କହିଲା—"ଆହେ ଶହେ ପନ୍ଦର ବର୍ଷରେ ସେ ନଡ଼ିଆ ରହିଥିଲା ହେ ! ବୁଢ଼ାକୁ କଅଣ ଭୋକ ଶୋଷ ସମୁଝି ଥିଲକ !" କିଏ କହିଲା "ସେଇଟାକୁ ବୁଢ଼ା କିଏ କହିବ ମ, ମଧୁଆ ସାଧୁଆଙ୍କ ମୁଣ୍ଡ ଖୋଷ୍ଟ କେବେଠୁଁ ହେଲାଣି, ହେଲେ ତା ମୁଣ୍ଡରେ ଏବେ ବି ଦପଣ କଳାବାଳ ଦିଶୁଥିଲା ।" ଆଉ ଜଣେ କହିଲା "ବୁଢ଼ାଟା ଖୁସିରେ ଚାଲିଗଲା । ଝାଡ଼ା ନାହିଁ, ବାଧିକ ନାହିଁ, ଠୋ ! ପୁଣ୍ୟବନ୍ତଟାଏ ଏକା !"

ଏମିତି ଚର୍ଚ୍ଚା ଚାଲିଥିବାବେଳେ ବେହେରା ( ଜାତିର ମୁଖ୍ୟ ) ସେଠିଠାରେ ଆସି ପହଞ୍ଚିଲା । ଉପସ୍ଥିତ ବାଉରୀମାନେ ଏକାବେଳକେ କହି ଉଠିଲେ "ବେହେରାଏ ମଧୁଆ ବୋପା ଚାଲିଗଲା ।" ବେହେରା ଟିକିଏ ଗୁମ୍ ଖାଇ ପଚାରିଲା "କେମିତି ଗଲା ?"

ଜଣେ ଖୁବ୍ ଭାବଚକ୍ଷୁ, କୁନ୍ଥି କୁନ୍ଥି ହୋଇ କହିଲା—"ରୋଗ ନାହିଁ, ବଇରାଗ ନାହିଁ ସଜ ମଣିଷଟା, ଦେଖିଲାବେଳକୁ ଠୋ । ଜନ୍ତୁ ଦଂଶିବା ଛଡ଼ା ଇଏ ଆଉ କିଛି ନୁହେଁ ।" ବେହେରା କଥାଟାକୁ ଓଜନ କରୁଥିବା-ବେଳେ, ସମସ୍ତେ ଦେଖିଲେ ଥାନ ( ସହକାରୀ ବେହେରା ) ମଧୁଆ ଘରେ ଘରଆଡ଼ୁ ଧପାଇଛି । ସମସ୍ତଙ୍କ ପ୍ରଶ୍ନବାଚୀ ମୁଖ ତାର ଆଡ଼କୁ ହୋଇଗଲା । ଥାନ ପାଖରେ ଆସି ପହଞ୍ଚିବା ମାତ୍ରେ କାହାର ପ୍ରଶ୍ନକୁ ଅପେକ୍ଷା ନ କରି ଅନର୍ଗଳ କହି ଚାଲିଗଲା—"ହଜାରେ ଯିଏ ଯାହା କହୁ ମୁଁ କହୁଛି ଏଇଟା ହାର୍ଟ୍‌ଫେଲ୍ (ହାର୍ଟଫେଲ୍) । ବୁଢ଼ାଟା କାଲି ଶାଗପଟାଳି କୋଦାଳରେ ହାଣିଛି । ଆଜି ସକାଳଠାରୁ ଝାଡ଼ା ଝପଟ ଯାଇ, ଗାଧେଇ ପାଧେଇ ଆସି ବସିଛି । ବୋହୂଟା ପଖାଳ କଂସା ଆଣି ଦେଖେ ତ ବୁଢ଼ା ଗୁମ୍ । ଜନ୍ତୁ ଦଂଶିଥିଲେ ବୁଢ଼ା ଅବଶ୍ୟ ଜାଣି ପାରିଥାନ୍ତା, ଜନ୍ତୁ ଦଂଶିଲା ବୋଲି କହିଥାଆନ୍ତା । କିଛି କୁଆଡ଼ୁ ନାହିଁ, ଦେଖିଲା ବେଳକୁ ଗୁମ୍ । ଠିକ୍ ଏମିତି ଗଡେଇ ମହାକୁଡ଼ ଯାଇଥିଲା । ଡାକ୍ତର ଆସି ନାଡ଼ି ଚିପା ଚିପି କରି କହିଲା—ହାର୍ଡ୍‌ଫେଲ୍ ମୁଁ ନିଜେ ଶୁଣିଛି । ଯିଏ ଯାହା କହୁ ମୁଁ ଶୁଣି ଯିବିନି । ଇଏବି ହାର୍ଡ୍‌ଫେଲ୍ ଛଡ଼ା ଆଉ କିଛି ନୁହେଁ ।"

ଥାନର ଅକାଟ୍ୟ ଯୁକ୍ତି ପାଖରେ ସମସ୍ତେ ମୁଣ୍ଡ ନୁଆଁଇଲେ । କିଏ ନୁଆଁଇ ଥାନ୍ତା କି ନାହିଁ, ବେହେରା ଯେତେବେଳେ 'ହଁ' ଭରିଦେଲା ସେତେବେଳେ ଆଉ 'ନା' କରିବ କିଏ ! ମଧୂଆ ଭୋଇର ୧୧୫ ବର୍ଷ ବୟସ୍କ ବୁଢ଼ାବାପା ହାଡ଼୍ ଫେଲ୍‌ରେ ଗ୍ରିଲ ଯାଇଥିବା କଥା ସର୍ବସମ୍ମତିକ୍ରମେ ସ୍ଥିର ହୋଇଗଲା ।

ସାହିର ସବୁ ନେଣ୍ଡରା ବେହେରା ମୁଣ୍ଡରେ । ଇଚ୍ଛା ନ ଥିଲେ ବି କର୍ତ୍ତବ୍ୟ ତାଡ଼ନାରେ ବେହେରା, ଥାନ ଆଉ ଆଖ ପାଖିଆ କେତେଜଣଙ୍କୁ ନେଇ ମଧୂଆ ଭୋଇ ଘରକୁ ଗଲା । ଘର ଭିତରକୁ ପଶିଯାଇ ସମସ୍ତେ ଦେଖିଲେ ବୁଢ଼ା ଶୋଇଯାଇଛି । ପାଟିଟା ମେଲା ହୋଇଯାଇଛି । ଧଳା ଧଳା ଝାଣୁଆ ଦାନ୍ତଗୁଡ଼ାକ ପଦାକୁ ନେସେଡ଼ି ହୋଇଯାଇଛି, ଗୋଟାଏ ହେଲେବି ପଡ଼ିନି । ଆଖିଦୁଇଟା ବୁଜି ହୋଇଯାଇଛି । ମୁହଁଟା କେମିତିଆ ଗୋଟାଏ ଅବାଗିଆ ହୋଇ ଦେଖାଯାଉଛି । ମଧୂଆ ଭୁନି ହୋଇ ବୋପା ମୁଣ୍ଡ ପାଖରେ ବସିଛି । ମୁହଁ ଶୁଖିଲା, ହେଲେ ଆଖିରେ ଲୁହ ନାହିଁ । କିନ୍ତୁ ଏକା ସାଧୂଆ ବାଇଣିପଲ । ଏମାନଙ୍କୁ ଦେଖି ତା ରଡ଼ିର ପ୍ରଖରତା ଏକାବେଳକେ ଦୁଇଗୁଣ ବଢ଼ିଗଲା । "ଇଲୋ ମୋ ବୁଆଲୋ" ବୋଲି ଯେତେବେଳେ ସେ କୁହାଟି ଦେଉଥାଏ, ସେତେବେଳେ ସମସ୍ତଙ୍କ କାନ ଝାଇଁ ଝାଇଁ ହୋଇଯାଉଥାଏ । କାନ ଗିଲ ଏକାବେଳକେ ଫାଟେ କି ନ ଫାଟେ । ଗୋଟାଏ ଗୋଟାଏ ଝଲକା ତୋଫାନ ଯେପରି ଆଗରେ ଥିବା କାଠି କୁଟା, କାଗଜ, କନା ସବୁକିଛି ଉଡ଼େଇ ନେଇ ନିଶ୍ଚିହ୍ନ କରିଦିଏ, ବେହେରା, ଥାନ ଆଉ ଅନ୍ୟାନ୍ୟମାନଙ୍କର ଆଶ୍ୱାସନା ସବୁ ସାଧୂଆର ଗୋଟିଏ ଗୋଟିଏ 'ଇଲୋ ମୋ ବୁଆ କୁଆଡ଼େ ଗଲୁଲୋ' ରଡ଼ିରେ ନିଶ୍ଚିହ୍ନ ହୋଇ ଯାଉଥାଏ । ସାଧୂଆ ଟିକିଏ ଥକି ଯିବାରୁ ଦୁଇ ରଡ଼ି ମଝିରେ ବେହେରା ବରକାଟିଆ ରଡ଼ିକରି କହିଲା—"ହଇରେ ମାଇଚିଆ ! ବୋପାତ ୧୧୫ ବର୍ଷ ବଞ୍ଚିଲା, ଆଉ କେତେଦିନ ବଞ୍ଚି-ଥାଆନ୍ତା ? ସେ କଅଣ ଅମର ଲଡ଼ୁ ଖାଇଥିଲା ଯେ ଯୁଗ ଯୁଗକୁ ବଞ୍ଚିରହିଥାଆନ୍ତା । ତମେ ଦୁହେଁ ତ ଅଶୀ-ନବେ ଛୁଇଁଲ, ଆଉ ୧୧୫ ବର୍ଷର ବୁଢ଼ାକୁ ଝୁରି ହେଉଛ କାହିଁକି ?" ଥାନ ବି ତା ସାଙ୍ଗରେ ଯୋଖିଦେଲା

"ଆରେ ମନ୍ତ୍ରମନ୍ତ୍ରଲେ ଦେହ ବନ୍ଧ, ଦେବତା ହୋଇଲେ ମରଇ । ଏଥିକୁ ଏତେ ଦୁର୍ନୟ କାନ୍ଦଣା କାହିଁକି ? ତଳ ବରଡ଼ା ଖସିଗଲା । ଆଉକୁ ଆମେ ଉପର ବରଡ଼ା ସବୁ ଗୋଟିଏ ଗୋଟିଏ ଖସିବା । ସବୁକଥା ଜାଣିଶୁଣି ଏପରି କାନ୍ଦୁଛ କଅଁ ? ଆରେ ଇଏ କାନ୍ଦିଲା ସମିଆ ନୁହେଁ । ଏବେ ଉଠେଇବା ଯୋଗାଡ଼ରେ ଲାଗିଯା ।"

ଥାପୁଡ଼େଇଲେ କାନ୍ଦ ବଢ଼େ, ଛୁଗୁଲେଇଲେ କମେ । ବେହେରା ଓ ଥାନର କଡ଼ାକଡ଼ କଥାଶୁଣି ସାଧୁଆ ଚଟାପଟ୍ ତୁନ ପଡ଼ିଗଲା । ଆଖି ହ'ଟା ପୋଛୁବା ସଙ୍ଗେ ସଙ୍ଗେ ଲୁହଧାର ଶୁଖିଗଲା । ମଧୁଆ ଆଡ଼କୁ ଚାହିଁବା ମାତ୍ରେ ସେ ଉଠିପଡ଼ି କହିଲା—"ଆଉ ଡେରିକରି ଲାଭ ନାହିଁ, ଏଥର ଯା ଜାତଭାଇଙ୍କି ଡାକଆଣି କାମ ବଢ଼େଇଦେବା ।"

ସାଧୁଆ ଝାଡ଼ଝୁଡ଼ି ହୋଇ ମଡ଼ାଉଠା ଓ ଶବ ସତ୍କାର କାମଟା ସହଳ ସହଳ କେମିତି ହୋଇଯିବ ସେଇ ବ୍ୟବସ୍ଥାରେ ଲାଗିପଡ଼ିଲା । ବେହେରାଠାରୁ ଛୁଗୁଲା ପଦ ଶୁଣିଲାବେଳଠୁଁ ତାର ଆଉ ତିଳେହେଲେ ଦୁଃଖ ମନରେ ନ ଥିଲା । ଭାରି ଫୁର୍ତ୍ତି, ଭାରି ମନଫୁଲିଣି ଓ ଆଗ୍ରହରେ ତାକୁ ଏ ପାଖ ସେ ପାଖ ହେଉଥିବାର ଦେଖି କେତେ ଜଣ ଫୁସୁ ଫୁସୁ ହୋଇ ଥଟ୍ଟାକଲେ—"ଆରେ ସାଧୁଆଟା ପୁଅ ବାହାଘରରେ ଲାଗିପଡ଼ିଛି ନା କଅଣ !" ହେଲେ କୁଆଡ଼କୁ ନଜର ବା କାନ ନ ଦେଇ ସାଧୁଆ ନିଜ କାମରେ ଲାଗିଥାଏ । ମଧୁଆ ପୋତା ଘଡ଼ିରୁ ଯେଉଁ ଦଶଟଙ୍କା କାଢ଼ି ତା ହାତରେ ଦେଇଥିଲା ତାକୁଇ ବାଞ୍ଛାସାହୁ ଦୋକାନରେ ପକାଇ ଦେଇ କହିଲା—"ସାହୁଏ ! ମଡ଼ାଉଠା ସଉଦା ଦିଅ ।" ବାଞ୍ଛା ସାହୁ ପୁଅ ବିଚରା ସାଧୁଆକୁ ଟିକିଏ ସହାନୁଭୂତି ଦେଖାଇ-ବାକୁ ଯାଇ କି ଘରି ପଦ ଦୁଃଖ ସୁଖ ହୋଇଛି କି ନା ବାଞ୍ଛା ସାହୁର ଖିଙ୍କାର ଶୁଣିଲା—"ଆବେ ଗପସପ ହେଉଛୁ କଅଣ ଜଲଦି ସଉଦା ଦେ । ତେଣେ ମଡ଼ା ଉଠେଇବା ଡେରି ହୋଇଯିବ । କଅଣ ଖେଳଘର କଥା ହୋଇଛି କି ? ଦେ ଦେ ସଉଦା କାଢ଼ ମୁଁ ବତଉଛି । ହୁଁ—ଦେ ଯୋଡ଼ାଏ ତେଲଙ୍ଗି, ଗୋଟାଏ ପଚୁଡ଼ି ମସିଣା, ଗୋଟାଏ ମାଠିଆ, ମଡ଼ା

ପିନ୍ଧା ଧୋତି ଓ କରଆରୁ ଗୋଟାଏ ଲେଖାଏଁ, ହାଣ୍ଡି ଗୋଟାଏ, କାଠବଢ଼ାଏ, ଖଇ ଶହେ, କଉଡ଼ି ଦୁଇଶହ, ଅରୁଆଚାଉଳ ଦୁଇଶହ, ସାରୁ କଦଳୀ ଗୋଟାଏ ଲେଖାଏଁ, ଏକ ନୂଆ ପଇସା ଶହେଟା, ଘିଅ, ଚନ୍ଦନକାଠ, ହଁଆସିଲ······"

ପୁରୋହିତପର ବାଞ୍ଛା ସାହୁ ସିନା ମୁଖସ୍ଥ ତାଲିକାଟା ଗାଇଗଲା, ହେଲେ ପୁଅର ଏତେ କରାମତି କାହିଁ ! ଅଠରଥର ପଚାରି ଗୋଟି ଗୋଟି କରି କାଢ଼ିବାରେ ଡେରିହେଲା । ସାଧୁଆ ସଉଦା ମିଳିବାରେ ଡେରି ହେବ ଜାଣି ପାଖରେ ଥିବା ଗୋଟାଏ ଗଛ ଛାଇରେ ବସି ଟିକିଏ ଅଣ୍ଟା ସଳଖେଇଲା ।

ଠିକ୍ ଏତିକିବେଳେ ସାହିରେ ଏକଘରିକିଆ ହୋଇ ରହିଥିବା ମକରା ଭୋଇ ଅଗ୍ନିକୁଆଡ଼ୁ ଆସି ତାରି ପାଖରେ ବସିଲା । ସାହିରେ ତାକୁ ନିଆଁ ପାଣି ବାସନ୍ଦ ଓ ପତରପାଣି ମନା ଥିଲେ ସୁଦ୍ଧା କଥାବାର୍ତ୍ତା ବନ୍ଦହୋଇ ନ ଥିଲା । ଏତକ କରାଇବାକୁ ବେହେରାର ସାହସ ହୋଇ ନ ଥିଲା । କାରଣ ଏ କଟକଣାକୁ କେହି ମାନି ନ ଥାନ୍ତେ । ଗଣ୍ଡଗୋଳ ଘଟି ସାହିଟା ହଫାଙ୍କିଆ ହୋଇ ଯାଇଥାଆନ୍ତା । ସାଧୁଆ ପାଖକୁ ଟିକିଏ ଘୁଞ୍ଚିଯାଇ ମକରା ଚୁପୁ ଚୁପୁ କରି କହିଲା···"ଜାଣିଲୁ ସାଧୁଆ ଭାଇ ! ଏ ଶଶୁର ପୁଅ ବେହେରା, ଥାନି, ସଇତା, ଗୋବରା, ପାଣୁଆ ହେରିକା ଠାକୁରଘର ପିଣ୍ଡାରେ ମସୁଧା ଚଳେଇଛନ୍ତି ଯେ ଏଇଥର ତମ ଦୁହିଁଙ୍କୁ ଆଣ୍ଠେଇ ଦେବେ । ଫି କାମରେ ତମେ ହବେଁତ ଠାକୁର ଘରକୁ କୋଡ଼ିଏ ଟଙ୍କା ଲେଖାଏଁ ଦେଇ ପତରପାଣି ପକେଇଲ ନାହିଁ । ଶଶୁରପୁଏ ପାଟି ସୁଆଦ କରି ନ ପାରି ରନ୍ଥାଳ ମନ୍ଥାଳ ହେଉଥିଲେ । ଏବେ ଠିକ୍ କରିଛନ୍ତି ଯେକୌଣସି ମତେ ତମ ଦୁହିଁଙ୍କୁ ପତରପାଣି ପକେଇବା ପାଇଁ ବାଧ୍ୟ କରିବେ । ଠାକୁର ଘରକୁ କୋଡ଼ିଏ ଟଙ୍କା ଦେଲେ ନେବେନାହିଁ । ବେଶି ଅଡ଼ି ବସିଲେ ଏକଘରିକିଆ କରିଦେବେ । ଏଗୁଡ଼ାକ ଏତେ ଉତ୍ପାତିଆ ହେଲେଣି ଯେ କହିଲେ ନ ସରେ । ବସିଛନ୍ତି ଦୁନିଆଁଟାଯାକ ଖାଲି ଖାଇଯିବେ । ଖାଇବେ ତ ଖାଇବେ ପୁଣି ଖାଇବା ଜନିଷରେ ଟିକିଏ

ଓଲମ ବଲମ ହେଲେ ତଣ୍ଡି ବସିବେ । କହ୍ନୁ ସାଧୁଆ ଭାଇ ମୋର ବା କ ଦୋଷ ଥିଲା ? ମା ଶୁଧି ଘରକୁ ଡାଲପାଇଁ ପଇସା ଅଣ୍ଟିଲା ନାହିଁ, ଯେତିକ ଯୋଗାଡ଼ କରିପାରିଲ ତାକୁ ସମସ୍ତଙ୍କୁ ଭେଟାଇବାପାଇଁ ଟିକିଏ ପାଣିଆ କରିଦେଲ । ଏଇଟା ହେଲା ମୋର ବଡ଼ ଦୋଷ । ଶଶୁର ପୁଅଙ୍କ ତାଉ ଦେଖ ! କାହିଁକ ଡାଲ ପାଣିଆ କଲୁ, ଆଉଥରେ ପତରପାଣି ପକା, ନାହିଁ ତ ଏକ ଘରକିଆ ହୋଇ ରହ । ଯେତେ କାକୁତି ମିନତି ହେଲ କିଛି ଶୁଣିଗଲେ ନାହିଁ । ସେଇ ଏକା ଜିଗର । ଶେଷକୁ ଆଡ଼େଇ ହୋଇ ରହିଲ । ମୋର ଆଜିଯାଏ କିଅଣଟା ଅଣେଇ ପକେଇଲେଣି ! ଏବେ ତମ ଦୁହିଁଙ୍କୁ ଦଣ୍ଡେଇବାକୁ ବସିଛନ୍ତି । ଦେଖ ହୁସିଆର ଥିବ ।

ମକରଠୁଁ ଏ ମହାଭାରତ ଶୁଣି ସାଧୁଆ ଟିକିଏ ଶଙ୍କିଗଲା । ବଡ଼ଭାଇ ମଧୁଆ ଯୁଆଡ଼ି କିଛି ଗୋଟାଏ କାଟପାଣି କରିପାରିବ ବୋଲି ତାର ଦୃଢ଼ ଧାରଣା ହେବାରୁ ସେ ହାଉଳି ଖାଇଲା ନାହିଁ । ଟୋକେଇରେ ସଜାଡ଼ ଦେବା ବାଞ୍ଛା ସାଦ୍ଧ—ସଉଦାତକ ଓ ତେଲଙ୍କି ଷ'ଟା ଧରି ସେ ଘରମୁହାଁ ହେଲା ।

ମଡ଼ା ଉଠିବାଠୁଁ ଆରମ୍ଭକରି ପୋଡ଼ାହେବା ଓ ଗାଧୁଆ ପାଧୁଆ ସାରି ଘରକୁ ଫେରିବା ଯାଏ ବାଟଯାକ ବେହେରା ଆଉ ଥାନ ମଧୁଆକୁ ବୁଝେଇ ଲଗି ଥାଆନ୍ତି—"ଦେଖ ମଧୁଆ ! ତୋ ବୁଆ ଥିଲା ଆମ ଜାତିରେ ସବୁଠୁଁ ବଡ଼ ବୁଢ଼ା ଆମ ଜାତିର ଗୋସେଇଁ ବାପ ପରି । ତା କାମବେଳେ ହାତ ଚିପିଲେ ଚଳିବ ନାହିଁ ! ଜାତିକି ନିନ୍ଦା ହେବ । ଜାତିର ଗୋସ ବାପ ! କିଛି କମ କଥା ନୁହେଁ । ଏଠି ଠାକୁର ଘରକୁ କୋଡ଼ିଏ ଟଙ୍କା ଦେଇ ବସିଗଲେ ଚଳିବ ନାହିଁ । ଏଠି ଯେକୌଣସିମତେ ପତରପାଣି ପକେଇବାକୁ ହେବ । ବୁଢ଼ାର ଆତ୍ମା ସନ୍ତୋଷ ହବ । ଜାତିକୁ, ତମ ଦୁହିଁଙ୍କୁ କଲ୍ୟାଣ କରିବ । ବୁଢ଼ା ପିଣ୍ଡୁ ତେମେ ତ କିଛି ଖର୍ଚ୍ଚ କରିନ । ବୁଢ଼ା ତ ହନେହେଲେ ବାଧିକ ପଡ଼ ନ ଥିଲା । ତମ ଦୁହିଁଙ୍କୁ ଜିଅନ୍ତାରେ କିଛି ହେଲେ ହରକତ କରିନ । ମଲାରେ ବି କରିନ । ତା ପାଇଁ ନ-ଛ ନୁହେଁ ଏଇ ଥରଟା ଯାହା କରିବ । ଟିକିଏ ହେଲେ କୁଛୁ କୁଛୁ

ନ ହୋଇ ଘଡ଼ ଝାଡ଼ଦେ । ପତରପାଣି ଭଲକରି ପକା । ବୁଢ଼ାର କଇଲଣରୁ ଘଡ଼ା ଫେର୍ ପୂରିଯିବ । ଏଣୁ ତମେ ଦୁହେଁ ବୁଢ଼ାଲାଗି ଠିକ୍ ଠିକ୍ ପତରପାଣିର ବ୍ୟବସ୍ଥା କର । ମନରେ ଗୁଁ-ପୁଁ କିଛି ରଖନା ।"

ସାଧୂଆଟା ମଝିରେ ମଝିରେ ହୋଇ ହୋଇ ମାରି ଦେଉଥାଏ । ବେହେରା ଓ ଥାନ କିଛି ନାକରା କଥା କହୁ ନ ଥାନ୍ତି, ଆଉ ତାଙ୍କ କଥା ଏଡ଼ ଦେବାର କଥା ନୁହେଁ ବୋଲି ଶୁଣେଇ ଦେଉଥାଏ । ମଧୂଆ କିନ୍ତୁ ସାତତାଳ ପାଣିରେ ଗୋଡାମାରି ରହିଯିବା ଲୋକ, ତାଠୁଁ କଥା ଆଦାୟ କରିବ କିଏ ? ଦୁଇଟା ଯାକ କାନ ମେଲି କରିଦେଇ ମୁହଁକୁ ତଳକୁ ପୋତି ଦେଇଥାଏ । ବେହେରା ଓ ଥାନର କଥାଗୁଡ଼ାକ ତାର ଏ କାନରେ ପଶି ସେ କାନବାଟେ ବାହାରି ଯାଉଥାଏ, ମୁଣ୍ଡ ଭିତରେ ରହିଲେ ସିନା କିଛି ପ୍ରତିକ୍ରିୟା ଦେଖାନ୍ତା ।

ଶୁଦ୍ଧିକ୍ରିୟାର ୧୧ ଦିନ ଯେତିକ ପାଖେଇ ଆସୁଥାଏ ଜାତିଭାଇଙ୍କ ଆଣ୍ଠ ସେତିକ ବଢ଼ୁଥାଏ । ଘରେ ମଧୂଆ-ସାଧୂଆଙ୍କ ମନ୍ତ୍ରଣା ବସିଲା । ସାଧୂଆ କହିଲା, "ଭାଇ ! ଏଥରକ ଆଉ ପୂର୍ବକଥା ଚଳିବ ନାହିଁ ଦେଖୁଛି । ଜାତିଭାଇ ତ ଏକାବେଳେକେ ଅଙ୍କଡ଼େଇ ବସିଛନ୍ତି । ତୋ କଥାରେ ଠାକୁର ଗୁନ୍ଦା ଦବାକୁ ଗଲି ଯେ ବେହେରା ଯାହା ତାହା ବକି ଦେଇଗଲା । ଧମକେଇଛି ଏଥର ପତରପାଣି ନ ପକେଇଲେ ଜାତିରେ ଅଟକ କରିଦେବ । ମକରା ମୋ କାନେ କାନେ କହି ଲାଗିଛି ବିଲ୍କୁଲ୍ ପତର ପାଣି ନ ପକେଇବାକୁ । ବେହେରା ଅଟକ କରିବ ତ କରୁ । ତା'ର ଆଜପାଏ ଅଣେଇ ପାରିନ, ଆଉ ଆମକୁ ଅଟକ କଲେ ଆମର କଅଣ ଭସିଯିବ ? କଥାଟା ଖାଣ୍ଟି କଥା କହୁଛି ହେଲେ ଓଧ ସଙ୍ଗେ ବଣଭୁଆ ବାଇ ହେଲାପରି ତା ସଙ୍ଗେ ବାଇ ହେବାକୁ ଭାରି ଡର ଲାଗୁଛି । ପୋତା ଘଡ଼ ଦେଖ ଯଦି କାମଟା ଉଠିଯାଏ ତେବେ କୋଟି ଗୁଣେ ଭଲ । ଏତେ ନେଣ୍ଟରାକୁ ପଶେ କିଏ !"

ବହୁତ ଭାବଚିନ୍ତି ମଧୂଆ ଶେଷରେ କହିଲା—"ଆରେ ସବୁ ଆଡ଼କୁ ମୁଁ ମୁଣ୍ଡ ଖେଳାଇ ଦେଇଛି । ପତର ପାଣି ନାଁ ଧରିଲେ ଭିକଣ

ଟଙ୍କାରୁ ତେଣିକ । ପଇସାଟିଏ ବି ଊଣା ହେବନି । ସବୁଆଡ଼ୁ ବୁଣ୍ଡେଇ ପୁଣ୍ଡେଇ ଦେଖିଲଣି ପରୁଶ ଟପୁନି । ପଡ଼ରେ ପାଣି ପକେଇବା ତ, ତିନିଶହି ଟଙ୍କା ଘର ବାଡ଼ ବନ୍ଧାଦେଇ ଆଣିବାକୁ ହେବ । ଦେଖିବା ନିହାତି ଯଦି ନ ହୁଏ, ବ'ଜଣ ଯାକ ଟିପଦେଇ ବାଞ୍ଛା ସାହୁଠୁଁ ସଉଦା ନେଇ ଆସିବା । ପରେ ପଛେ ଲଗିପଡ଼ି ଦୁହେଁ ସୁଝିବା ଆଉ କରିବା କଅଣ ?"

ନଅଦିନ ଗାନ୍ଧୂଣିଆର ତାଲିକା ମୁତାବକ ସଉଦା ଆଣିବାକୁ ଦୁହେଁ ବାଞ୍ଛା ସାହୁ ପାଖରେ ପହଞ୍ଚିଲେ । ହେଲେ ଟିପ ରଖି ସଉଦା ଦେବାକୁ ବାଞ୍ଛା ସାହୁ ଠୋପଟାସ୍ ନାସ୍ତି ବାଣୀ ଶୁଣାଇ ଦେଲା । ଦୁହେଁ ନିରାଶହୋଇ ଫେରିଲେ । ସାଧୂଆ ହାଉଳି ଖାଇଗଲା । ମଧୂଆ କିନ୍ତୁ ଦବିଗଲା ନାହିଁ, ଆହୁରି ଟାଣ ହୋଇ ଉଠିଲା । ମନକଥା ମନରେ ରଖି ସାଧୂଆକୁ, ରାତି ନଅଟାରେ ମକରାକୁ ଅତି ଗୁପ୍ତରେ ତାଙ୍କ ଘରକୁ ଡାକି ଆଣିବାକୁ କହିଲା । ଡାକରା ଶୁଣିବା ମାତ୍ରେ ମକରା ଧଡ଼ପଡ଼ ହୋଇ ଉଠି ଆସିଲା । ସାଧୂଆକୁ ଦୁଆର ଜଗେଇ ମଧୂଆ ଓ ମକରା ଦୁହେଁ ଖୁବ୍ ବେଳ ଯାଏ କଅଣ ଗୋଟାଏ ଗୁପ୍ତ ମନ୍ତ୍ରଣା କଲେ । ତା'ପରେ ମକରା ଚାଲିଗଲା ।

ଦଶଦିନ ମଧୂଆ ସାଧୂଆକୁ କହିଲା "ଯା ଜାତିଭାଇଙ୍କୁ, ବେହେରା ଓ ଥାନିକୁ ଦଣ୍ଡବତ ସେବାକରି ନମିତା କରି ଆସିବୁ । ସନ୍ଧ୍ୟା ଛଅଟାକୁ ବେଳ ଦବୁ ।" ସାଧୂଆ ବୋକାଙ୍କ ଭଳି ତା ମୁହଁକୁ ଚାହିଁବାରୁ ସେ ଅଭୟ ଦେଇ ପୁଣି କହିଲା "ତୁ ଏଥିରୁ କିଛି ବୁଝି ପାରିବୁ ନାହିଁ, ଯା ମୁଁ ଯାହା କହୁଛି କରିଯା । ପରେ ସବୁକଥା ବୁଝିବୁ ।"

ଆଜ୍ଞାଧୀନ ଭୃତ୍ୟଟି ପରି ସାଧୂଆ ସବୁକାମ କରିଗଲା । ବେହେରା, ଥାନି ଓ ଜାତିଭାଇ ସମସ୍ତେ ମନେ ମନେ ଖୁବ୍ ଖୁସି ହୋଇଗଲେ । ବେହେରା ଓ ଥାନିକୁ ଅନେକ ପ୍ରଶଂସା କରି କହିଲେ—"ଯାହା କୁହ ତମ ଦୁହିଁଙ୍କ ଟାଣପଣ ଯୋଗୁଁ ଏତିକ ହୋଇପାରିଲା ।" ଅନେକ ବି ମଧୂଆ-ସାଧୂଆଙ୍କ ବୁଦ୍ଧିକୁ ତାରିଫ୍ କରି କହିଲେ "ସେ ଦୁହେଁ କାହା ପୁଅ ସେଇଟା ମନରେ ହେଜିବା ଦରକାର । ବେହେରା କଥାକୁ ଏଡ଼ାଇବେନା !"

ଏଗାର ଦିନ ବଡ଼ସକାଳୁ ମଧୁଆ ଘର ଆଗର ରାସ୍ତା କଡ଼ରେ ପ୍ରାୟ ଦୁଇ ବେଡ଼ା ମାଛକାତି, ପୁଟି, ପରିବା ଗୋପା ଦେଖି ସମସ୍ତେ ଭାରି ଖୁସି ହୋଇଗଲେ । ମଧୁଆ ଯେ ମାଛ ତରକାରିରେ ସମସ୍ତଙ୍କୁ ଭଡ଼େଇ ଦେବ ସେ ବିଷୟରେ ଆଉ କାହାର ସନ୍ଦେହ ରହିଲା ନାହିଁ । ଗୁହାଆଡ଼ ଚର୍ଚ୍ଚା ଗଲା—ବୁଢ଼ାପାଇଁ ମଧୁଆ ଏକାବେଳେକେ ଖୋଲାହାତ ହୋଇଯାଇଛି । କାହିଁକି ବା ନ ହେବ । ବୁଢ଼ାତ ପୋତିଦେଇ ଯାଇଥିଲା । ତାର ଧନ ତାରପାଇଁ ଖର୍ଚ୍ଚ ହେଉଛି । ଯାହାହେଉ ମଧୁଆଟା କୁଣ୍ଠିତ ହୋଇନି । ବାପ ନାଁ ରଖିବ ଇତ୍ୟାଦି ଇତ୍ୟାଦି । ସନ୍ଧ୍ୟାବେଳେ ଅଜଗଣ୍ଡ ଠେସି ଦେବାକୁ ଅଧିକାଂଶ ଲୋକ ସକାଳ ଓଳିଟା ମାମୁଲି ଜଳଖିଆରେ କଟାଇ ଦେଲେ । ଭୋକଟା ଯେପରି ଭଲ ଦେଖାଇବ ସେଥିପାଇଁ କେହି କେହି ପାଚକ ପାଣିରୁ ଟିକିଏ ଟିକିଏ ପକେଇ ଦେଲେ ।

ସନ୍ଧ୍ୟା ହେଲା । ଗୁମୁଡ଼ିଆ ତଳେ ବେହେରା, ଥାନ ଓ ଜାତିଭାଇ ସମସ୍ତେ ରୁଣ୍ଡହେଲେ । ସାଧୁଆ ପିଣ୍ଡରେ ପ୍ରାଣ ନ ଥାଏ, ମଧୁଆର ପ୍ରବୋଧରେ କେବଳ ଯନ୍ତ୍ରପରି ଏପାଖ ସେପାଖ ହେଉଥାଏ । ହେଲେ ତା ପାଟିରୁ କଥା ବାହାରୁ ନ ଥାଏ । ମଧୁଆ ବେକରେ ଗାମୁଛା ପକାଇ ବେହେରା, ଜାତିଭାଇ ଓଗେରଙ୍କୁ ଦଣ୍ଡବତ ସେବାକରି ପଙ୍ଗତରେ ବସି ଯିବାକୁ ବିନୟରେ କହିଲା । ଧାଡ଼ିରେ ସମସ୍ତେ ବସିଗଲେ । ସମସ୍ତେ ବସି ଯିବାପରେ ମଧୁଆ ସାଧୁଆକୁ ପତର ଲଗେଇବାକୁ ଡାକଦେଲା । ସାଧୁଆ ଝିଟକା ଥରି ଥରି ପତର ଗୋଟାଏ ଗୋଟାଏ ପକାଉଛି, ହଠାତ୍ ଏହି ସମୟରେ ବେହରା ଓ ଥାନର ଚିତ୍କାର ଶୁଣାଗଲା । ସମସ୍ତେ ଦେଖିଲେ ମକରା କେତେବେଳେ ଆସି ଏକାବେଳେକେ ସମସ୍ତଙ୍କ ମଝିରେ ଚେକା ଆସନ ପକାଇ ବସି ଯାଇଛି । ବେହେରାର ନଜର ତା ଉପରେ ପଡ଼ିଯିବା ମାତ୍ରେ ଗଣ୍ଡଗୋଳ ଆରମ୍ଭ ହୋଇଗଲା । ସେ ତମ୍ପସାପ ପରି ଫଁ ଫଁ ହୋଇ ରଡ଼ି ଛାଡ଼ିଲା—"ହଇରେ ମଧୁଆ ! ତୁ କଅଣ ଜାଣିନୁ ମକରା ଜାତିରେ ଅଟକ ହୋଇଛି । ସେ ଏଠି ବସିଲେ ଆମେ କେହି ବସିବୁନି ।"

କଥା କହୁ କହୁ ବେହେରା ଉଠି ପଡ଼ିଲା । ସଙ୍ଗେ ସଙ୍ଗେ ଇଚ୍ଛା ନ ଥିଲେ ବି ଅନ୍ୟମାନେ ଉଠି ପଡ଼ିଲେ । ମକରା କିନ୍ତୁ ବେଖାତିର ଭାବ

ଦେଖାଇ ସେଇଠି ବସିଥାଏ । ଏଥିରେ ବେହେରା ଆହୁରି ରାଗିଗଲା । ଆଉ ମକରାକୁ ସେଠାରୁ ନିକାଳି ଦେବାକୁ କହିଲା । ଅତି ବିନୀତ ଭାବରେ ହାତଯୋଡ଼ି ମଧୁଆ କହିଲା—"ଆଜ୍ଞା ଆପଣମାନେ ବୁଝିବା ହୁଅନ୍ତୁ । ମୁଁ ପଡ଼ରରୁ କାହାକୁ ଉଠେଇ ପାରିବ ନାହିଁ, ବୁଢ଼ା ବି ତାହାର ଧରମ ମଉସା ଥିଲା । ବୁଢ଼ାର ଆତ୍ମା ଛଟପଟ ହେବ । ମୋତେ ମାଫ୍ କରନ୍ତୁ । ମୁଁ ଏ ଅଧର୍ମ କାମ କରିପାରିବ ନାହିଁ ।"

ବେହେରା ପୁଣି ଗର୍ଜି ଉଠିଲା—"ତାକୁ ନ ଉଠେଇଲେ ଆମେ କେହି ବସିବୁ ନାହିଁ । ଭାବିଚିନ୍ତି କହ, ଶେଷଥର ପାଇଁ ତୋତେ ପଚାରୁଛୁ ।"

ମଧୁଆ ପୂର୍ବପରି ନିଉଚ୍ଛଳ ହୋଇ କହିଲା—"କାହାକୁ ପଡ଼ରରୁ ଉଠେଇବା ମହାପାପ । ଏଡ଼େ ବଡ଼ ପାପ ମୁଁ କେବେହେଲେ କରିପାରିବି ନାହିଁ । ଆପଣମାନେ ମୋତେ ମାଫି ଦିଅନ୍ତୁ ।"

"ବେଶ୍ ସେ ଥାଉ ଆମେ ସମସ୍ତେ ଯାଉଛୁ ।" କହି ବେହେରା ସମସ୍ତଙ୍କୁ ଅଡ଼େଇ ନେଇ ଚାଲିଗଲା । ବାରପଣ ଲୋକେ କିନ୍ତୁ ପେଟ ଭିତରେ ବେହେରାକୁ ଗାଳି ଦେବାରେ ଲାଗିଥାନ୍ତି । କି ଅବାଗିଆ ଲୋକଟାଏ ! ଯାହା ବୁଝିଥିବ ସେଇଆ, ସେ କଡ଼ପଟିଆ ହୋଇ ଖାଇଦେଇ ଯାଇଥିଲେ କି ମୁସ୍କିଲ ହୋଇଯାଇଥାନ୍ତା ! ଅଳପେଇସାଟା ସମସ୍ତଙ୍କୁ ଓପାସ ରଖିଲା ଇତ୍ୟାଦି ଇତ୍ୟାଦି । ବେହେରା, ମେଣ୍ଟା ଅଡ଼େଇ ନେଲାପରି ଜାତିଭାଇ-ମାନଙ୍କୁ ଅଡ଼େଇ ନେଇ ଚାଲି ଯାଉଥିଲାବେଳେ ପଛରୁ ମଧୁଆ ଡକା ପକାଉଥାଏ—"ଭାଇମାନଙ୍କର କଅଣ ଏଇଆ ବିଚାର ହେଲା ? ମୋର ଶହ ଶହ ଟଙ୍କାର ଖାଇବା ଜିନିଷ ଖତ ଗଦାକୁ ଫୋପାଡ଼ି କି ଲାଭ ପାଇବ ଭାଇମାନେ । ମୁଁ ତ ଠାକୁର ଘରର ଚୁହା ଦେଇ ଦେଉଥିଲି ମତେ ମିଛରେ କାହିଁକି ଏଥିରେ ଭର୍ତ୍ତିକଲ । କାହିଁକି ମୋତେ ଏ ଲୋକସାନରେ ପକେଇଲ ?"

ଜଣେ ହେଜଣ ଭଲଲୋକ କେବି କଥାଟାକୁ ମିଟାମିଟି କରିଦେବାକୁ ଓ ପୁଣି ପତରପାଣି ପକେଇବାର ପୁନର୍ବ୍ୟବସ୍ଥା କରିବାକୁ

ଆସିଥିଲେ । ସେମାନଙ୍କ ମତଲବ ଶୁଣିବାମାତ୍ରେ ସେ ଗୁମନିଆ ହୋଇଯାଇ ରଡ଼ି ଛାଡ଼ିଲା—"ଆଉ ସେ କଥା ମୋ ଆଗରେ କୁହ ନାହିଁ । ମୋର ଗୋଟିଏ ବାପ ଗୋଟିଏ କଥା । ମୁଁ କାଉଁରିଆ କାଠି ଭାଙ୍ଗିବି ପଛେ ନଇଁବି ନାହିଁ । ମୋର ଶହ ଶହ ଟଙ୍କାର ଖାଇବା ଜିନିଷ ଖତଗଦାରେ ପକେଇଲ, ଆଉ ପୁଣି ତାଙ୍କ ସାଙ୍ଗରେ କଥାବାର୍ତ୍ତା ନା, ସେ ସବୁ କଥାରେ ନାଁ ଧରନା । ଖୁବ୍ ହୋଇଛି ।"

ଏହାପରେ ଜାତିଭାଇମାନେ ଖାଇବା ଆଶା ପୂରାପୂରି ଛାଡ଼ିଦେଲେ । ରାତି ଏଗାରଟା ବାଜିଲା । ମଧୁଆ, ସାଧୁଆ, ମକରା ଘର ଭିତରେ ଚୁପ୍ ଚାପ୍ ଖାଇ ବସିଲେ । ଖାଉ ଖାଉ ସାଧୁଆ କହିଲା—"ସତ କହୁଛି ଭାଇ ମୋ ଦେହରେ ଜୀବନ ନ ଥିଲା । ସେମାନେ ଯଦି ଆଣ୍ଠେଇ ବସି ଥାଆନ୍ତେ, ତେବେ କି ଦଶାଟାଏ ଯେ ହୋଇଥାଆନ୍ତା ! ତେମେ ଏତେ ଫନ୍ଦି ଫିକର କରିଛ ବୋଲି ମୁଁ କଅଣ ଜାଣିଥିଲି ।"

ମକରା କହିଲା—"ଯାହା ଜାଣିଲୁ ଜାଣିଲୁ; ସବୁ ପେଟରେ ରଖିବୁ । ଆଉ ଦେଖ ମଧୁଆ ଭାଇ ! ନିଶାପ ବସିଲେ ତାଙ୍କର ଦୋଷ ହବଇ ହବ । ସେମାନେ ହୁଏତ ଠାକୁର ଘର ଗୃହଦାଣ୍ଡ ମାଗିବେ । କଥାଟାକୁ ଗୋଳେଇ ପୋଳେଇ ଦେବାକୁ ବସିବେ । ତୁମେ କହିବୁ ଏକ ଜିଗର ଧରି ବସିବ ଯେ ତମର ଯେଉଁ ପାଞ୍ଚଶହ ଟଙ୍କା ଲୋକସାନ କଲେ ସେଇଟା ଆଗ ଦିଅନ୍ତୁ, ତେବେ ଯାଇ ତୁମେ ଠାକୁରଘର ଗୃହଦାଣ୍ଡ ଦେବ । ଆଉ ଦେଖ ଗନ୍ଧିଆ ହାଡ଼ି ହାତରେ ଦି'ବୋଝ ମାଛକାତି ଓ ପୁଟି ଅଣେଇ ଘର ଆଗରେ ପକେଇଥିଲି ସେ କାଲି ଆସିବ, ତାକୁ ଆଠଅଣା ପଇସା ଦେବ । ବଡବଜାର ମାଛହାଟ, ସ୍ୱରାଜ ହୋଟେଲ, କାଳିକା ହୋଟେଲ ଆଦି ଗୁଡ଼ାଏ ଜାଗାରୁ ଆଣି ପକେଇଛି ।

---

# ଖାଦ୍ୟୁଆ ଖାଦ୍ୟୁ କେନ୍ଦ୍ର

ମନ୍ତ୍ରୀ ଯୁଗ୍ମନିର୍ଦ୍ଦେଶକଙ୍କୁ କଡ଼ା ତାଗିଦ କରି ଶୁଣେଇ ଦେଲେ "ଦେଖ ଏ ଖାସୁ କରଣ କେନ୍ଦ୍ରରେ ବହୁଦିନ ଧରି ଆଶାନୁରୂପ କାର୍ଯ୍ୟ ନ ହେବାରୁ ସରକାର ଏ କେନ୍ଦ୍ର ତଥା ଯୁଗ୍ମ ନିର୍ଦ୍ଦେଶକ ପଦ ଉଠାଇ ଦେବାକୁ ସ୍ଥିର କରିଥିଲେ । କିନ୍ତୁ ମୁଁ କର୍ମଚାରୀମାନଙ୍କୁ ବଦଳି କରି ଖାସୁ କରଣ କେନ୍ଦ୍ରରେ ନୂତନ ପ୍ରାଣ ସଞ୍ଚାର କରାଇବାକୁ ଜିଗର କରିବାରୁ ଏ କେନ୍ଦ୍ର ରହିଲା ଓ ଆପଣଙ୍କୁ ଏଠାକୁ ଅଣାଗଲା । ଏଣୁ ଆପଣଙ୍କ ପାରିଲା ପଣ ଉପରେ ସବୁ ନିର୍ଭର କରୁଛି । ଦେଖନ୍ତୁ ମୁଁ ସାଫ୍ ସାଫ୍ କହି ଦେଉଛି, ଆପଣ ଯଦି ଦିନକୁ ଖୁବ୍ କମ୍‌ରେ ୩୨ଟି ଲୋକଙ୍କୁ ଖାସୁ ନ କରିବେ ତେବେ ଏ କେନ୍ଦ୍ର ସହ ଆପଣ ନିଜେ ଉଭେଇ ଯିବେ । ଏଣୁ ସବୁକିଛି ଆପଣଙ୍କ ଦକ୍ଷତା ଉପରେ ନିର୍ଭର କରୁଛି । ଲୋକଙ୍କୁ ପ୍ରଭାବିତ କରି କେନ୍ଦ୍ରକୁ ଅଣେଇବା, ଲୋକଙ୍କୁ ବୁଝେଇ ସୁଝେଇ ଖାସୁ ହେବାଲାଗି ମଙ୍ଗେଇବା, ଏ ସବୁ କାର୍ଯ୍ୟରେ ନିଯୁକ୍ତ ଲୋକ ଓ ଦଲାଲମାନଙ୍କୁ ପ୍ରଲୁବ୍ଧ କରିବା ପାଇଁ ଆପଣଙ୍କୁ ଟଙ୍କା ଦିଆଯାଇଛି । ଏହି ଟଙ୍କାକୁ ବିଜ୍ଞତାରସହ ଖର୍ଚ୍ଚ କଲେ ଖୁବ୍ ସୁଫଳ ପାଇବେ । ଦିନକୁ ୩୨ କାହିଁକି ୫୦।୬୦ ବି ଖାସୁ କରିପାରିବେ । କେମିତି ପ୍ରଚାର ହେବ, କେଉଁଠି ପ୍ରଚାର ହେବ ସେ ସବୁ ଆପଣ ଠିକ୍ କରିବେ । ଆମେ ସେ ବିଷୟରେ ପାଟି ଫିଟେଇବୁ ନାହିଁ । ଆମେ କେବଳ ଦେଖିବୁ ଆପଣ ନିତି ଖୁବ୍ କମରେ ୩୨ଟି ଲୋକଙ୍କୁ ଖାସୁ କରି କେନ୍ଦ୍ରରୁ ବିଦାୟ ଦେବେ । ଓ ! କଅଣ କହୁଛ ?"

ଆଙ୍ଗୁଠି ମଳି ମଳି ଯୁଗ୍ମନିର୍ଦ୍ଦେଶକ କହିଲେ—"ଆଜ୍ଞା ମୋ ଉପରେ ଆସ୍ଥା ରଖନ୍ତୁ, ଗୋଟାଏ ବର୍ଷରେ ସାରା ପ୍ରଦେଶଟାକୁ ଖାସୁ

କରିଦେବ । କେମିତି କରିବାକୁ ହେବ ସେ ସବୁ ମୋ ନଖ ଦର୍ପଣରେ ରହିଛି । ଆଜ୍ଞା ମୋ ସାନଭାଇ ଜଣେ ପଶୁ ଡାକ୍ତର । ସେ ତା ଅଞ୍ଚଳରେ ସବୁ ଷଣ୍ଢ, ବୋଦା, କୁକୁର, ଭୁଆଙ୍କୁ ଖାସୁ କରି ଦେଇଛି । ଗୋଟିଏ ହେଲେ ନିସ୍ତାର ପାଇ ନାହାନ୍ତି । ମୁଁ ମଣିଷ ଡାକ୍ତର । ତା'ର ବଡ଼ଭାଇ । ମୋତେ ବଳେଇ ଯିବନି । ଦି ତିନିଟା ବର୍ଷରେ ସବୁ ପ୍ରଜନନକ୍ଷମ ବାପମାନଙ୍କୁ ଖାସୁ କରି ସାଫ୍ କରିଦେବ । ଆପଣ ନିଶ୍ଚିନ୍ତ ରହନ୍ତୁ । ବର୍ଷକ ପରେ ମୋତେ ପଚାରିବେ ।"

ମନ୍ତ୍ରୀ ଖୁସିହୋଇ ଚାଲିଗଲେ । ଯୁଗ୍ମନିର୍ଦ୍ଦେଶକ ବିଭାଗର ବଛା ବଛା ପାରିଲାବାଲା କେତେକ କର୍ମଚାରୀଙ୍କୁ ଧରି ଯୋଜନାରେ ଲାଗିପଡ଼ିଲେ । ତାଙ୍କର ଆନ୍ତରିକତା, କର୍ମକୁଶଳତା ଯୋଗୁଁ ଖାସୁକେନ୍ଦ୍ରଟି ସରଗରମ ହୋଇଉଠିଲା । ଲୋକଙ୍କ ପାଖରେ କ୍ରମେ ସେ 'ଖାସୁସାହାବ' ବୋଲି ପରିଚିତ ହୋଇଗଲେ । ବର୍ଷକ ଭିତରେ ରାଜ୍ୟର ବାରପଣ ଲୋକଙ୍କୁ ଯେକୌଣସି ମତେ ଖାସୁ କରାଯିବ ଏ ଚିନ୍ତା ଖାସୁସାହାବଙ୍କୁ ସର୍ବଦା ବିଚଳିତ କରି ପକାଉଥାଏ । ପୁରୁଣା କାଳିଆ ମାମୁଲି ବିଜ୍ଞାପନ ଉପରେ ତାଙ୍କର ଆସ୍ଥା ନ ଥିଲା । କିଛି ଗୋଟାଏ ନୂଆ ଆଖିଦୃଶିଆ କାମ ନ କଲେ ଲୋକେ ହଠାତ୍ ଆକୃଷ୍ଟ ହେବେ ନାହିଁ ! କାମ ବି ଚଟାପଟ ଆଗେଇବ ନାହିଁ । ମନ୍ତ୍ରୀଙ୍କ ପାଖରେ ହାସ୍ୟାସ୍ପଦ ହେବାକୁ ପଡ଼ିବ ।

"ଖାସୁସାହାବ ପ୍ରଥମ ଯୋଜନା ସ୍ୱରୂପ ଆରମ୍ଭ କଲେ—'ଖାସୁ ଲଟେରି' । ଏହି ଯୋଜନା ଅନୁଯାୟୀ ଯେଉଁ ଲୋକ ଖାସୁ ହେବ ତାକୁ ଗୋଟିଏ ଟିକେଟ୍ ମିଳିବ । ଖାସୁ ଲୋକଟି ଏହି ଟିକେଟକୁ ଯତ୍ନର ସହିତ ସାଇତି ରଖିବେ । ଛ'ମାସ ଭିତରେ ଯେତେଲୋକ ଖାସୁ ହେବେ; ସେମାନଙ୍କର ନମ୍ବରସବୁ ଖାଲେଇରେ ଭର୍ତ୍ତିକରି ଲଟେରି ଉଠାଣ କରାଯିବ । ପ୍ରଥମ ପୁରସ୍କାର ଏକହଜାର, ଦ୍ୱିତୀୟ ପୁରସ୍କାର ପାଞ୍ଚଶହ ଏବଂ ତୃତୀୟ ପୁରସ୍କାର ଦୁଇଶହ ଟଙ୍କା ଦିଆଯିବ । ଏହାର ପ୍ରଚାରପତ୍ର ବହୁ ସଂଖ୍ୟାରେ ଛପାଯାଇ ଗାଁ ଗଣ୍ଡା, ସହର ଓ ସହର ତଳି ଅଞ୍ଚଳମାନଙ୍କରେ ବଣ୍ଟାଗଲା । ଖାସୁସାହାବଙ୍କର ଖବର କାଗଜ ଅପେକ୍ଷା ପ୍ରଚ୍ଛରପତ୍ର ଉପରେ ଅଧିକ

ଆସ୍ଥା ଥିଲା । ଦିନ କେଇଟା ପରେ ଲୋକେ କ୍ରମେ ଖାସୁ କେନ୍ଦ୍ରକୁ ଗଡ଼ିବାକୁ ଆରମ୍ଭ କଲେ । ଛ'ମାସ ପରେ ଯେତେବେଳେ ୩ଟି ଖାସୁଆ ବହୁ ଲୋକଙ୍କ ସାମନାରେ ୩ଟିଯାକ ପୁରସ୍କାର ହାତରେ ଧରି, ହେଣ୍ଡିମାରି ହସ ହସ ବଦନରେ ଘରକୁ ଫେରିଲେ, ସେତେବେଳେ ଖାସୁକେନ୍ଦ୍ରଟା ଅଧିକ ଜନପ୍ରିୟ ହୋଇ ଉଠିଲା । ଆହୁରି ଅଧିକ ଲୋକ ଖାସୁକେନ୍ଦ୍ରକୁ ଗଡ଼ିଲେ । ହେଲେ ଖାସୁସାହାବଙ୍କ ମନରେ ତୃପ୍ତି ନ ଥାଏ । ସେ ଚାହୁଁଥାନ୍ତି ଆହୁରି ଅଧିକ ଲୋକ କପରି ଖାସୁ ହେବେ । ସେ ଆହୁରି ଗୋଟିଏ ଯୋଜନା ପୂର୍ବ ଯୋଜନା ସହିତ ଯୋଖିଲେ । ଏହା ଅନୁଯାୟୀ ଅନେକ ଦଲାଲ ରଖାଗଲେ । କଂସେଇଖାନାକୁ ନେବାଲାଗି ବେପାରି-ମାନେ ଯେପରି ଘରିଆଡ଼ୁ ଗୋଟିଆ ଗୋଟେଇ କରି ଛେଳି ମେଣ୍ଢାଙ୍କୁ ଏକାଠି କରନ୍ତି, ଏ ଦଲାଲମାନେ ସେମିତି ଫୁସୁଲା ଫୁସୁଲି କରି ଖାସୁ-କେନ୍ଦ୍ର ପାଇଁ ଉଦ୍ଧ ଷ୍ଟ ଲୋକମାନଙ୍କୁ ପଲ୍ଲେ ଏକାଠି କରି ଖାସୁକେନ୍ଦ୍ରକୁ ଅଡ଼େଇ ନଅନ୍ତି । ସେମାନେ ମୁଣ୍ଡପିଛା ଟଙ୍କାଏ ଲେଖାଏଁ ଅଣ୍ଟାରେ ଖୋସି ଚାଲି ଯାଆନ୍ତି । ସେମାନଙ୍କୁ ଯେ କେବଳ ଏତିକ ମିଳେ ତାହା-ନୁହେଁ । ଲଟରି ପୁରସ୍କାର ପାଇଥିବା ଖାସୁଆମାନଙ୍କୁ ଯେଉଁ ଦଲାଲମାନେ ଆଣିଥାଆନ୍ତି ସେମାନେ ଚାରିଶହ, ଦୁଇଶହ ଓ ଶହେ ଟଙ୍କା ବକ୍‌ସିସ୍ ସ୍ୱରୂପ ପାଆନ୍ତି । ଏ ବ୍ୟବସ୍ଥା ଆହୁରି ଭଲକାମ ଦେଖେଇଲା । ଦଲାଲ-ମାନେ ଗାଲୁ ମାଲୁ କରି ଏମିତି ପ୍ରଚାର ଚଳେଇଲେ ଯେ ଅନେକ ଓଥଡ଼ା ବି ଖାସୁକେନ୍ଦ୍ରକୁ ଧାଇଁଲେ । ଖାସୁକେନ୍ଦ୍ରର କର୍ମଚାରୀମାନେ ଖାସୁସାହାବ ଯୋଜନାକୁ ମନେ ମନେ ଭାରି ତାରିଫ୍ କଲେ । କେନ୍ଦ୍ର ବନ୍ଦ ହୋଇ-ଯିବାର ତଥା, ସେମାନଙ୍କର ଛଟେଇ ହୋଇ ଯିବାର ଭୟ ଆଉ ରହିଲା ନାହିଁ । ମନ୍ତ୍ରୀ ଯେ ଖାସୁସାହାବଙ୍କୁ ବହୁତ ବହୁତ ବଧେଇ ଦେବେ ସେ ବିଷୟରେ ସେମାନଙ୍କର ଆଉ ତିଳେ ହେଲେ ସନ୍ଦେହ ରହିଲା ନାହିଁ । କିନ୍ତୁ ଖାସୁସାହାବଙ୍କ ମନରେ ତୃପ୍ତି ନ ଥାଏ । ସେ ଖୋଜୁ ଥାଆନ୍ତି ଆହୁରି ବେଶୀ ଆହୁରି ବେଶୀ । କଣ୍ଟ ସମୟ୍ୟର ଅଧାରେ କେମିତି କାମଟା ହାସଲ କରିଦେଇ ମନ୍ତ୍ରୀଙ୍କୁ ଖୁସ୍ କରିଦେବେ ସେହି ବିଷୟ ତାଙ୍କ ମୁଣ୍ଡରେ ଘାଣ୍ଟି ଚକଟି ହେଉଥାଏ । କର୍ମଚାରୀମାନେ ଆଉ ବେଶୀ ହୋ ନ କରିବାକୁ ବୁଝେଇଲେ ।

ଅତ ଲେମ୍ବୁ ଚପୁଡ଼ିଲେ ପିତା ହେବ ବୋଲି ବତେଇଲେ । ବଳେଇ କରି ଖାଇଲେ ପେଟ ଫମ୍ପାଏ ବୋଲି କହିଲେ । ଖାସୁସାହାବଙ୍କ କାନରେ କିନ୍ତୁ ଏଗୁଡ଼ାକ ବିଲ୍‌କୁଲ୍ ପଶିଲା ନାହିଁ । ସବୁ କଥାକୁ ସେ ବେଖାତିର କରି ଉଡ଼େଇ ଦେଲେ । ସେ ଆହୁରି ଆଗେଇବାର ଯୋଜନା ତିଆରି କଲେ । ଖାସୁଆ ତାଲିକା ଦେଖି ସେ ଜାଣି ପାରିଲେ ସେଗୁଡ଼ିକ ସମସ୍ତେ ପ୍ରାୟ ନିମ୍ନ ଶ୍ରେଣୀର ଲୋକ; ମଜୁରିଆ, ରିକ୍‌ସାବାଲା ଆଦି । ଶିକ୍ଷିତ ଭଦ୍ରଲୋକ ତହିଁରେ ଗୋଟିଏ ହେଲେ ଦେଖିବାକୁ ମିଳୁନି । ଶିକ୍ଷିତ ଭଦ୍ରଲୋକମାନେ ଏ ତାଲିକା ଭିତରକୁ ନ ଆସିଲେ ଉଦ୍ଦେଶ୍ୟ ସଫଳ ହେବ ନାହିଁ । ହଜାରେ ମୂର୍ଖଙ୍କୁ ଖାସୁକଲେ ଯେଉଁ ଫଳ ମିଳିବ, ଗୋଟିଏ ଶିକ୍ଷିତଙ୍କୁ ଖାସୁକଲେ ତହିଁରୁ ଅଧିକ ଫଳ ମିଳିବ । ଜଣେ ଖାସୁଆ ଶିକ୍ଷିତର ମୌଖିକ ପ୍ରଚାର ଢେର ଭଲ କାମ ଦେଖେଇବ । ଜନସାଧାରଣ ସେମାନଙ୍କ କଥାରେ ବେଶି ବିଶ୍ୱାସ କରିବେ; ବେଶି ଆସ୍ଥା ରଖିବେ ଆଉ ବହୁ ସଂଖ୍ୟାରେ ଖାସୁକେନ୍ଦ୍ରକୁ ଧାଇଁବେ । ଦଲାଲ ଆଣିଥିବା ଲୋକେ ପ୍ରଲୋଭନରେ ପଡ଼ି ଆସୁଛନ୍ତି । ଯୋଜନାର ଗୁରୁତ୍ୱ କିଛି ବୁଝୁନ୍ତି ନାହିଁ । ତେଣୁ ସେମାନଙ୍କ ଦ୍ୱାରା ମୌଖିକ ପ୍ରଚାରଟା ହୋଇପାରେ ନାହିଁ । ଯେଉଁଟିକ ଶିକ୍ଷିତ ଖାସୁଆମାନଙ୍କ ପକ୍ଷେ ସମ୍ଭବ । ସେହିମାନଙ୍କ ତୁଣ୍ଡି ବାଇଦ ସହସ୍ର କୋଶଯାଏ ଖେପିଯିବ । ଦଲାଲମାନେ ତ ତାଙ୍କ ପାଖ ମାଡ଼ି ପାରିବେ ନାହିଁ । ସେମାନଙ୍କ ପାଖ ମାଡ଼ିବ ଖବର କାଗଜ । ଶିକ୍ଷିତ ଲୋକ ମାନେ ହିଁ ଖବର କାଗଜ ପଢ଼ନ୍ତି । ଏହି ଖବର କାଗଜ ମାଧ୍ୟମରେ ସେମାନଙ୍କୁ ପକଡ଼ିବାକୁ ହେବ । ଶିକ୍ଷିତମାନେ ଆସିଗଲେ ଖାସୁ ଯୋଜନା ପୂର୍ଣ୍ଣାଙ୍ଗ ହୋଇଯିବ ।

ଏହାପରେ ବହୁ କଳ୍ପନା ଜଳ୍ପନା କରି ଖାସୁସାହାବ ଦୈନିକ ଖବର କାଗଜମାନଙ୍କରେ ସର୍ବସାଧାରଣଙ୍କୁ ଖାସୁ ହେବାଲାଗି ନିମନ୍ତ୍ରଣ କରିବାର ବିଜ୍ଞାପନ ଦେଲେ । ଗୋଟିଏ କାଗଜରେ ବାହାରିଲା—"ତେଲୁଣି ପୋକ ପରି ସାଲୁ ସାଲୁ ଛୁଆ ଖେଳାଇବା ଏକ ଅମାନୁଷିକ କାର୍ଯ୍ୟ । ଏପରି ହୀନ ଅବସ୍ଥା ଆସିବା ପୂର୍ବରୁ ଖାସୁହୋଇ ପଡ଼ନ୍ତୁ ।"

ଆଉ ଗୋଟିକରେ ବାହାରିଲା—"ସୁଖୀ ପରିବାରଟିଏ ଗଢ଼ାନ୍ତୁ ? ମାତ୍ର ଦୁଇଟି ସନ୍ତାନ ପରେ ଖାସୁ ହୋଇପଡ଼ନ୍ତୁ ।"

ଅନ୍ୟଟିରେ ବାହାରିଲା—"ବହୁ ସନ୍ତାନର ଅର୍ଥ ବହୁ ଜଞ୍ଜାଳ । ବହୁ ଜଞ୍ଜାଳର ଅର୍ଥ ବହୁ ଦୁଃଖ କଷ୍ଟ, ବହୁ ଆଶଙ୍କା ଉଦ୍‌ବେଗ, ବହୁ ମନସ୍ତାପ । ଏଥିରୁ ମୁକ୍ତ ପାଇବାକୁ ହେଲେ ଅତିଶୀଘ୍ର ଖାସୁହୋଇ ପଡନ୍ତୁ ।"

ଏମିତିଆ ଏମିତିଆ ବହୁ କଥା ବିଜ୍ଞାପନରେ ବାହାରିଲା । ବୁଢ଼ୀଆଣି ଜାଲ ମେଲାଇ ଦେଇ ମାଛିଙ୍କୁ ଚାହିଁ ରହିଲା ପରି ଖାସୁସାହାବ ବିଜ୍ଞାପନ ଦେଇ ଶିକ୍ଷିତ ଲୋକମାନେ କପରି ଖାସୁ କେନ୍ଦ୍ରର ଜାଲରେ ଆସି ପଡ଼ିବେ ତାହା ଦେଖିବାକୁ ଚାହିଁ ରହିଲେ । ସାତ ଆଠଦିନ ପରେ ଜଣେ ଶିକ୍ଷିତ ଲୋକ ଖାସୁକେନ୍ଦ୍ରଆଡ଼େ ଗଡ଼ିବାର ଦେଖାଗଲା । ଖାସୁସାହାବ ମନେ ମନେ କୁଲୁରି ଉଠିଲେ । ଏଇଟା କେବଳ ବିଜ୍ଞାପନର କରାମତି । ଆଉକୁ ଶିକ୍ଷିତ ଲୋକମାନେ ଅନଳକୁ ପତଙ୍ଗ ଧାଇଁଲା ପରି ଖାସୁକେନ୍ଦ୍ରକୁ ଧାଇଁବେ । ଆଗରୁ ଏପରି ବିଜ୍ଞାପନ ଦେଇଥିଲେ କାମ କାହିଁ କେତେଦୂର ଆଗେଇ ଯାଇଥାନ୍ତା ! ଏଥିଲାଗି ଖାସୁସାହାବଙ୍କ ମନରେ ଟିକିଏ ଅନୁତାପ ବି ହୋଇଗଲା ।

ଶିକ୍ଷିତ ଲୋକଟି ସିଧା ସଳଖ ଖାସୁସାହାବଙ୍କ ପାଖକୁ ଆସି ସ୍ମିତ ହସର ସହ ସରୁ ନମସ୍କାରଟିଏ ପକେଇ ପଚାରିଲେ—"ଆଜ୍ଞା ଆପଣ ଖାସୁସାହାବ ?"

"ନିଶ୍ଚୟ ନିଶ୍ଚୟ ବସନ୍ତୁ ।"

ଲୋକଟି ବସିବା ପରେ ଖାସୁସାହାବ ଆଉ ଅପେକ୍ଷା ନ କରି ଆରମ୍ଭ କରିଦେଲେ—"ଆଜ୍ଞା ଆପଣଙ୍କର କେଇଟି ପିଲା ?"

"ଦୁଇଟି ପୁଅ, ଗୋଟିଏ ଝିଅ ।"

"ବାଃ ! ଆପଣଙ୍କ ଯଥାର୍ଥ ସୁଖୀ ପରିବାର ଗଢ଼ିଛନ୍ତି । ଆପଣ ଜଣେ ଶିକ୍ଷିତ ଲୋକ । ଆପଣ ନିଶ୍ଚୟ ବିଜ୍ଞାପନ ପଢ଼ିଥିବେ । ମୁଁ ଦୃଢ଼-ଭାବରେ ଜାଣେ ଆପଣଙ୍କ ପରି ଶିକ୍ଷିତ ଲୋକମାନେ ବିଜ୍ଞାପନ ଅନୁଯାୟୀ ନିଶ୍ଚୟ କାର୍ଯ୍ୟ କରିବେ । ହେଁ ହେଁ ଆପଣଙ୍କ ନାମ ?"

"ଭୂପାଳ ସିଂ ।"

"ହେଁ ହେଁ ପିତାଙ୍କ ନାମ ?"

"ଗୋପାଳ ସିଂ ।"

"ଗ୍ରାମ, ପୋଷ୍ଟ, ଥାନା ?"

"ଗ୍ରାମ: ଟାଇଁଆଁ, ପୋଷ୍ଟ: ଡାଇଁଆ, ଥାନା: ହାଇଁଆ ।"

"ଦୁଇଟି ପୁଅ, ଗୋଟିଏ ଝିଅ ନା ?"

"ଆଜ୍ଞା ହଁ ।"

"ହେଁ ହେଁ ଆପଣ ହିଁ ଆଦର୍ଶ ପରିବାର ଗଢ଼ିଛନ୍ତି । ଆଦର୍ଶ ପରିବାର କାହାକୁ କହନ୍ତି ତାହା ଭଲଭାବେ ହୃଦୟଙ୍ଗମ କରିଛନ୍ତି । ଆମ ଦେଶ ଏବେ ଆପଣଙ୍କ ପରି ଲୋକ ଗୃହେଁ ।"

"କିନ୍ତୁ—"

"କିନ୍ତୁ ଫିନ୍ତୁର ପ୍ରଶ୍ନ ଏଠି ନାହିଁ । ମୋର ଦୃଢ଼ ଧାରଣା ଆପଣ ଜଣେ ଆଦର୍ଶ ନାଗରିକ । ଭାରତର ହିତାକାଙ୍କ୍ଷୀ । ଆରେ—କିଏ ଅଛରେ ବାବୁଙ୍କୁ ଅପରେସନ୍ ଟେବୁଲ ଉପରକୁ ନିଅ ।"

"ଏଁ ! ଅପରେସନ୍ ଟେବୁଲ ? କାହିଁକି ମୋର କ'ଣ ହୋଇଛି କି ?"

"ଭୟ କରିବାର କୌଣସି କାରଣ ନାହିଁ । ଅପରେସନ୍ ଖୁବ୍ ସହଜ । ଠିଆ ଠିଆ ବି କରିଦେବୁ, ଜାଣି ପାରିବେ ନାହିଁ । ଆରେ କିଏ ଅଛ ବାବୁଙ୍କୁ ନେଇଯାଅ ।"

"ଆଜ୍ଞା ଆପଣଙ୍କର ଭୁଲ ଧାରଣା ବୋଧହୁଏ ହୋଇଛି । ମୁଁ ଖାସୁ ହେବାକୁ ଆସିନି । ମୁଁ 'ଖଣ୍ଡିଆଭୁତ' ପତ୍ରିକାର ସମ୍ପାଦକ । ଆପଣ ଖାସୁକେନ୍ଦ୍ର ବିଷୟରେ ଖବର କାଗଜମାନଙ୍କରେ ବିଜ୍ଞାପନ ଦେଉଛନ୍ତି । ମୋ ପତ୍ରିକା ପାଇଁ ଏକ ବିଜ୍ଞାପନ ଆପଣଙ୍କଠାରୁ ନେବାପାଇଁ ଆସିଛି । ଆପଣ ବିଜ୍ଞାପନଟିଏ ଦେଇ ଦେଖନ୍ତୁ । ସଙ୍ଗେ ସଙ୍ଗେ ଫଳ ପାଇବେ ।"

"ବନ୍ଦ କରନ୍ତୁ । ମୋର ଆଉ ଶୁଣିବାର ଧୈର୍ଯ୍ୟ ନାହିଁ । ମୁଁ ଖବରକାଗଜରେ ବିଜ୍ଞାପନ ଦେଇଥିଲି, ଲୋକମାନଙ୍କୁ ଏଠାକୁ ଖାସୁ ହେବାଲାଗି ଆସିବା ପାଇଁ । ଆପଣଙ୍କୁ, ବିଜ୍ଞାପନ ମାଗି ଆସିବାପାଇଁ ନୁହେଁ । ଏଠୁ ଉଠନ୍ତୁ, ରାସ୍ତା ଦେଖନ୍ତୁ ।"

"ଆପଣ ତ ଖବରକାଗଜରେ ବିଜ୍ଞାପନ ଦେଇଛନ୍ତି । ଫଳ ତ ଦେଖିଥିବେ । ଆମ 'ଖଣ୍ଡିଆଭୁତ' ପତ୍ରିକାରେ ଗୋଟିଏ ବିଜ୍ଞାପନ ଦେଇ ଦେଖନ୍ତୁ । ଡବଲ ଫଳ ଯଦି ନ ପାଇବେ ତେବେ ଆମେ ପତ୍ରିକା ପ୍ରକାଶନ ବନ୍ଦ କରିଦେବୁ ।"

"ଆଉ ବେଶି ଗପନ୍ତୁ ନାହିଁ । ମୁଁ ଜାଣେ ଫଳ ମିଳୁ ବା ନ ମିଳୁ, ଆପଣଙ୍କ ପତ୍ରିକା ବଞ୍ଚିବ ନାହିଁ । କେଇଟା ସଂଖ୍ୟା କାଢ଼ି ଅଫିସରେ ତାଲା ପକେଇବେ । ଯାଆନ୍ତୁ, ମୋର ସମୟ ନଷ୍ଟ କରନ୍ତୁ ନାହିଁ ।"

"ଆଜ୍ଞା ଆପଣ ଏତେ ବ୍ୟସ୍ତ ହେଲେ ଚଳିବ ? ଆପଣଙ୍କର କାମ ହେଲା ଲୋକସଂଖ୍ୟା କମେଇବା । ଯେଉଁମାନେ ରହିବେ ତାଙ୍କର ଶିକ୍ଷା, ସଂସ୍କୃତିର ଅଭିବୃଦ୍ଧି ତ ଦରକାର । ସେ କାମ ଆମେ କରୁଛୁ । ଆମକୁ ବିଜ୍ଞାପନଟିଏ ଦେଲେ ଆପଣଙ୍କର ଖାସୁକରଣ କାମ ଆଗେଇବ : ଆମ ପତ୍ରିକା ବି ଉପକୃତ ହୋଇ ସାହିତ୍ୟ, ସଂସ୍କୃତିର ଅଭିବୃଦ୍ଧି କରିବ, ଯାହାକି ଜନସାଧାରଣଙ୍କ ପାଇଁ ନିହାତି ଦରକାର । ସବୁଆଡ଼ୁ ଆପଣଙ୍କର ଲାଭ ଛଡ଼ା କ୍ଷତି ନାହିଁ ।"

"ଓଃ ! ଆପଣ କାହାଁକି ଜୀବନବୀମା ପ୍ରତିନିଧି ପରି ମୋତେ ଘେରି-ଛନ୍ତି । ମୋ କାମ ହେଲା ଖାସୁକରିବା । ଆପଣ ଖାସୁ ହେବେ ତ ଆସନ୍ତୁ ।"

ଏହା କହି ଖାସୁସାହାବ ସମ୍ପାଦକଙ୍କ ହାତ ଧରି ଅପରେସନ୍ କୋଠରୀକୁ ନେବାପାଇଁ ଟାଣିଲେ । ସମ୍ପାଦକ ଜଣକ ଭୟଭୀତ ହୋଇ ସେଠାରୁ ପଳାଇଲେ । ଅଧଘଣ୍ଟାଏ ଯାଇଛି କି ନା ଆଉ ଜଣେ ଶିକ୍ଷିତ ପରି ଦିଶୁଥିବା ଲୋକ ତାଙ୍କର ଆଡ଼କୁ ଗଡ଼ିଲେ । ଭଦ୍ରଲୋକ ଜଣକ ନମସ୍କାରକରି ଚହ୍ଲୋଟ ପତ୍ରଟିଏ ଖାସୁସାହାବଙ୍କ ହାତକୁ ବଢ଼ାଇ ଦେଲେ । ଖାସୁସାହାବ ତାକୁ ପଢ଼ୁ ପଢ଼ୁ ତାଙ୍କର ଗୋଡ଼ଆଡ଼ୁ ଶିର୍ଶିରେଇ ଉଠିଲା । ସେଥିରେ ଲେଖାଥିଲା—ଶ୍ରୀ ଧଡ଼କନ ମଲକ, ସମ୍ପାଦକ—'ଝଗଡ଼ଆ' । ରାଜ୍ୟର ସ୍ୱନାମଧନ୍ୟ ସର୍ବଶ୍ରେଷ୍ଠ ନିର୍ଭୀକ ମାସିକ ପତ୍ରିକା । ଖାସୁସାହାବ ଚହ୍ଲୋଟ ପତ୍ରଟି ଟେବୁଲ ଉପରେ କଚି ଦେଇ କହିଲେ—"ମୁଁ ପତ୍ରପତ୍ରିକା ବିଷୟରେ ଆଗ୍ରହାନ୍ୱିତ ନୁହେଁ ।"

"ଆପଣ କିନ୍ତୁ ଖାସୁକରଣ ବିଷୟରେ ଆଗ୍ରହାନ୍ୱିତ ।"

"ଓଃ ! ବୁଝିଲି ଆପଣ ତେବେ ଖାସୁ ହେବାକୁ ଆସିଛନ୍ତି ?"

"ନା, ଅନ୍ୟମାନେ ଯେପରି ଏଠାକୁ ଆସି ଖାସୁ ହେବେ ତା'ର ବ୍ୟବସ୍ଥା କରିବାକୁ ଆସିଛି ।"

"ଓହୋ ଆପଣ ତେବେ ସମ୍ପାଦକଗିରି କରିବା ସଙ୍ଗେ ସଙ୍ଗେ ଖାସୁଆମାନଙ୍କ ଦଲାଲି କରନ୍ତି ?"

"ନା ନା, ସେ ସବୁ କରୁ ନୁହେଁ । ଆମ ପତ୍ରିକାରେ ଆପଣ ଯଦି ଗୋଟିଏ ବିଜ୍ଞାପନ ଦେବେ ତେବେ ଦେଖିବେ କିପରି ଲୋକେ ପିମ୍ପୁଡ଼ି ଧାରି ପରି ଏ ଖାସୁକେନ୍ଦ୍ରକୁ ଛୁଟିବେ ।"

ମାଫ୍ କରିବେ । ଏଠି ଲୋକଙ୍କୁ ଖାସୁ କରାଯାଏ । ବିଜ୍ଞାପନ ଦିଆଯାଏ ନାହିଁ ।

"ଆପଣ କିନ୍ତୁ ଖବର କାଗଜକୁ ବିଜ୍ଞାପନ ଦେଇଛନ୍ତି । ପତ୍ରିକା ପ୍ରତି ଏପରି ବିମୁଖ କାହିଁକି ? ଏହା ଏକ ପ୍ରିୟାପ୍ରୀତି ତୋଷଣର ଜ୍ୱଳନ୍ତ ନିଦର୍ଶନ ନୁହେଁ କି ?"

"ଓଃ ! ଦେଖୁଛି ଆପଣ ପତ୍ରିକାର ନାମକୁ ସାର୍ଥକ କରିଛନ୍ତି । ମୁଁ ଆପଣଙ୍କ ସଙ୍ଗେ ଝଗଡ଼ା କରି ପାରିବିନି କି ଆପଣଙ୍କୁ କୌଣସି ବିଜ୍ଞାପନ ଦେଇ ପାରିବିନି । ଆପଣ ଏଠୁ ଶୀଘ୍ର ଯାଆନ୍ତୁ ତ ।"

ସମ୍ପାଦକ ପୁଣି କଅଣ କହିବାକୁ ଯାଉଥିଲେ କିନ୍ତୁ ଖାସୁ-ସାହାବଙ୍କୁ ଚପରାସି ଡାକିବାର ଦେଖି କ୍ରୋଧ ଓ ଅପମାନରେ ସ୍ଥାନ ପରିତ୍ୟାଗ କଲେ । ଖାସୁସାହାବ ଟେବୁଲ ଉପରେ ବିଧାଟାଏ ମାରିଦେଇ କହିଲେ—"ଏ ବିଜ୍ଞାପନ ଭିକାରୀଗୁଡ଼ାକ ମଣିଷକୁ ବସେଇ ଉଠେଇ ଦେବେ ନାହିଁ ।"

ଦିନେ ଦିଦିନ ଅନ୍ତରରେ ଧାରାବାହିକ ଭାବରେ ଖାସୁସାହାବଙ୍କ ଉପରେ ପତ୍ରିକା ସମ୍ପାଦକମାନଙ୍କର ଚଢ଼ାଉ ଲାଗି ରହିଲା । ଖାସୁସାହାବ କ୍ରମେ ଏତେଦୂର ଉତ୍ତ୍ୟକ୍ତ ହୋଇ ଉଠିଲେ ଯେ ଚଢ଼ାଉ କଲାବାଲାଏ ଯଦି ସମ୍ପାଦକ ନ ହୋଇଥାନ୍ତେ ତେବେ ସେମାନଙ୍କୁ ସେ ଠେଙ୍ଗେଇ ବିଦାକରି ଦେଇ ଥାଆନ୍ତେ । ବ୍ୟତିବ୍ୟସ୍ତ ହୋଇ ସେ ଭାବିବାକୁ ଲାଗିଲେ—"କି ବିଚିତ୍ର କଥା ! ମୁଁ ବିଜ୍ଞାପନ ଦେଲି ଲୋକେ କେମିତି ଅଧିକରୁ ଅଧିକ ଆସି ଖାସୁଆ ହେବେ । ସେମାନେ ଗଲେ ଗାଧୋଇ । ମୋ ବିଜ୍ଞାପନ ଓଲଟି ନିମନ୍ତ୍ରଣ କରି ଆଣିଲା ଖାଉନ୍ଦେ ବିଜ୍ଞାପନ ଶିକାରୀ !"

ବିଜ୍ଞାପନ ଶିକାରୀ ଦଳଙ୍କୁ ଦୂରରେ ରଖିବା ପାଇଁ ଖାସୁସାହାବ ଗୋଟିଏ ନିୟମ କଲେ । ଯେଉଁ ସମ୍ପାଦକ ଆଗ ଖାସୁହେବେ ତାଙ୍କୁଇ ବିଜ୍ଞାପନ ମିଳିବ । ଅଧିକାଂଶ ସମ୍ପାଦକ କଞ୍ଜୁ ବା ଦରିପାକଳ । କେହି ହେଲେ ପୂରା ପାକଳ ହୋଇ ନାହାନ୍ତି । ଗୋଟାଏ ବିଜ୍ଞାପନ ପାଇଁ ଖାସୁ-ହେବା କଥାଟା କାହାରି ପସନ୍ଦ ହେଲା ନାହିଁ । ବିଜ୍ଞାପନ ପାଇବାର ଆଶା

ସମସ୍ତଙ୍କର ଭୁଟିଗଲା । ସମସ୍ତେ ରକ୍ତଶୁଦ୍ଧଳ ଶୋଷେଇ କପର ଖାସୁ-ସାହାବଙ୍କୁ ଘଣ୍ଟାଏ ଦେବେ ସେଇ ବିଷୟରେ ଧନ୍ଦ ହେବାକୁ ଲାଗିଲେ ।

କଥାରେ ଅଛି ଏକା ଜାତିର ଚଢ଼େଇ ସବୁବେଳେ ଏକାଠି ରହନ୍ତି । ନବଗଣ ହୋଇଥିବା ବିଜ୍ଞାପନ ଶୀକାଶ ଦଳ ଏ ବିଷୟରେ ମସୁଧା ଚଳେଇବାକୁ ଦିନେ ଏକଯୁଟ ହେଲେ । ଖୁବ୍ ତନାଘନା ଆଲୋଚନା ଚାଲିଲା । ଶେଷରେ ମେଣ୍ଟା ସମ୍ପାଦକଜଣକ କହିଲେ—ଦେଖ, ଖାସୁ-ସାହାବ ଯଦି ଆମର ପୃଷ୍ଟପୋଷକତା ନ କଲା, ତେବେ ଆମେ କାହିଁ ତାର ପୃଷ୍ଟପୋଷକତା କରିବା ? ଆମେ ଆଡ଼କୁ ମୁହାଁମୁହିଁ ତା'ର ଦୋଷ ଘୋଷକତା କରିବା । ଦୁନିଆରେ ସବୁ ଜିନିଷର ଭଲ ମନ୍ଦ ରହିଛି । ଆମେ ବାଛି ବାଛି ଖାସୁକରଣର ମନ୍ଦତିକ ଗାଇ ବୁଲିବା । ଲାଗିପଡ଼ି ତା' ଖାସୁ-କେନ୍ଦ୍ରକୁ ଖାସୁ କରିଦେବା । ସେ କେନ୍ଦ୍ରର ନାଁ କରିଦେବା "ଖାସୁଆ ଖାସୁକେନ୍ଦ୍ର ।" ଆସନ୍ତା ସଂଖ୍ୟାରେ ସମସ୍ତେ କେନ୍ଦ୍ର ଓ ତା' ବିରୁଦ୍ଧରେ ଲେଖିବା ।

× × × ×

ସାତ ଆଠ ଦିନ ମଧ୍ୟରେ ସବୁଯାକ ପତ୍ରିକା ଘେଞ୍ଚିଆ ମୋଟିଆ ହୋଇ ବାହାରି ପଡ଼ିଲା । ବଡ଼ ବଡ଼ ଅକ୍ଷରର ଶୀର୍ଷନାମା ସହ ଆଖି-ବୁଲିଆ ଲେଖାମାନ ସମସ୍ତଙ୍କ ଦୃଷ୍ଟି ଆକର୍ଷଣ କଲା ।

'ଖଣ୍ଡିଆଭୂତ' ପତ୍ରିକାରେ ବାହାରିଲା—"ଭାରତୀୟମାନଙ୍କର ନୈତିକତା ନଷ୍ଟ କରିବାର ଅପଚେଷ୍ଟା । ଖାସୁକେନ୍ଦ୍ର ବାଚ୍ ବିଚାର ନ କରି ଗଜା ଭେଣ୍ଡିଆମାନଙ୍କୁ ଖାସୁକରି ପକାଉଛନ୍ତି । ଏ ଗଜା ଭେଣ୍ଡିଆମାନେ ଓଲିଆ ଷଣ୍ଢପରି ଗଳିଆଡ଼େ ବୁଲି ଓଦା ଖାଇବାପାଇଁ ଜାଣିଶୁଣି ଖାସୁ ହୋଇ ପଡ଼ୁଛନ୍ତି । ଏମାନେ ଦେଶରେ ଭ୍ରଷ୍ଟାଚାରର ସୁଅ ଛୁଟାଇ ଦେବେ । ସମାଜ କଳଙ୍କିତ ହୋଇଯିବ । ନୈତିକତାହୀନ ଜାତିର ମେରୁଦଣ୍ଡ ଭାଙ୍ଗି ପଡ଼ିବ । ଦେଶ ଭୁଷୁଡ଼ି ପଡ଼ିବ । ଖାସୁକରଣ ତୁରନ୍ତ ବନ୍ଦ କରିବା ଲାଗି ଜନସାଧାରଣଙ୍କର ସରକାରଙ୍କ ଉପରେ ଚାପ ପକାଇବା ଏକାନ୍ତ ପ୍ରୟୋଜନ ।"

'ଝଗଡ଼ୁଆ ପତ୍ରିକାରେ ବାହାରିଲା—"ହିନ୍ଦୁମାନଙ୍କୁ ନିଶ୍ଚିହ୍ନ କରିଦେବା ପାଇଁ ଘୋର ଷଡ଼ଯନ୍ତ୍ର । ଖାସୁହେବା ଧର୍ମବିରୁଦ୍ଧ ବୋଲି ଦର୍ଶାଇ ଏ ଦେଶରେ ଅଣହିନ୍ଦୁମାନେ ଖାସୁ ହେଉ ନାହାନ୍ତି । ସେମାନେ ନିଜ ନିଜ ଜାତିଭାଇଙ୍କୁ ମଧ୍ୟ ଖାସୁ ନ ହେବା ଲାଗି ପ୍ରବର୍ତ୍ତାଉଛନ୍ତି । ଫଳରେ ଅଣହିନ୍ଦୁଙ୍କ ସଂଖ୍ୟା ଆମ ଦେଶରେ ବଢ଼ି ଚାଲିଛି । ଅଥଚ ଅଗଣିତ ହିନ୍ଦୁ ଗଜା ଭେଣ୍ଡିଆମାନଙ୍କୁ ନାନା ଉପାୟରେ ପ୍ରଭାବିତ କରି ଖାସୁ କରା-ଯାଉଛି । ଆଉ କିଛିଦିନ ଏହା ଅବ୍ୟାହତ ରହିଲେ ହିନ୍ଦୁମାନେ ହିନ୍ଦୁସ୍ଥାନରେ ସଂଖ୍ୟାଲଘୁ ସମ୍ପ୍ରଦାୟରେ ପରିଣତ ହୋଇ ଅଣହିନ୍ଦୁମାନଙ୍କର ଗୋଲାମ ହୋଇ ରହିବେ । ପୁରାଣ ପ୍ରସିଦ୍ଧ ଆମର ଦେବଭୂମି ଅସୁର ଭୂମିରେ ପରିଣତ ହେବ । ହିନ୍ଦୁମାନେ ଜାଗ, ଲାଗ, ବାନ୍ଧପାଗ; ସରକାରଙ୍କୁ ଆଗ ପ୍ରତିକାର ମାଗ । ଯଦି ଏହା ସରକାରଙ୍କ ମନରେ ଦାଗ ନ ପକାଏ, ତେବେ ରାଗର ବହ୍ନି ଜଳାଇ କୁହ—ରେ ସରକାର ଏ ଖାସୁଆ ସାହାବ ସଙ୍ଗେ ତୁରନ୍ତ ଭାଗ ।"

'ଧୂମ୍‌ଧାମ୍‌' କାଗଜରେ ଗୋଟିଏ ନିମନ୍ତ୍ରଣ ପତ୍ରର ବ୍ଲକ୍ ଛପା ବାହାରିଲା । ନିମନ୍ତ୍ରଣର କର୍ତ୍ତା ହେଉଛନ୍ତି ଖୋଦ୍ ଖାସୁସାହାବ । ସେଥିରେ ଅନ୍ୟାନ୍ୟ ଗତାନୁଗତିକ ବିଷୟ ସହ ଲେଖାଥିଲା— × × ମୋର ଅଷ୍ଟାଦଶ ପୁତ୍ର ଆୟୁଷ୍ମାନ୍ ଗଣ୍ଡଭୈରବ ସହ ଦାଲୁଡ଼ା ଗ୍ରାମ ନିବାସୀ ଚଣ୍ଡୀଚରଣଙ୍କର ପଞ୍ଚଦଶ କନ୍ୟା ଆୟୁଷ୍ମତୀ ଚେମଣୀଙ୍କ ଶୁଭ ବିବାହ—ଇତ୍ୟାଦି ଇତ୍ୟାଦି । ଏ ବ୍ଲକ୍ ଛପା ତଳେ ଲେଖାଥିଲା—"ଖାସୁସାହାବଙ୍କ ଅପୂର୍ବ କୃତିତ୍ୱ । ଖାସୁସାହାବ ଗଜା ଭେଣ୍ଡିଆମାନଙ୍କୁ ନିର୍ବିଚାରରେ ଖାସୁ କରୁଥିଲାବେଳେ ନିଜେ ଅଷ୍ଟାଦଶ ପୁତ୍ରର ଜନକ ହୋଇ ସୁଦ୍ଧା ଖାସୁ ହୋଇ ନାହାନ୍ତି କାହିଁକି ? ସରକାର ଏପରି ଏକ ଆଦର୍ଶ ପୁରୁଷଙ୍କୁ ଖାସୁସାହାବ ରୂପେ ନିଯୁକ୍ତ ଦେବାରେ କି ରହସ୍ୟ ରହିଛି ?"—

ଅନ୍ୟାନ୍ୟ ପତ୍ରିକାମାନେ ଖାସୁସାହାବଙ୍କ ଉପରେ ଅଗ୍ନି ବର୍ଷଣ କରି ଲାଗିଲେ । କିଏ ଲେଖିଲା ଖାସୁସାହାବଙ୍କୁ ବରଖାସ୍ତ କର । କିଏ ଲେଖିଲା ଖାସୁକେନ୍ଦ୍ରକୁ ତାଡ଼ିଦିଅ । କେହି କେହି ଲେଖିଲେ ଖାସୁସାହାବଙ୍କ ସହିତ ତାଙ୍କର ଅଠରଟି ଯାକ ପୁଅଙ୍କୁ ଅବିଳମ୍ବେ ଖାସୁ କରାଯାଉ ।

ପତ୍ରିକାମାନଙ୍କର କ୍ରମବଦ୍ଧ ଆକ୍ରମଣରେ ଖାସୁସାହାବ ପ୍ରମାଦ ଗଣିଲେ । ଏ ଷ୍ଟ୍ରେଟା ଦଲାଲ ଉତ୍ତ୍ୟକ୍ତ ଲୋକଙ୍କଠାରୁ ମାଡ଼ ଖାଇବା ଫଳରେ ଆଉ କେହି ଲୋକ ସଂଗ୍ରହ କରିବାକୁ ଗଲେନାହିଁ । କ୍ରମେ ଖାସୁ-କେନ୍ଦ୍ରଟା ଖାସୁଆ ଖାସୁକେନ୍ଦ୍ରରେ ପରିଣତ ହେଲା । ଅର୍ଥାତ୍ ଖାସୁ-କେନ୍ଦ୍ରର ଖାସୁଆ ପ୍ରଜନନ ଶକ୍ତି ବିଲ୍‌କୁଲ୍ ଲୋପ ପାଇଲା । ମାନେ ଖାସୁକେନ୍ଦ୍ର ଭିତରୁ ଆଉ ଖାସୁଆ ବାହାରିବାର ଦେଖାଗଲା ନାହିଁ ।

ଗୃକଷଠା ଗଲା ବୋଲି ଖାସୁସାହାବ ନିଶ୍ଚିନ୍ତ ହୋଇ ଯାଇଥିଲେ । କିନ୍ତୁ ମନ୍ତ୍ରୀ ଅବସ୍ଥା ବୁଝି ତାଙ୍କ ଗୃକଷଠାକୁ ରଖିଲେ । ବିଜ୍ଞାପନ ଶିକାରି-ମାନଙ୍କୁ ବିଜ୍ଞାପନ ଦେଇ ପାଗଳା ପାଗଳ କରି ପୁଣି କାମ ସୁରୁ କରିବାକୁ ଉପଦେଶ ଦେଲେ ।



# ଅଉଲ୍ ନମ୍ବର ଚୋର

ବସନ୍ତୋତ୍ସବ ସମିତିର ସଭ୍ୟମାନେ ସେଥର ଚୋରି ଉତ୍ସବଟା କପରି ପାଳନ କରାଯିବ ତାହା ସ୍ଥିର କରିବାକୁ ସମିତି ଗୃହରେ ଏକତ୍ରିତ ହେଲେ । ପୂର୍ବ ବର୍ଷର କୁତ୍ସିତ ଅଭଦ୍ରତାସବୁ ବର୍ଣ୍ଣନାକରି ସେଗୁଡ଼ିକୁ ଘୃଣାର ସହିତ ପରିତ୍ୟାଗ କରିବାକୁ ବଦ୍ଧପରିକର ହେବାଲାଗି ଆହ୍ୱାନ ଦେଲେ । ଜଣେ ସଭ୍ୟ କହିଲା—"ଛି-ଛି ସେ ଚଣ୍ଡିଆ ମେସ୍‌ର ସାଧୁଆ ଆରବର୍ଷ ଯେଉଁ କାଣ୍ଡ କଲା ତାହା ଏବେ ବି ମନେପଡ଼ିଲେ ପେଟରୁ ଭାତ ବାହାରି ଆସିବ । ଏଡ଼େ ଅସନା ଲୋକ ପୁଣି ଦୁନିଆରେ ଥାଆନ୍ତି ତାହା କେହି ବିଶ୍ୱାସ କରିବେନି । ଅଲକ୍ଷଣାଟା କଅଣ କଲାନା—ଗୋଟାଏ ମେହେନ୍ତରାଣୀକୁ ପଇସା ଦେଇ ଗୋଟାଏ ବଡ଼ ଭାର ହାଣ୍ଡିରେ ଗଅଣ୍ଡି ହାଣ୍ଡିଏ ଗୁହ ଓ ପାଣି ଫେଣ୍ଟି ରଖିଲା । ତା ଉପରେ ଭାର ହାଣ୍ଡିରେ ଦେଲାପରି ଖଲିପତର ବାନ୍ଧିଦେଇ ହାଣ୍ଡି ପେଟରେ ହଳଦୀ, ସିନ୍ଦୂର ମାରିଦେଲା । ନିଜେ ବାଡ଼ଟାଏ ଧରି, ବୁଢ଼ା ସାଜ ଗୋଟିଏ ମୁଣ୍ଡ ବୋହିଆ ମୂଲିଆ ଡାକି ଆଣିଲା । ତା ସହିତ ସେ ଭାର ହାଣ୍ଡିଟା ମୁଣ୍ଡାଇ ତା ନାତୁଣୀ ଘରକୁ ଯିବାପାଇଁ ଦରଦାମ କଷିଲା । ଖୁବ୍ ମୂଲଚାଲ ପରେ କଥାଟା ଦୁଇ-ଟଙ୍କାରେ ଛିଣ୍ଡିଲା । ସାଧୁଆ ଠୋ ପଟାସ୍ ଦୁଇଟା ଚକଚକିଆ ଟଙ୍କା ଧରେଇ ଦେଲା । ମୂଲିଆଟି ତାକୁ ମୁଣ୍ଡରେ ମାରି ଗାଞ୍ଜିଆରେ ଭରିଦେଲା । ଅଧ ଘଣ୍ଟାର ବାଟ, ଠିକଏ ବେଇଗି ବେଇଗି ଗଲେ ସେଇ ନିରମା ଖରାରେ ବି ଫେରି ଆସିହେବ । ସାଧୁଆର ନିର୍ଦ୍ଦେଶରେ ମୂଲିଆଟି ହାଣ୍ଡିଟି ମୁଣ୍ଡେଇ ଆଗେ ଆଗେ ଚାଲିଲା ଆଉ ସାଧୁଆ ବାଡ଼ଟା ଧରି ବୁଢ଼ାଟିଏ ପରି ଠୁକୁରୁ ଠୁକୁରୁ ହୋଇ ପଛେ ପଛେ ଚାଲିଲା । ଠିକ୍ ବାଲୁବଜାର ସଙ୍ଗତ ମଠରେ ଗଲା ଯେମିତି ପଡ଼ିଛି ଲକ୍ଷ୍ମୀଛଡ଼ାଟା ପଛଆଡ଼ୁ ବାଡ଼ରେ

ହାଣ୍ଡିଟାକୁ ଟେକା କରି ପିଟିଦେଇ ଦେଇଛୁ ସେଇଥି ଗଳିଏ ଗଳିଏ । ମୁହୂର୍ତ୍ତକ ମଧ୍ୟରେ ସିନେମା ଶବ୍ଦ ବଦଳିଗଲା ପରି ସେ ଥାନର ଶବ୍ଦଟା ବଦଳିଗଲା । ହାଣ୍ଡିଟି ଦୁଇଗଡ଼ ହୋଇଯିବାରୁ ପାଣିଆ ଗୁହରେ ମୂଳିଆଟି ଏକାବେଳକେ ଗାଧେଇ ପଡ଼ିଲା । ମୂଳିଆ କଥା ଗୁଡ଼ । ଆଖ ପାଖର ଦୋକାନୀମାନେ ହୋ ହୋ ରଡ଼ ଛାଡ଼ି, ଅ-ଅ-ଓଟାରି ହୋଇ ଥାନଟାକୁ କମ୍ପେଇ ଦେଲେ । ବଶକଟିଆ ଦୁର୍ଗନ୍ଧରେ ଥାନଟା ଫାଟି ପଡ଼ିଲା । କେତେକ ଦୋକାନ ବୁଜିଦେଲେ । ରେଡ଼ିଓ ଦୋକାନୀ କାଲୁମିଆଁଟା ବଚରା ଭୋଲେ ବରିଆନି ଠୁଙ୍କିଥିଲା । ପେଟରେ ସମ୍ଭାଳି ରଖି ପାରିଲା ନାହିଁ । ଯେମିତି 'ଅ' କରି ଦେଇଛି, ହୋମ୍ ପାଇପ୍‌ରେ ପାଣି ବାହାରିଲା ପରି ପେଟରୁ ସବୁତକ ବରିଆନି ଗଳ ଗଳ ହୋଇ ରାସ୍ତା ଉପରକୁ ପାଟି ବାଟେ ଗଳି ପଡ଼ିଲା । ମୁହଁ ଧୋଇସାରି ଅବଶୋଷରେ କହିଲାଗିଲା—ଏଃ ଅସନାଟା ମୋର ଖାଇଥିବା ଆଠଟଙ୍କାର ବରିଆନି ମାଟି କରିଦେଲା । ଖେଚେଡ଼ିଆ ଟୋକାପଲ କେଉଁଠି ଥିଲେ ଗଣଗଣିଆ ମାଛି ପରି ଆସି ବେଢ଼ିଗଲେ । ନାକରେ ଲୁଗା ଦେଇ କିଏ କହୁଥାଏ—ଆରେ ପାଣିଆ ଗୁଡ଼ ହାଣ୍ଡିଟା ଭାଙ୍ଗିଗଲାରେ । କିଏ କହୁଥାଏ—ନାହିଁବେ ଅଟକାଳି ହାଣ୍ଡି ଭାଙ୍ଗିଗଲା । ଆଉ କିଏ କହିଲା—ନାହିଁବେ ଡାଲି ହାଣ୍ଡି । ସମସ୍ତଙ୍କୁ ଖେଳ ଲାଗିଥାଏ । ମୂଳିଆଟିର କିନ୍ତୁ ଜୀବନ ଯାଏ କି ରହେ । ସେ ବଚରା କଥା କହିପାରୁ ନ ଥାଏ । ପାଣିଆ ଗୁହ ତ ମୁହଁ ପାକ ହୋଇଥାଏ । କଥା କହିବାକୁ ଓଠ ମେଲି କଲାମାତ୍ରେ ପାଣିଆ ଗୁହ ପାଟିରେ ପଶି ଯାଉଥାଏ । ଅ, ଅ ହୋଇ ସେତେବେଳକୁ ବ ଝୁଲକା ବାନ୍ତି ବ ତାର ହୋଇଗଲାଣି । ଟିକିଏ ଆଗରୁ ରାସ୍ତା କଡ଼ରେ ଗୋଟାଏ ପାଇପ୍‌ରୁ ପାଣି ବାହାରୁଥିଲା । ଜୀବନ ବିକଳରେ ସେଠାକୁ ଗାଧୋଇବାକୁ ଗଲାରୁ ସେଠାର ଲୋକେ ତାକୁ ଦୂର୍ ଦୁର୍ କରି ଘଉଡ଼ି ଦେଲେ । ଜଣେ ଦୟାକରି ମୁହଁଟାକୁ ଧୋଇ ଦେବାଲାଗି ତା ମୁଣ୍ଡ ଉପରେ ବାଲଟିଏ ପାଣି ଇଡ଼ିଦେଲା ଓ ତାକୁ ଥାନାକୁ ଯାଇ ସେଠାରେ ଏତଲା ଦେବାକୁ ବତାଇ-ଦେଲା । ମୂଳିଆଟି ତା କଥା ମାନି ଫେରାଦ ହେବାକୁ ଥାନା ଭିତରେ ପଶିଗଲା । ଜଗୁଆଳି ସିପେଇଟା ମୁହଁରେ ବହୁତ ଦୂର୍ ଦୂର୍ କଲା କିନ୍ତୁ ତାକୁ ଧରି ଅଟକେଇ ପାରିଲା ନାହିଁ । ଜାଣୁ ଜାଣୁ କିଏ ହାତରେ ଗୁହ

ମାଗିବ ଭଲ ! ଦାରୋଗା ବାବୁ ଗୁ' କପେ ପିଉଥିଲେ । ସେତକ ବ ତାଙ୍କ ପେଟରୁ ବାହାର ଆସିଲା । ବ ତିନଜଣ ସିପେଇ ଠେଙ୍ଗା ଆଗରେ ତାକୁ ପେଲ ପେଲ ପଦାକୁ ନେଇ ଆସିଲେ । ଦାରୋଗାବାବୁଙ୍କର ମନରେ ଦୟା ହେଲା । ସେ ନାକରେ ରୁମାଲ ଦେଇ ତା କଥା ବୁଝିବା ଲାଗି ପଦାକୁ ଗୁଲ ଆସିଲେ । ସବୁକଥା ବୁଝିସାର ସିପେଇମାନଙ୍କୁ ତାର ଧୂଆ ଧୋଇର ବ୍ୟବସ୍ଥା କରିବାକୁ କହ୍ନ ଘର ଭିତରକୁ ପଳେଇଲେ । ଦାରୋଗାଙ୍କ ଦୟାରୁ ବ ତାକୁ ଗୋଟାଏ ବାସନା ସାବୁନ ଓ ଅତର ଶିଶି ଦିଆଗଲା । ବ ଗୁରବ୍ଦନ ଯାଏ ମୂଲଆଟି ପାଣିଆ ତାଳ ଦେଖିବାମାତ୍ରେ ଅ-ଅ ହେଲା । ସମସ୍ତେ ସାଧୁଆକୁ କାଇଲ୍ କର ମୂଲଆକୁ ଆଉ କଛୁ ଟଙ୍କା ଦେଲେ । ଛି ଛି ଏଗୁଡ଼ାକ ତ ହୋର ଖେଳ ନୁହେଁ ଏଗୁଡ଼ାକ ମଣିଷମାରୁ କାମ । ହୋରି ଖେଳନ୍ତୁ ମନ ଆନନ୍ଦ କରିବାକୁ । ଏଗୁଡ଼ା ତ ଆଉ ଆନନ୍ଦ ନୁହେଁ ଗୋଟାଏ ଲୋକକୁ କେବଳ କଲବଲ କରିବା ସାର । ଏଥର ହୋରରେ ଏ ସବୁର ଦୂରରେ ରହିବାକୁ ହେବ ।

ଆଉ ଜଣେ ସଭ୍ୟ କହିଲା—"ସତେ ହୋର ଖେଳବାକୁ ଯାଇ ଲୋକେ କ ନାସନା କାମ ନ କରୁଛନ୍ତି ! ଏ—ହେ ! ଆରଥର ବାସେଳ ସାହିର ଟୋକାଏ ଯାହା କରିଛନ୍ତି ନା—ତାହା କାନ ଶୁଣି ନ ଥିବ । ବଡକଟିଆତକ ଠାକୁର ଘର ଆଗରେ ୮ ଫୁଟ ଲମ୍ବ, ୪ ଫୁଟ ଚଉଡ଼ା ଓ ୨ ଫୁଟ ଗହୀରା ଗୋଟାଏ ଗାତ ଖୋଳ ତା ନାଁ ଦେଲେ ନର୍କକୁଣ୍ଡ । ଯେଉଁଠି ଯେତେ ଦୁର୍ଗନ୍ଧ ପଚାସଡ଼ା ଜନଷ ଥିଲା ତାକୁ ସେଥିରେ ପକାଇଲେ । ନର୍ଦ୍ଦମା ପାଣି, ପାଇଖାନାର ମଳମୂତ୍ର ସବୁକଛୁ ସେଥିରେ ପକାଗଲା । ବାଲଟି ବାଲଟି ପାଣି ଅଜାଡ଼ି ତଙ୍କରେ ଗୋଳେଇ ଦିଆଗଲା । ଘାଣ୍ଟକୁ ରଙ୍ଗୀନ୍ କରିବା ଲାଗି କଛୁ ନେଳ ଚକଟି ରଙ୍ଗ ବ ତହିଁରେ ମିଶେଇ ଦିଆଗଲା । ସବୁ ସରିଲା ପରେ 'ପ୍ରସ୍ତୁତ' ନଶାଣ ଦିଆଗଲା । ସଭ୍ୟମାନେ ଯମଦୂତ ପରି ପାପୀମାନଙ୍କ ସନ୍ଧାନରେ ରହିଲେ । ଯିଏ ଧାର୍ମିକ, ତା ଆଡ଼କୁ ତିନି ଗୁରି ଜଣ ଦଳ ବାନ୍ଧି ଆସୁଥିବାର ଦେଖିଲେ ହୁରୁଡ଼ା ଗାଈ ପରି ଡ଼ିଆଁ ମାର ପଳଉଥିଲା । କାରଣ ସେ ନର୍କକୁଣ୍ଡର ଭୟ ବିଷୟରେ ସଚେତନ ଥିଲା ।

ପାପୀ ଯିଏ ସେ ନର୍କକୁଣ୍ଡ ବିଷୟରେ ବିଶେଷ ଗୁରୁତ୍ୱ ନ ଦେଇ ବେଧଡ଼କ ଠିଆ ହୋଇଥାଏ । ଏମିତିଆ ଗୋଟାଏ ଟୋକା ଦେଖିଲେ ତିନି ଗୁରିଜଣଯାକ ତାହାଳ କୁକୁର ପରି ତାକୁ ମାଡ଼ି ବସନ୍ତି । ବାସ୍ ଦୁଇ ଗୋଡ଼କୁ ଦି'ଜଣ ଓ ଦୁଇ ହାତକୁ ଦି'ଜଣ ଧରି ମୁର୍ଦାର ଟେକ ଆଣିଲ୍ ପରି ଶୂନ୍ୟେ ଶୂନ୍ୟେ ଟେକ ନିଅନ୍ତି । ବେଶି ଛଟପଟ ହେଲେ ଅଣ୍ଟା ଓ ଜଙ୍ଘକୁ ଆଉ ଦି ଗୁରିଜଣ ଆଣ୍ଠରେ ଧରି ନିଅନ୍ତି । ସମସ୍ତେ ନର୍କକୁଣ୍ଡ ଭିତରେ ପଶି ତାକୁ ସେମିତି ଧରି ଥାଆନ୍ତି । ଏକ, ଦୁଇ, ତିନି କହି ସମସ୍ତେ ଏକ ସଙ୍ଗରେ ଛାଡ଼ି ଦିଅନ୍ତି । ପାପୀ ଧପାସ୍ କରି ଗୋଟାସୁଦ୍ଧା ନର୍କକୁଣ୍ଡରେ ପଡ଼ି ଜୁଡ଼ୁବୁଡ଼ୁ ହୋଇଯାଏ । ତାପରେ ଉଠି ମୁହଁ ହାତ ଧୋଇ ନିଜେ ଖୋଦ୍ ଯମଦୂତ ବନିଯାଏ ଓ ଆଉ ପାପୀଙ୍କୁ ପକଡ଼ିବାରେ ଅନ୍ୟମାନଙ୍କ ସହ ଯୋଗଦିଏ । ରାମ, ରାମ ! ଏଗୁଡ଼ାକ ମଣିଷ କାମ ନୁହଁ, ପଶୁଙ୍କ କାମ । ଇସ୍ କି ନାସନା କାମ !"

ବସନ୍ତୋତ୍ସବ ସମିତିର ମାର୍ଜିତ ରୁଚିସମ୍ପନ୍ନ ଭଦ୍ର ସଭ୍ୟମାନେ ଏସବୁ ଘୃଷ୍ଟ କାମରୁ ବହୁତ ଦୂରରେ । ଏପରି ଘୃଣା ଉଦ୍ରେକକାରୀ କାର୍ଯ୍ୟ ସେମାନଙ୍କ ପକ୍ଷରେ ବିଲକୁଲ୍ ଅସମ୍ଭବ । ଗଲା ସେ କଥା କାଟ ଖାଇଗଲା । ପୁଣି କେଉଁ କଥାଟି ହେବ ସେଇ ବିଷୟରେ ଚର୍ଚ୍ଚା ଚାଲିଲା । କିଏ କହିଲା ପିଚ୍‌କାରି ମାରାମାରି ହେବ । କିଏ କହିଲା ନା—ରଙ୍ଗ ବୋଳା-ବୋଳି ହେବା । ବୁଦା ଭିତରେ ଗୋଟାଏ ନେକେଡ଼ା ବାଘ ଲୁଚି ରହିଥିଲା ପରି ସଭ୍ୟମାନଙ୍କ ଭିତରେ ଜଣେ କମ୍ୟୁନିଷ୍ଟ ଛପି ରହିଥିଲେ । ସେ ଗର୍ଜନ କରି ଉଠିଲେ—ନା ସେ ରଙ୍ଗ ଫୋପଡ଼ା କାମ ଚଳିବ ନାହିଁ । ଏଗୁଡ଼ାକ ଲୁଗା ବେପାରୀ ପୁଞ୍ଜିପତିଙ୍କ ଷଡ଼ଯନ୍ତ୍ର, ଗୁଲବାଜି, ଜାଲଫିସାଦ, ମାରପେଞ୍ଚ, ଶଇତାନ ଛଡ଼ା ଆଉ କିଛି ନୁହେଁ । ଲୁଗା ସବୁ ରଙ୍ଗରେ ନଷ୍ଟ ହୋଇଗଲେ ସେମାନଙ୍କର ଆହୁରି ଅଧିକ ଲୁଗା ବିକ୍ରି ହେବ । ବେଶି ଲୁଗା ବିକ୍ରି ହେଲେ ମୁନାଫାଖୋରଙ୍କ ବେଶି ମୁନାଫା ହେବ । ଏମାନଙ୍କ ଦାଉରେ ସର୍ବହରାମାନେ ପେଷି ହୋଇ ଯାଉଛନ୍ତି । ଏଣେ ରଙ୍ଗ ବିକି, ଲୁଗା ନଷ୍ଟ କରି ମୁନାଫା ତେଣେ ଲୁଗା ବିକି ମୁନାଫା । ନା ନା ଆମେ ସେ ଘୃଣ୍ୟ ଷଡ଼ଯନ୍ତ୍ରର ଶିକାର ହେବୁନାହିଁ ।

ଅପ୍ରତ୍ୟାଶିତ ଗୁଡ଼ାଏ ନାଲ୍‌ଝିଣ୍ଟିଆ ଶବ୍ଦ ଓ ସେହି ସଭ୍ୟଙ୍କର କଷିନେଡାଳିଆ ବକ୍ତୃତା ଶୁଣି ଅନ୍ୟମାନେ ତା ମୁହଁକୁ ଚାହିଁ ହୋଇ କିଛି ସମୟ ଚୁପ୍ ରହିଲେ । କଥାଟା କି କେତେକଙ୍କ ମନକୁ ଅବଶ୍ୟ ଅନ୍ୟ କାରଣରୁ ପାଇଲା, ସମସ୍ତେ ଚୁପ୍ ରହିଲେ ଏମିତିଆ ହୋରଖେଳ ହେବ ଯେ କାହାର କ୍ଷତି ହେବନି । ସମସ୍ତେ ଆନନ୍ଦରେ ତାକୁ ସ୍ୱାଗତ କରିବେ । ଗୋଟାଏ ଆନନ୍ଦର ବାତାବରଣ ଚାରିଆଡ଼େ ଖେଳିଯିବ । ବହୁ ଯୁକ୍ତିତର୍କ ପରେ ଠିକ୍ ହେଲା—ବଡ଼ ସକାଳୁ ସଭ୍ୟମାନେ ସବୁ ବନ୍ଧୁମାନଙ୍କୁ ସଙ୍ଗେ ନେବାକୁ ବାହାରିବେ, ପାଖରେ ଏଇସବୁ ଜିନିଷଗୁଡ଼ିକ ରହିବ । ଜଣକୁ ବନ୍ଧୁକୁ ଭେଟିବା ମାତ୍ରେ ଅତରପାଣି ଭର୍ତ୍ତି ହୋଇଥିବା ଗୋଟାଏ କାଚମାର ଫିଚକାରି ପମ୍ପରୁ ଜଣେ ତାଙ୍କ ଉପରେ ଅତରପାଣି ଛିଞ୍ଚି ଦେବ, ଆଉ ଜଣେ ସିନ୍ଦୂର ଟୋପା ଦେଲାପରି ତାଙ୍କ କପାଳରେ ଅବିର ଟୋପାଟିଏ ଦେବ, ଆଉ ଜଣେ ଫୁଲହାରଟିଏ ପିନ୍ଧେଇ ଦେବ । ଶେଷକୁ ଜଣେ ତାଙ୍କ ପାଟିରେ ସନ୍ଦେଶଟିଏ ଖୁଆଇଦେବ । ତାପରେ କୁଣ୍ଢିଆ କୁଣ୍ଢେଇ ହୋଇ ଆଉ ଜଣକ ପାଖକୁ ଯିବେ । ନୂଆ କଥାଟାଏ କରୁଛନ୍ତି ବୋଲି ସମସ୍ତେ ଆନନ୍ଦରେ ଫାଟି ପଡ଼ିଲେ । କେତେଜଣଙ୍କୁ ରାତିରେ ନିଦ ହେଲାନାହିଁ । ଅନେକଙ୍କର ରାତି ଚାରିଟାରୁ ନିଦ ଭାଙ୍ଗିଗଲା ।

ସକାଳ ୭ଟାରୁ ସମସ୍ତେ ଜିନିଷପତ୍ର ଧରି ରିକ୍ସାରେ ବାହାରି ପଡ଼ିଲେ । ଯାତ୍ରା ଆରମ୍ଭରେ ଅବଶ୍ୟ ଗୋଟିଏ ମାର୍ଜାର ଶିଶୁର ଛିଙ୍କ ଶ୍ରୁତିଗୋଚର ହୋଇଥିଲା । ସନ୍ଦେଶ ହାଣ୍ଡିଟି ଧରିବା ଲାଗି ବକଲା ପଣ୍ଡାର ଜିଦ୍‌କୁ ସମସ୍ତେ ସନ୍ଦେହ ଚକ୍ଷୁରେ ଦେଖିଲେ । ବହୁ ବାଦବିବାଦ ପରେ ହାଣ୍ଡିଟି ଅଖିଆ ପଣ୍ଡା ମାରଫତରେ ରହିଲା । ପହିଲେ ପଡ଼ିଲା ଅଧ୍ୟାପକ ଦାଶଙ୍କ ଘର । ଖାଉଡ଼ିଟାଯାକ ତାଙ୍କର ସ୍ତୁତି, ଦାଶଙ୍କର ତାରିଫ୍ ଓ ସହୃଦୟତାରେ ସଭ୍ୟମାନେ ଖୁବ୍ ଉତ୍ସାହିତ ହୋଇଗଲେ । ବହୁଆଡ଼ ବୁଲି ସାରିବା ପରେ ସ୍ଥିର କଲେ—ଏଡ଼େବଡ଼ କାମଟାଏ, ଯଦି ଲୋକେ ଖବର କାଗଜରେ ନ ପଢ଼ିବେ ତେବେ ସବୁ ବୃଥା ହୋଇଯିବ । ଏଣୁ ସବୁ ଖବର କାଗଜ ସମ୍ପାଦକମାନଙ୍କୁ ହୋରିସଙ୍ଗେ ନେଇ ଜଣେଇବା ଦରକାର । କଥାଟା ଯଥାର୍ଥ ଜଣାଗଲା । ସମସ୍ତେ ସମ୍ପାଦକମାନଙ୍କ

ପାଖକୁ ଧାଇଁଲେ । ୧ମ ଓ ୨ୟ ସମ୍ପାଦକଙ୍କ ପାଖରେ ମିଳନଟା ବଡ଼ ପ୍ରୀତିପଦ ହେଲା । ୩ୟ ସମ୍ପାଦକଙ୍କ ପାଖରେ ବିରାଡ଼ି ଛୁଙ୍କର ଫଳାଫଳଟା ବେଶ୍ ଜଣା ପଡ଼ିଗଲା । ବହୁ ଅନୁନୟ ବିନୟ ପରେ ସମ୍ପାଦକ ପଦାକୁ ମୁଣ୍ଡ କାଢ଼ିଲେ । ଜଣେ ଧୈର୍ଯ୍ୟଚ୍ୟୁତ ସଭ୍ୟ ଫୁସ୍ ଫୁସ୍ କରି ଜଣକ କାନରେ କହିଲେ ଯେ ଯେତେ ପଦୁଁତୋଳା ବୋଲି ହେଲା ସେଥିରେ ନାଗ ତ ନାଗ, ଢେମଣାଟାଏ ବି ଗାତରୁ ବାହାରି ଆସି ଥାଆନ୍ତା, ଏତେବେଳକୁ ମହାପ୍ରଭୁ ମୁହଁ ଦେଖାଉଛନ୍ତି ।

ସମସ୍ତଙ୍କର ଆଗମନର ଉଦ୍ଦେଶ୍ୟ, କର୍ମାରମ୍ଭର ଉଦ୍ୟମ ଜାଣିବା ମାତ୍ରେ ସମ୍ପାଦକଙ୍କୁ ଆଉ ସମ୍ଭାଳେ କିଏ ? ଚଉକି ଉପରୁ ଡିଆଁକି ଉଠି, ଘର ଭିତରେ ଏପାଖ ସେପାଖ ହୋଇ ଗର୍ଜନ କରି ଲାଗିଲେ— "ଏଗୁଡ଼ାକ ମୁଁ ଘୃଣାକରେ । କଦର୍ଯ୍ୟ, ଅଭଦ୍ର, ଅସାମାଜିକ କୁସଂସ୍କାର ଉପରେ ମୁଁ ପଦାଘାତ କରେ, ମୁଁ-ମୁଁ-ମୁଁ ନା—ନା—ଯାଅ ଦୂରହୁଅ ଏଠୁଁ ।"

ଜଣେ ଖୁବ୍ ସାହସ ବାନ୍ଧି କହିଲା—"ଆଜ୍ଞା, ଏଥିରେ ତ କୌଣସି କ୍ଷତି ହେବାର ସମ୍ଭାବନା ନାହିଁ ବରଂ ଏହା ଏକ ଦୃଢ଼ ସାମାଜିକ ସୌହାର୍ଦ୍ଦ୍ୟ ପ୍ରତିଷ୍ଠା ଦିଗରେ ସାହାଯ୍ୟ କରିବ ।"

ନିଆଁରେ ଯେମିତି କିଏ କିରୋସିନି ଭିଡ଼ିଲା । ରାଗରେ କମ୍ପି ଯାଇ ସେ ପୁଣି ଗର୍ଜି ଉଠିଲେ—"କଅଣ ହେଲା—ସୌହାର୍ଦ୍ଦ୍ୟ ! ଚୁପ୍‌କର । ବନ୍ୟା, ମରୁଡ଼ିରେ ଲୋକ ଖାଇବାକୁ ପାଉ ନାହାନ୍ତି, ତୁମେ ଅତରପାଣି, ଫୁଲମାଳ ପକାଇ ସୌହାର୍ଦ୍ଦ୍ୟ ପ୍ରତିଷ୍ଠା କରିବ ? ଦୂରହୁଅ, ପଳାଅ ମୋ ଆଗରୁ, ମୁଁ ତୁମ୍ଭମାନଙ୍କ ଅବିବେକୀ କାର୍ଯ୍ୟଗୁଡ଼ାକ ସହ୍ୟକରି ପାରୁନି । ଯାଉଛ ନା ଦରୁଆନକୁ ଡାକିବି ?"

ହଠାତ୍ ଏପରି ଅନଭ୍ରୁତ ଏକ ବଜ୍ର ପାଇଁ ସଭ୍ୟମାନେ ପ୍ରସ୍ତୁତ ନଥିଲେ, କାହାରି ମୁଣ୍ଡକୁ କିଛି ଗୋଟାଏ ଉତ୍ତର ପଶିଟିଲା ନାହିଁ ।

ଯାହାବା କଏ ପଦେଅଧେ କହୁ ଥାଆନ୍ତେ, ତାଙ୍କୁ କାଳସୀ ପରି ନାଚବା ଦେଖି ଗୁନିଆରେ ପଳେଇ ଆସିଲେ ।

ସନ୍ଧ୍ୟାରେ ସମିତି ଘରେ ସମସ୍ତେ ଜମା ହେଲେ । ସକାଳ ଖେଳରେ ଯୋଗଦେଇ ନ ଥିବା ଗଦେଇ ନାହାକ ସକାଳ ହାଲଚାଲ ଶୁଣିବା ଲାଗି ଆସିଥିଲା । ବିରସ ବଦନରେ ଯେତେବେଳେ ସଭ୍ୟମାନେ ଏ ଉତ୍ସବକୁ ଉଠେଇଁ ଦେବାର ପ୍ରସ୍ତାବ କଲେ ସେ ଆଶ୍ଚର୍ଯ୍ୟ ହୋଇଯାଇ କାରଣ ପଚାରିଲା । ବନ୍ୟା, ମରୁଡ଼ି ପ୍ରପୀଡ଼ିତ ଉତ୍କଳୀୟମାନଙ୍କ ପାଇଁ କୋହ ଉଠୁଥିବା ସମ୍ପାଦକଙ୍କ ଭର୍ତ୍ସନା ଓ କାଳସୀ ନୃତ୍ୟ ବିଷୟରେ ସବୁକଥା ଶୁଣିବା ପରେ ସେ ସମସ୍ତଙ୍କୁ ଉପହାସ କରି କହିଲା—"ହଇରେ ସମସ୍ତଙ୍କ ମୁହଁରେ ମଣ୍ଡା ପଶିଥିଲା । କେହି କିଛି କାଠପାଣି ଲଗେଇ ପାରିଲ ନାହିଁ ? ଆରେ ତାଙ୍କୁ ପଚାରିଲ ନାହିଁ—ବନ୍ୟା ମରୁଡ଼ିରେ ଲୋକ ତ ଖାଇବାକୁ ପାଉ ନାହାନ୍ତି, ସେ କିଆଁ ବିଦନକୁ ଦୁଇକଲେ ବେହିମାଛ ଭଜା ଠୁଙ୍କି ଦେଉଛନ୍ତି । ପଚାରିଲନି ଲୋକଙ୍କୁ ତ କନା ମିଳୁନି, ସେ କିଆଁ ପଚଶଠଙ୍କିଆ ଧୋତି ପିନ୍ଧୁଛନ୍ତି । ପଚ୍ଛବୁଦ୍ଧିଆଗୁଡ଼ାକ ! ସେଠୁ ପଳେଇ ଆସି ଏଠି କାନ୍ଦୁଛନ୍ତି । କରେ ଗୈରକୁ ମାନକରି ଖପରରେ ଖାଇବ ପରା ! ଆମ ଉତ୍ସବ ବନ୍ଦହବ କିଆଁ ? ସେଇ ଜଣକ ପାଖରେ ହାରିଗଲ ବୋଲି ଉତ୍ସବ ବନ୍ଦ ରଖିବ ? ତାଙ୍କୁ ମୁଁ ସତରପଟ ଶତାକାଟି ଜତାପଟ ନେଇ ଆସିବ ।"

କଥାଟାକୁ ସମସ୍ତେ ନାପସନ୍ଦ କଲାରୁ ସେ ନିଶରେ ହାତମାରି ପୁଣି କହିଲା—"ତାଙ୍କ ମୁହଁରେ ମୁଁ ଅବିର ବଦଳରେ ଯଦି କଳା ନ ବୋଳିଛି ତେବେ ଏ ନିଶରୁ ଫାଳେ କାଟିଦେବ ।" ସେଦିନ ବାଜି ମରାମରିଟା ଖୁବ୍ ଜୋରରେ ହୋଇଗଲା । ଫଳାଫଳକୁ ସମସ୍ତେ ଠାକି ରହିଲେ ।

× × ×

ସମ୍ପାଦକ ନିଜ କୋଠରୀରେ ଏକୁଟିଆ ବସି ଗୋଟାଏ କିଅଣ ପଢି଼ ଲାଗି ଥାଆନ୍ତି । ଠିକ୍ ଏତିକବେଳେ ଗଦେଇ ନାହାକ ଗୁଲ୍‌କରି ଘର ଭିତରକୁ ପଶିଯାଇ ଅତି ଭକ୍ତିର ସହ ସରୁ ନମସ୍କାରଟାଏ ପକାଇଲା ।

ସମ୍ପାଦକେ ପ୍ରତି ନମସ୍କାର କରି ପରିଚୟ ଓ ଆଗମନର ଅଭିପ୍ରାୟ ପଗ୍ଭରିଲେ । ଗଦେଇ ଭକ୍ତିରେ ଗଦଗଦ ହୋଇଯାଇ ଆରମ୍ଭ କଲା—"ଆଜ୍ଞା, ଆପଣଙ୍କର କାଲିର ସମ୍ପାଦକୀୟଟି ପଢ଼ି ମୁଁ ଏକାବେଳକେ ଅଭିଭୂତ ହୋଇ ପଡ଼ିଲି । ଗ୍ଭବିଲି ଦେଶର ଏ ଘଡ଼ିସନ୍ଧି ବେଳରେ ଏଭଳି ଅଗ୍ରଲେଖ ବିପଦଗ୍ରସ୍ତ ପୋତର ବର୍ତ୍ତିଖୁଣ୍ଟ ପରି ହେବ ।"

ସମ୍ପାଦକ ବାଧାଦେଇ କହିଲେ—"ବସନ୍ତୁ, ବସନ୍ତୁ—ଆରେ ବସନ୍ତୁ ନା—ଆରେ ହରିଆ ! ଭଦ୍ରଲୋକ ଆସିଛନ୍ତି ବ୍ୟବସ୍ଥା କର ।" ତାପରେ ଅଳ୍ପ ହସି କହିଲେ—"ମୁଁ କବା ଛାର, କି ଅଗ୍ରଲେଖ ବା ଲେଖୁଛି ।"

ଗଦେଇ ଦେଖିଲା ତା ଔଷଧପାନଟା ଠିକ୍ କାମ କରୁଛି । ସାଙ୍ଗେ ସାଙ୍ଗେ ସେ ଦ'ଗୁଣ ମାତ୍ରା ଚଢ଼େଇ କହିଲା—"ଆଜ୍ଞା ଆପଣଙ୍କ ପକ୍ଷେ ଏଇଟା କହିବା ସ୍ୱାଭାବିକ । ନ ଜାଣି କହନ୍ତି "ନମ୍ରନ୍ତି ଫଳନୋବୃକ୍ଷାଃ", ନମ୍ରନ୍ତି ଗୁଣିନୋଜନାଃ ।" ଆପଣଙ୍କୁ ପାଇ ଆମ ରାଜ୍ୟ ଧନ୍ୟ ଧନ୍ୟ ହୋଇଛି । ଆପଣଙ୍କ କଲମ ନିକଟରେ ମୁଖ୍ୟମନ୍ତ୍ରୀଙ୍କଠାରୁ ମୂର୍ଖ ଚପରାଶି ପର୍ଯ୍ୟନ୍ତ ସମସ୍ତଙ୍କର ମସ୍ତକ ଅବନତ, ଦୁର୍ନୀତିଗ୍ରସ୍ତ ଲୋକେ ପୋଲିସ୍‌କୁ ଯେତେ ଭୟ ନ କରନ୍ତି; ଯେତେ ବେଶି ଭୟ କରନ୍ତି ଆପଣଙ୍କ କଲମକୁ ।"

"ହେ ହରିଆ ! ଆରେ ଏତେବେଳଯାଏ କଅଣ କରୁଛୁ । ଆରେ ଚଞ୍ଚଳ ଆଣ, ଅଳସୁଆଟା କୋଉ କାମରେ ପଟୁ ନୁହେଁ ।"

କିଛି ସମୟ ପରେ ହରିଆ ଗୁହା, କେକ୍, ବିସ୍କୁଟ ନେଇ ଆସିଲା । ଗଦେଇ ସେଗୁଡ଼ାକ ନ ଦେଖିଲା ପରି ହୋଇ ବକି ଲାଗିଥାଏ—"ଆଜ୍ଞା, ଆଉ କେଉଁ ରାଜ୍ୟ ହୋଇଥିଲେ ଲୋକେ ଆପଣଙ୍କୁ ନେଇ ରାଷ୍ଟ୍ରପତି ଆସନରେ ବସେଇ ଥାଆନ୍ତେ । ଆମ ରାଜ୍ୟ ବୋଲି ସିନା ଲୋକେ ଆପଣଙ୍କୁ ଚିହ୍ନି ପାରିଲେ ନାହିଁ । ଆଜ୍ଞା, ଆପଣଙ୍କର କେଉଁଠି ଗୋଟାଏ ଉଚ୍ଚଗ୍ରହ କଡ଼ପଟିଆ ହୋଇ ରହିଯାଇଛି । ଆପଣ ତ ବହୁଦିନ ଧରି ଏଇ

ସ୍ତରରେ ରହିବା ଲୋକ ନୁହନ୍ତି । ଆପଣ ସବୁବେଳେ କେବଳ ଉପରକୁ ଉଠିବା ବ୍ୟକ୍ତି । ସାମୁଦ୍ରିକ ଶାସ୍ତ୍ର ଅନୁଯାୟୀ ଆପଣଙ୍କ ନାକ, କାନ, ଗାଲ ଏହା ପରିଷ୍କାର ସୂଚେଇ ଦେଉଛନ୍ତି । ମୋତେ ସବୁ ଜଳଜଳ ଦିଶୁଛି ।"

"ଆପଣ ଆଗ ଖାଇ ଦିଅନ୍ତୁ ତ, ଗୁ ଥଣ୍ଡା ହୋଇଯିବ । ଖିଆ ଆଗ ସାରନ୍ତୁ, ତାପରେ କଥାବାର୍ତ୍ତା କରିବେ ।"

ଗଡେଇ ମିନିଟ୍‌କ ମଧ୍ୟରେ ସବୁ ସାରି ପୁଣି ଆରମ୍ଭ କଲି— "ଆଜ୍ଞା ସାମୁଦ୍ରିକ ଲକ୍ଷଣ ଅନୁଯାୟୀ ଆପଣ ତ ଶୀର୍ଷସ୍ଥାନର ଅଧିକାରୀ ହେବେ । ଆପଣଙ୍କ ହାତ ଟିକଏ ଦେଖାଇବେ କି ?"

"ଆପଣ ତେବେ ଜଣେ ହସ୍ତରେଖା ବିଶାରଦ ?"

"ଆଜ୍ଞା, ଏତେବଡ଼ କଥାଟାଏ ମୁଁ କିପରି କହିବି, ଏ ଶାସ୍ତ୍ର ଅଗାଧ ସମୁଦ୍ର । ତାର ଗଭୀରତା ମାପି ବିଶାରଦ ହେବା କିଛି ସହଜ କଥା ନୁହେଁ । ମୁଁ ସାମାନ୍ୟ କିଛି କୋଶିଆ ସଂଗ୍ରହ କରିଛି ମାତ୍ର । ଆପଣମାନଙ୍କ କଲ୍ୟାଣରୁ ମୋର ଭବିଷ୍ୟକଥନ କେଉଁଠାରେ ଅସତ୍ୟ ହୋଇନି । ମୁଁ କହିଥିଲି ଗିରି ରାଷ୍ଟ୍ରପତି ହେବେ । ସେ ହେଲେ । ମାର୍କିନ୍ ବ୍ୟୋମଗୃଚାରୀମାନେ ଚନ୍ଦ୍ର ପୃଷ୍ଠରେ ଯେଉଁ ତାରିଖ, ଯେତେଟାବେଳେ ଓହ୍ଲେଇବେ ବୋଲି କହିଥିଲି ଠିକ୍ ତାହା ହେଲା । ମୋର ପ୍ରାୟ ସବୁ ଭବିଷ୍ୟତ-କଥନ ନ୍ୟୁୟର୍କ ଟାଇମ୍‌ସରେ ବାହାରିଛି ।" ଏହା କହିସାରି ସେ ସମ୍ପାଦକଙ୍କ ହାତ ଦେଖିଲା । ତାପରେ ସାଙ୍ଗରେ ନେଇଥିବା ଗୋଟିଏ ବାକ୍‌ସରୁ କାଚଟିଏ କାଢ଼ି ନାକ ଅଗ, କପାଳ, ଗାଲକୁ ତାରି ଭିତର ଦେଇ ନିରେଖି ନିରେଖି ଦେଖିଲା । ଅବାକ୍ ହୋଇଗଲା ପରି କହିଲା—ଏପରି ଚିହ୍ନ ମୁଁ ସାମୁଦ୍ରିକ ଚର୍ଚ୍ଚା କରିବା ଦିନଠାରୁ କେବେହେଲେ ଦେଖି ନ ଥିଲି । ଆସନ୍ତା ତିନି ବର୍ଷ ମଧ୍ୟରେ ଆପଣଙ୍କର ଅଚିନ୍ତନୀୟ ସୌଭାଗ୍ୟ ଲାଭ ହେବ । ଚମ ଉପରେ ରେଖାଟା ଠିକ୍ ଜଣାପଡ଼ୁନି । ଗ୍ଲାସ ନିଆଗଲେ ପରିଷ୍କାର ବାରି ହୋଇ ଯାଆନ୍ତା । ନିର୍ଦ୍ଦିଷ୍ଟ ଦିନ ମୁଁ କହି ଦେଇ ପାରନ୍ତି ।"

"ହଁ ହଁ ଆପଣ ଛୁପ ନିଅନ୍ତୁ ନା, ଆପଣଙ୍କ ଭବିଷ୍ୟ-କଥନଟା ପରଖି ହୋଇ ଯାଆନ୍ତା ।"

"ଆଜ୍ଞା, ବର୍ଷଟା ତ ନିଧାର୍ଯ୍ୟ ଜଣା ପଡ଼ିଗଲା । ନିର୍ଦ୍ଦିଷ୍ଟ ଦିନ ଜାଣିବା କି ଦରକାର ! ଏଥିରେ ଟିକିଏ କଷ୍ଟ ଆପଣଙ୍କୁ ହେବ । ଅବଶ୍ୟ ସେ କଷ୍ଟ ବିଶେଷ କିଛି ନୁହେଁ । କଷ୍ଟ ଏତିକି ହେଉଛି ହାତ ପାପୁଲିରେ ଟିକିଏ କଳା ବୋଳି ଗୋଟିଏ ଧଳା କାଗଜ ଉପରେ ମାଡ଼ିଦେବେ । ସେଥିପର ନାକ ଓ ଗାଲ ଆଦିର ଛୁପ ନେବାକୁ ହେବ । ସେ କାଳି କିଛି ଖରାପ କାଳି ନୁହେଁ, କନାରେ ପୋଛିଦେଲେ ଛାଡ଼ିଯିବ । ତାପରେ ଟିକିଏ ସାବୁନ ମାରିଦେଲେ କାମ ଫତେ ! ଭାବୁଛି କାହିଁକି ଆପଣଙ୍କୁ ହଇରାଣ କରିବି । ବର୍ଷ ତ ଜାଣୁଛନ୍ତି, ନିର୍ଦ୍ଦିଷ୍ଟ ଦିନଟା ଜାଣି ଅଧିକ କି ଲାଭ ?"

"ଆଚ୍ଛା, ଖାଲି ହାତ ଛୁପ ନେଲେ ଚଳିବନି ?"

"ଆଜ୍ଞା ସବୁ ବିଷୟର ସଙ୍କେତ ଏକ ସ୍ଥାନରୁ ମିଳିବ ନାହିଁ । ସାମୁଦ୍ରିକ ଶାସ୍ତ୍ର ଅନୁଯାୟୀ ଦେହର ବିଭିନ୍ନ ସ୍ଥାନରୁ ସଙ୍କେତ ସବୁ ଗ୍ରହଣ କରିବାକୁ ପଡ଼େ । ନିର୍ଭୁଲ ଗଣନା ପାଇଁ ଏହା ନିତାନ୍ତ ଦରକାର । ଛାଡ଼ନ୍ତୁ ଆଜ୍ଞା—ବିଶେଷ କିଛି କଷ୍ଟ ନ ଥିଲେ ବି, ସେତିକି କଷ୍ଟ ଅନ୍ତତଃ କାହିଁକି କରିବେ !"

"କହୁଛନ୍ତି ତ ବିଶେଷ କଷ୍ଟ ନାହିଁ, ପୋଛି ଦେଲେ ଛାଡ଼ିଯିବ । ନିର୍ଦ୍ଦିଷ୍ଟ ଭାବିବ ଗୋଟାଏ ଭବିଷ୍ୟତ କଥା ଜାଣିବା ପାଇଁ ଏ ସାମାନ୍ୟ କଷ୍ଟ ସହ୍ୟ କରାଯାଇପାରେ ! ଏଇଟାକୁ ବି ମୁଁ କଷ୍ଟ ବୋଲି ଭାବୁନି । ଆପଣ ଛୁପା ଉଠାନ୍ତୁ ।"

ଟିଣ ବାକ୍ସରୁ ଗୋଟାଏ କଳାରଙ୍ଗ ଡବା ଓ ଗୋଟାଏ ବ୍ରସ୍ କାଢି ଗଦେଇ କାମ ଆରମ୍ଭ କଲି । ପହିଲେ ବ୍ରସ୍‌ରେ କାଳି ଆଣି ପାପୁଲିରେ ଭଲକରି ବୋଳିଦେଲି । ତାପରେ ନାକ, ଲଲାଟ, ଦୁଇଗାଲ ବେଶ୍ ଭଲକରି ବୋଳି ଦେଇ କହିଲି—"ଆଜ୍ଞା, ମାତ୍ର ଅଧମିନିଟିଏ ଅପେକ୍ଷା

କରିବାକୁ ହେବ । କାଳଟା ଟିକିଏ ବସିଗଲେ ଛୁପା ନେବାକୁ ସୁବିଧା ହେବ । ଆପଣ ଟିକିଏ ସ୍ଥିର ହୋଇ ବସନ୍ତୁ । ମୁଁ ଆଉ ବାକ୍ସରୁ ଛୁପାର ବିଶେଷ ଧରଣର କାଗଜଟା ଆଣୁଛି । ପଦାରେ ରିକ୍ସାରେ ଛୁପା କାଗଜର ବାକ୍ସଟା ଅଛି । ଟିକିଏ ସ୍ଥିରହୋଇ ବସନ୍ତୁ ଯେପରି କାଳ ଉପରେ ଅନ୍ୟ କିଛି ନ ବାଜେ, ରିକ୍ସା ପାଖରୁ ମୁଁ ଆସୁଛି ।"

ଏତକ କହି ଗଦେଇ ଟିଣ ବାକ୍ସଟି ଧରି ସେ ଘର ଭିତରୁ ବାହାରି ଚାଲିଗଲା । ସମ୍ପାଦକେ ଲଙ୍କାପୋଡ଼ା ବାନ୍ଦର ପରି କାଳିଆ ମୁହଁ ଓ କାଳିଆ ହାତରେ ଗଦେଇର ଆଗମନକୁ ଅପେକ୍ଷା କରି ରହିଲେ । ଗଦେଇର ଦେଖାନାହିଁ । ବରଂ ଅଚିହ୍ନା ଚାରି ପାଞ୍ଚଜଣ ଲୋକ ପଶିଆସି ଫେଁ ଫାଁ ହୋଇ ଲେଉଟି ପଳେଇଗଲେ । ବିପଦ ଆସିଲାବେଳେ ଚାରିଆଡ଼ୁ ମାଡ଼ ଆସେ । ଦୈବାତ୍ କେତେଜଣ ସାମ୍ବାଦିକ ସେତିକିବେଳକୁ ଆସି ଜୁଟିଗଲେ । ସମ୍ପାଦକଙ୍କ ବିଚିତ୍ର ରୂପ ଦେଖି ଗୋଟାଏ ଢ'ଟା ଫଟୋ ବି ଖଚ୍‌ଖାଚ୍ ଉଠେଇ ନେଲେ । ଅଧମିନଟ୍ ଯେତେବେଳେ ଅଧ ଘଣ୍ଟାରେ ପରିଣତ ହେଲା, ସେତେବେଳେ ସମ୍ପାଦକ ଚିଲେଇ ଉଠିଲେ—"ହରିଆ—ଆ—ଆ— !" ହରିଆ ବି ପଶିଆସି ଫେଁ କରି ହସିଦେଲା । ସମ୍ପାଦକ ରାଗରେ ଜଳିଯାଇ ଗର୍ଜନ କଲେ—"ବଦମାସ୍ ! କୁଆଡ଼େ ଗଲା ସେ ଆଉ ବଦମାସ୍‌ଟା—"

ସେତେବେଳକୁ ଆଉ ବଦମାସ୍‌ଟା ସମିତି ଘରେ ବସି ଅନ୍ୟାନ୍ୟ ସଭ୍ୟମାନଙ୍କୁ କହି ଲାଗିଥାଏ—"ପୁଅ ବସିଛି ସେଇଠି ହନୁମାଙ୍କଡ଼ ହୋଇ । ସେ ତ ବାର୍ଣ୍ଣିସ୍ ଫେଣ୍ଟା କାଳି । ଚଟ୍‌କରି ଶୁଖିଯିବ । ପୁଅ ସାବୁନରେ ଯେତିକି ଘଷୁଥିବ ସେତିକି ଚିଟା ଉଠୁଥିବ । ପୁଅ ନାକରେ କାନ୍ଦିବ, ପୁଅର ଫଟୋ ବି ଅନ୍ୟସବୁ କାଗଜରେ ଯେମିତି ବାହାରି ପଡ଼ିବ ତାର ବ୍ୟବସ୍ଥା କରି ଦେଇଛି । ଟିକିଏ ଅର୍ବିର ଛୋପା ପାଇଁ ଗର୍ଜି ଉଠିଲା, ଏବେ ଅଭୁଲ ନମ୍ବର ହୋଲିର ଶିକାର ହୋଇ ପୁଅ ବସିଥାଉ ।"

---

# ଶ୍ରମିକ ନେତା

କାରଖାନା ମାଲିକ ସୀତାକାନ୍ତ ବାବୁ ଅଫିସ ଭିତରେ ବସି କାରଖାନା ଫାଟକ ପାଖରେ ହେଉଥିବା ସଭାର ବକ୍ତୃତା ଆଡ଼କୁ କାନ ଡେରିଥାନ୍ତି । ଶ୍ରମିକମାନଙ୍କ ମଧ୍ୟରୁ ଅଧିକାଂଶଙ୍କ ଦ୍ୱାରା ମନୋନୀତ ହୋଇ ଆସିଥିବା ନେତା ହରିଶ୍ଚନ୍ଦ୍ର ମଲିକ ବଡ଼ ତେଜରେ ବାକ୍ୟବାଣ ସବୁ, ଚଗଲା ଟୋକା ଦାୟିତ୍ୱହୀନ ଭାବରେ ଏଣିକି ତେଣିକି ଢେଲା ଫୋପାଡ଼ିଲା ପରି ଛାଡ଼ି ଦେଉଥାଆନ୍ତି । ବକ୍ତୃତାଗୁଡ଼ାକ ପୂରାପୂରି ତାଙ୍କ କାନରେ ପଶୁଥିଲେ ସୁଦ୍ଧା ତହିଁରୁ ସେ କିଛି ଠଉରେଇ ପାରୁ ନ ଥିଲେ । ପାଣି ସୁଅରେ ଗୋଡ଼ି, ଇଟା ଅଟକିଗଲା ପରି ତାଙ୍କ ମୁଣ୍ଡ ଭିତରେ ବକ୍ତୃତା ସୁଅର କେତେଗୁଡ଼ିଏ ଟାଣୁଆ ଟାଣୁଆ ଶବ୍ଦ ଅଟକି ଯାଉଥାଏ । ସେଗୁଡ଼ିକ ହେଲା ବିପ୍ଳବ, ବୁର୍ଜୁୟା, ନ୍ୟସ୍ତସ୍ୱାର୍ଥ, ମଜଦୁର, ପୁଞ୍ଜିପତି, ଶୋଷଣ, ଦଲାଲ, ଷଡ଼ଯନ୍ତ୍ର, ଧର୍ମଘଟ, ଘେରାଉ, ଲାଭଖୋର, ରକ୍ତ ଓ ଅଗ୍ନି ଇତ୍ୟାଦି ଇତ୍ୟାଦି । ଶ୍ରମିକ ନେତା ହରିଶ୍ଚନ୍ଦ୍ର ମଲିକ ଯେ ଏମିତି ବକ୍ତୃତା ଦେଉଥିଲେ ତାହା ସେ ଆଗରୁ ଜାଣିଥିଲେ । ଯୁଆ ଭିତରେ ହରିଶ୍ଚନ୍ଦ୍ର ଯେ ଏତେଗୁଡ଼ାଏ କଟିଳି-ମିଟିଳିଆ ରାଜନୈତିକ ଶବ୍ଦ ଆୟତ୍ତ କରି ସାରିଲେଣି ତାହା ଜାଣି ସେ ବଡ଼ ବିସ୍ମିତ ହୋଇ ପଡ଼ିଲେ । ତାଙ୍କୁ କାଲି ସକାଳ ପରି ଲାଗୁଥାଏ । ହରିଶ୍ଚନ୍ଦ୍ର ଗୋଟିଏ ଅଫିସର ପିଅନ ଭାବେ କାମ କରୁଥିଲା । ଅଫିସ ଷ୍ଟେସନାରି ଜିନିଷ ସବୁ ଚୋରିକରି ବଜାରରେ ବିକୁଥିବା ଅବସ୍ଥାରେ ତିନିଥର ଧରାପଡ଼ି ଡିସ୍‌ମିସ୍ ହୋଇଥିଲା । ପେଟ ପାଇଁ ଗୋଟାଏ ପାର୍ଟି ଯୋଗାଡ଼ କରିନେଲା, କିଛିଦିନ ସେହି ପାର୍ଟି ଜରିଆରେ ପ୍ରବଳ ଦେଶକାମ କଲା । ଚାନ୍ଦା ଆଦାୟ ଓ ଖର୍ଚ୍ଚର ସଠିକ ହିସାବ ନ ଦେଇ ପାରି ସେ ସେହି

ଘାଣ୍ଟିରୁ ବାହାରି ଯାଇ ଆଉ ଏକ ଘାଣ୍ଟି ଧରିଲି । ସେଠାରୁ ମଧ୍ୟ ସେହିପରି ବାହାରି ଗୃହୀ ଓ ଶ୍ରମିକମାନଙ୍କ ପାଇଁ ଦିନବେଳେ କାନ୍ଧିଥିବା ଘାଣ୍ଟିରେ ରହିଲି । ଆଜିଯାଏ ମଧ୍ୟ ସେଇଠି ରହିଯାଇଛି । ଏ ବଦଳର ସଫେଇଦେଇ ସେ କହେ କହେ ଯେ ମତ ନ ମିଳିବାରୁ ସେ ଇସ୍ତଫା ଦେଇ ଅନ୍ୟବାଟ ଦେଖିଲି । ଅସହଣୀ ଲୋକେ କିନ୍ତୁ କହନ୍ତି ଯେ ଦଳ ଟଙ୍କା ଗର୍ଭଘାତ୍ କରିବାର ବଦ୍ ଅଭ୍ୟାସ ଥିବାରୁ ସେ ବାରମ୍ବାର ଧରାପଡ଼ି ଶେଷରେ ତଣ୍ଟିଆ ଖାଆନ୍ତି । ଯାହା ହେଉ ଶେଷ ଦଳରେ 'ଯିଏ ଯେଉଁଠି ଯାହା ପାଇଲି ତାହା ଖାଇଲି'ର ସୁବ୍ୟବସ୍ଥା ଥିବାରୁ ସେଠି ହରିୁ ଆଜିଯାଏ ଲାଗି ରହି ଯାଇଛି । ସୀତାକାନ୍ତ ବାବୁଙ୍କ କାରଖାନା ଶ୍ରମିକମାନଙ୍କ ନେତା ହେବାଲାଗି ତାକୁ ବେଶୀ ମୁଣ୍ଡ ଖେଳାଇବା କମ୍ବା ଖଟିବାକୁ ପଡ଼ିନି । ଖୋଦା ଛପର ଫାଡ଼ି ତା ଉପରେ ନେତା ପଦଟା ଗଳେଇ ପକେଇଲେ । କାରଖାନାର ସବୁଠୁଁ ହୁଣ୍ଡା, ଭେଣ୍ଡା, କାମିକା ମୁହୁରୁ ମଳିକ ଦିନେ ତା ହାବୁଡ଼ରେ ପଡ଼ିଲି । ପଦେ ଅଧେ କଥାବାର୍ତ୍ତା ହୋଇଛି କି ନାହିଁ ହରିୁ ତା ପିଠିରେ ହାତ ମାରି କାରଖାନା ହାଲଚାଲ ପଚାରିଲି । ମୂର୍ଖ ମୁହୁରାଟା ଲାଜ ସଙ୍କୋଚ ନ କରି ମାଲିକଙ୍କୁ ବହେ ପ୍ରଶଂସା କରିଗଲି । ସବୁଠୁଁ ବଡ଼କଥା ହେଉଛି ସେ ସୀତାକାନ୍ତ ବାବୁଙ୍କ ପରି ମାଲିକଟିଏ ପାଇଥିବାରୁ ଭାରି ସୁଖୀ । ଏଣୁ ସେ ମାଲିକଙ୍କର ବଡ଼ତରୁ ବଡ଼ତ ହେବା ପାଇଁ ଭଗବାନଙ୍କଠାରେ ସବୁଦିନେ ପ୍ରାର୍ଥନା କରେ । ହରିୁ ଦିହ ଶୀତେଇ ଉଠିଲା । ୧୯୬୯ ମସିହାରେ ଏପରି ଖୋଲାଖୋଲି ଭାବରେ ଗୋଟାଏ ମିଲ୍ ମାଲିକ ଅର୍ଥାତ୍ ଜଣେ ପୁଞ୍ଜିପତିଙ୍କୁ ଏପରି ପ୍ରଶଂସା କରିବାଟା ନୀତିବିରୁଦ୍ଧ, ଅଭଦ୍ରାମୀ ଓ ଅସାମାଜିକ କଥା ମଧ୍ୟ । ମୁହୁରୁ ବିଚରା ଆଉ କିଛି ସମୟ ଲଢ଼ିଲି । ସେ କହିଲି ଯେ ତାଙ୍କ ବାବୁ ଭାରି ଭଲ । ତାଙ୍କର ପିଲାପିଲି ନ ଥିବାରୁ ସେମାନଙ୍କୁ ପିଲାପିଲି ପରି ଦେଖନ୍ତି । ସମସ୍ତଙ୍କର ସୁବିଧା ଅସୁବିଧା ବାପପରି ଖୋଳ ତାଡ଼ି କରି ବୁଝନ୍ତି । ଅଭାବ ଅସୁବିଧା ବେଳେ ଟଙ୍କା ମୁଣି ଖୋଲି ଦିଅନ୍ତି, ଆଉ କୋଉ ମାଲିକ ଖରାପ ହୋଇ ପାରିଥିବ; କିନ୍ତୁ ସେମାନଙ୍କ ମାଲିକ ନୁହେଁ । ସେତେବେଳେ ସେ ହୁଣ୍ଡା; ହରିୁର ରାଜନୀତି କଥା ଶୁଣି ବିଚରା ଆଣ୍ଠେଇ ପଡ଼ିଲି । ହରିୁ ମୁଣ୍ଡର

ଆକାରକୁ ଗୁହାଁ ତାର ବହୁତ ବେଶି ବୃଦ୍ଧି ଥିବାର ସେ ରେକଟୋକ ପ୍ରମାଣ ପାଇଗଲା । ହରୁ ବୁଝେଇଦେଲା ଯେ ମାଲିକ ଓ ଜୋକ ଏକା ଜିନିଷ । ଜୋକ ରକ୍ତ ପିଇଲେ ଜାଣି ହୁଏନି, ମାଲିକମାନେ ସେହିପରି ଶ୍ରମିକର ରକ୍ତ ଶୋଷିଲେ ଶ୍ରମିକ ଜାଣିପାରେ ନାହିଁ । ମାଲିକର ସ୍ନେହ ଆଦର ସବୁ କିଛି ଗୋଟାଏ ଗୋଟାଏ ଧୂଆଁ ବାଣ । ମୁକୁନ୍ଦର ଆଉ ଅଳ୍ପ ଟିକିଏ ଯେଉଁ ସନ୍ଦେହର ଧାସ ରହିଲା, ତାହା ବି ଉଭେଇଗଲା, ଯେତେବେଳେ ସେ ହରୁଠାରୁ ଶୁଣିଲା ଯେ ସେ ତାର ଅଧିକାଂଶ ସମୟ ମନ୍ତ୍ରୀମାନଙ୍କ ପାଖରେ କଟାଏ । ମନ୍ତ୍ରୀଙ୍କ ସାଙ୍ଗରେ ଗୁହା ପିଏ, ମନ୍ତ୍ରୀଙ୍କ ସାଙ୍ଗରେ ମଟରରେ ଗୃହଆଡ଼କୁ ଯାଏ । ମୁକୁନ୍ଦ ସେ ଦିନ ନିଃସନ୍ଦେହରେ ଜାଣିଗଲା ଯେ ହରୁ ଜଣେ ଏମିତିଆ ସେମିତିଆ ଲୋକ ନୁହେଁ, ସେ ଜଣେ କ୍ଷଣଜନ୍ମା ନେତା । ଢୁଞ୍ଚ ପଛପଟକୁ ଆଶ୍ରା କରି ସୂତା ଯେପରି କନା ଭିତରେ ପଶେ, ହରୁ ଠିକ୍ ସେମିତି ମୁକୁନ୍ଦକୁ ଆଶ୍ରା କରି ଶ୍ରମିକଙ୍କ ଭିତରେ ପଶିଲା । ଥରେ ପଶିଗଲେ ହରୁଙ୍କୁ ଆଉ ପାରେ କିଏ ! ଶ୍ରମିକ-ମାନଙ୍କ ହାନିଲାଭ ବୁଝିବା, ସେମାନଙ୍କ ପାଇଁ କାନ୍ଦିବା, ଟିକିକ କଥାରେ ଲୁହ ଗଡ଼େଇ ପକେଇବା, ସେମାନଙ୍କ ପାଇଁ ପ୍ରାଣମୂର୍ଚ୍ଛା କାନ୍ଦ କରିବା ଆଦି କାମ ଦେଖି ଶ୍ରମିକମାନେ ତାଙ୍କୁ ଦୈବ ପ୍ରେରିତ ଶ୍ରମିକବନ୍ଧୁ ବୋଲି ସ୍ଥିର କରି ନେଲେ । ଏପରି ଏକ ମହାପୁରୁଷଙ୍କୁ ହୁଣ୍ଡା ମୁକୁନ୍ଦ କପରି ଠାବ କରିପାରିଲା, ସେ କଥାରେ ଶ୍ରମିକମାନେ ବି କମ୍ ବିସ୍ମିତ ହୋଇ ନ ଥିଲେ ।

ସୀତାକାନ୍ତ ବାବୁଙ୍କର ଇଚ୍ଛା ହେଉଥିଲା ହରୁର ସ୍ୱରୂପକୁ ଶ୍ରମିକ-ମାନଙ୍କ ଆଗରେ ଖୋଲି ଦେଇ ସେମାନଙ୍କୁ ତା ପାଲରେ ନ ପଡ଼ିବାକୁ ସତର୍କ କରାଇ ଦେବେ । ଦିନେ ତାଙ୍କର ଅତି ପ୍ରିୟ ଶ୍ରମିକ ମୁକୁନ୍ଦକୁ ଡାକି କହିଲେ "ହଇରେ ! ହରୁ କଅଣ ମୋ'ଠୁଁ ବେଶି ଯତ୍ନ ତମର ନେବ ? ଆଗପଛ ବିଚାରି, ଗୃହଆଡ଼କୁ ଗୁହାଁ ଯାହା କରୁଛ କର, ହୋ'ରେ ମାତି ଯାଅନା ମୁକୁନ୍ଦ ।"

ହୁଣ୍ଡା ମୁକୁନ୍ଦ ରେକଟୋକ ଉତ୍ତର ଦେଲା—"ଆମ ଆଖି ଖୋଲି ଯାଇଛି, ଆମକୁ ଆଉ ତୁମେ ଶୋଷି ପାରିବ ନାହିଁ । ଯେତିକି

ଶୋଷିଥିଲ ସେତକ, ଆମର ଦାବି ହାସଲ କରିବା ଲାଗି ଆମେ ସଙ୍ଗମ ଚଳେଇବୁ ।"

ଆଉ ଜଣେ ଶ୍ରମିକ ତା ପଛରେ ଠିଆ ହୋଇଥିଲା, ତା ପିଠି ଶମୁଟି ଦେଇ କହିଲା—"ସଙ୍ଗମ ନୁହେଁ ବେ, କହ ସଂଗ୍ରାମ ।

ମୁକ୍ତୁରୁ ପୁଣି ଥରେ ସଂଶୋଧନ କରି କହି ପକାଇଲା—"ହଁ ହଁ ସଂଗ୍ରାମ ଚଳେଇବୁ, ହଁ ଚଳେଇବୁ, ଛାଡ଼ିବୁ ନାହିଁ ।

ହସ ତଥା ବିରକ୍ତିର ସହ ସୀତାକାନ୍ତ ବାବୁ ନିଜର ମତ ବଦଳାଇ ଦେଲେ, ସେ ମନେ ମନେ ଠିକ୍ କଲେ ସୁଅଟା ଯେତେବେଳେ ଫିଟିଗଲାଣି ତାକୁ ଆଉ ରୋକିବା ଠିକ୍ ହେବନି । ଯେଉଁମାନେ ଏ ସୁଅରେ ପହଁରିବାକୁ ଭଲ ପାଉଛନ୍ତି ସେମାନଙ୍କୁ ଅଟକେଇ ଲାଭ ନାହିଁ । ସେମାନେ ଠେକ, ଠୋକର ଖାଇ ଶିଖନ୍ତୁ । କାଲି କାଲିକୁ ସେମାନଙ୍କର ମନେ ରହିବ । ମୁକ୍ତୁରୁ ପାଖରୁ ମୁହଁ ଫେରାଇ ନେଇ ଶେଷରେ ସେ କହିଲେ "ହଉରେ ବାବୁ ଆଉକୁ ତୁମେ ସଙ୍ଗମ କର କି ସଂଗ୍ରାମ କର ମୁଁ ଆଉ କିଛି କହିବି ନାହିଁ ।"

ସୀତାକାନ୍ତ ବାବୁ ଯେ ଶ୍ରମିକମାନଙ୍କୁ ଡରିଗଲେଣି ତାହା ହରିଗୁ ମଲିକେ ଶ୍ରମିକମାନଙ୍କୁ ପ୍ରାଞ୍ଜଳଭାବେ ବୁଝାଇ ଦେଲେ । ଆଉ କାହାର କିଛି ହେଉ ନ ହେଉ ମୁକ୍ତୁରୁ ମଲିକର ଛାତି କିଛି ପରିମାଣରେ ଫୁଲିଯିବାର ଦେଖାଗଲା; ହରିଗୁ ବି ଊଣା ଫୁଲି ନ ଥିଲେ । ଡରିବା ଲୋକକୁ ଆଉ ଟିକିଏ ଡରେଇ ମଜା ଦେଖିବାକୁ ଅନେକ ଭାରି ଭଲ ପାଆନ୍ତି । ସୀତାକାନ୍ତ ବାବୁଙ୍କୁ ସେମିତି ଆଉ ଟିକିଏ ଡରେଇବାକୁ ହରିଗୁ ଦିନେ ତାଙ୍କ ଅଫିସ୍ ଭିତରକୁ ଗଲା, ତାକୁ ଦେଖି ସୀତାକାନ୍ତ ବାବୁଙ୍କର ରାଗ ଗୋଡ଼ଆଙ୍ଗୁ ସିର୍‌ସିର୍ ହୋଇ ଉଠିଲେ ହେଁ ସେ ତାହା ଦମନ କରି ପଚାରିଲେ "କଅଣ ଦରକାର ?"

ହରିଗୁ ଏକ ପୋଖତନେତା ଉପଦେଶ ଦେବା ଢଙ୍ଗରେ କହିଲା "ଦେଖନ୍ତୁ ଏଇ ଶ୍ରମିକମାନଙ୍କ ଝାଳରେ ଆପଣ ଆପଣଙ୍କ ସମ୍ପଦ ଗଢ଼ିଛନ୍ତି"—

ସୀତାକାନ୍ତବାବୁ ବାଧାଦେଇ କହିଲେ—“ଆପଣ କଅଣ ସେଥିରେ ଭାଗୀଦାର ହେବାକୁ ଚାହୁଁଛନ୍ତି ?”

ଏକ ଅଫିସ୍ ଭିତରେ ଠିଆ ହୋଇଥିବା କଥା ଭୁଲିଯାଇ ଏକ ନିର୍ବାଚନ ବକ୍ତୃତା ଦେଲାପରି ହରି ଉତ୍ତେଜିତ ଗଳାରେ ଆରମ୍ଭ କଲା “—ସେଥିରୁ ଗୋଟିଏ ବି ସ୍ପର୍ଶକରିବାକୁ ଚାହେଁ ନା । ତାହା ମୋ ପକ୍ଷରେ ହଳାହଳ, ମୋର ଇଚ୍ଛା, ମୁଁ ଚାହେଁ, ମୁଁ ଚାହେଁ ତାହାର ଭାଗୀଦାର ହୁଅନ୍ତୁ ସେଇ ମଜଦୁରମାନେ, ଯେଉଁମାନେ, ଟୋପା ଟୋପା ଲହୁ ଓ ଲୁହଦେଇ ଗଢ଼ିଛନ୍ତି, ଯେଉଁମାନେ କାମ କରିକରି କୁମ୍ପ ପାଲଟି ଗଲେଣି, ସେଇମାନେ ଭାଗୀଦାର ହୁଅନ୍ତୁ । ମୁଁ ନିସ୍ୱାର୍ଥପର, କେବଳ ସେମାନଙ୍କ ସେବା କରି ନିଜକୁ ଧନ୍ୟ ମନେକରିବି, ନିଜକୁ—”

“ବନ୍ଦକର, ଏଇଟା ବକ୍ତୃତା ଦେବାର ପଡ଼ିଆ ନୁହେଁ; ଏଇଟା ଅଫିସ୍ । ବକ୍ତୃତା ଦେବାର କୌଶଳ ଶିଖିବାର ଇଚ୍ଛା ଥିଲେ ହେଇ ସେ ପଡ଼ିଆରେ ଯାଇ ଚଳଉଥାଅ ।”

ହରି ସହଜରେ ଛାଡ଼ିବାର ପାତ୍ର ନୁହେଁ, ସେ ଜଣେ ଶ୍ରମିକ ନେତା, ଆଖି ପିଛୁଳାକେ କେତେ କାରଖାନାକୁ ଦେବାଳିଆ କରିଦେବ । କେତେ ମାଲିକଙ୍କୁ ଆଣ୍ଠେଇ ପକେଇବ । ଏ ଲେଣ୍ଡି ସୀତାକାନ୍ତ ପୁଣି କହିବ ପଡ଼ିଆକୁ ଯାଅ । କମ୍ ହିମାକ ନୁହେଁ ତ ତାର ! ତାଚ୍ଛଲ୍ୟ ଦେଖାଇ ପ୍ରକାଶ୍ୟରେ କହିଲା—“ବୁଝି ବିଚାରି କଥାବାର୍ତ୍ତା କର ସୀତାକାନ୍ତ ବାବୁ ! ନିଆଁ ସାଙ୍ଗରେ ଖେଳିଲେ ହାତ ପୋଡ଼ିଯାଏ, ଜାଣିପାରୁଛ ତୁମେ କାହା ସାଙ୍ଗରେ କଥାବାର୍ତ୍ତା କରୁଛ ?

ରାଗରେ ପାଚିଯାଇ ସୀତାକାନ୍ତ କହିଲେ, “ବଦମାସ୍ ! ମୁଁ ତୋତେ ଚିହ୍ନିନି, ଆରେ ତୁଇ ହରି ଅଫିସ୍ ପିଅନ ନା, ତୁଇ ଅଫିସ୍ ଜିନିଷ ବାରମ୍ବାର ଚୋରି କରି ବଜାରରେ ବିକ୍ରି କରୁଥିବାର ଧରାପଡ଼ି ଚାକିରୀରୁ ତଡ଼ିଆ ଖାଇଥିଲୁ ନା, ତତେ ପୁଣି ନ ଚିହ୍ନିବ କିଏ ? ଦୁଃଖ ହେଉଛି ଶ୍ରମିକଗୁଡ଼ାକ ଚିହ୍ନିପାରିଲେ ନାହିଁ, ନ ହେଲେ—”

ହଗ୍ରୁ ଦେଖିଲା କଥାଟା ବେବାଗର ହୋଇଗଲା, ସୀତାକାନ୍ତ ବାବୁଙ୍କ ମୁଣ୍ଡରେ ହାତ ବୁଲେଇବାକୁ ସେ ଆସିଥିଲା; କିନ୍ତୁ ନାଗସାପ ଲାଙ୍ଗୁଡ଼ ମାଡ଼ ପକାଇବା ପରି କଥାଟା ହେଲା । ଆଉ ଅଧିକ ଡେରି ମେରି ହେବାକୁ ତାକୁ ଭୟ ଲାଗିଲା । ସୀତାକାନ୍ତବାବୁଙ୍କୁ ଯେ ଉରି ଯାଇଥିଲା ତା ନୁହେଁ । ଆଉ ଟିକିଏ ବଡ଼ ପାଟିରେ ତା ଇତିହାସ ବର୍ଣ୍ଣିତ ହେଲେ ତାର ଭକ୍ତମାନେ ହୁଏତ ଶୁଣି ପାରିବେ, ଏହି ଭୟଟା ତାକୁ ସେଠାରୁ ପଳେଇ ଆସିବାକୁ ବାଧ୍ୟ କଲା । ପଳେଇ ଆସିଲାବେଳେ ସେ ଶୁଣେଇ ଦେଲା—"ମୁଁ ହାତ ବଢ଼େଇଥିଲି, ଧରିବା ପରିବର୍ତ୍ତେ ଛୁଆଁଡ଼ ଦେଲ । ଏହାର ପ୍ରତିଫଳ ତୁମେ ହିଁ ଭୋଗ କରିବ ।"

କ୍ରୋଧରେ ଅଧୀର ହୋଇ ପଡ଼ ସୀତାକାନ୍ତବାବୁ ଗର୍ଜି ଉଠିଲେ, "ରଖ ରଖ ତୋ ପ୍ରତିଫଳ, ଯା ବଜାରକୁ—ଯା ରେଳୱେ ଅଫିସ ଷ୍ଟେସନାରୀ କିନଷ୍ଟ ବନ୍ଦି କରିବୁ ।"

× × ×

ମାଲିକ ଓ ଶ୍ରମିକ ଭିତରେ ଯୁଦ୍ଧଟା ଘମାଘୋଟ ଲାଗିଗଲା । ହଗ୍ରୁ ବଡ଼ ବଡ଼ ଶ୍ରମିକ ନେତାମାନଙ୍କୁ କହିବାର ଶୁଣିଛି—ଏ ଯୁଦ୍ଧ ଏକ ସାଲିସ ବିହୀନ ଯୁଦ୍ଧ । ଏଥିରେ ଶ୍ରମିକମାନଙ୍କର ହରେଇବାକୁ କିଛି ନାହିଁ, ଯେଣୁ ସେମାନେ ସର୍ବହରା । ଏ ଯୁଦ୍ଧରେ ସବୁ ହରେଇବେ ମାଲିକମାନେ । ସେମାନଙ୍କ ମରଣଟରେ ହିଁ ଏ ଯୁଦ୍ଧ ସରିବ । ଶ୍ରମିକମାନେ ହିଁ ସେତେବେଳେ ସବୁ କଳକାରଖାନାର ମାଲିକ ହେବେ । ଏହି ସବୁ ବଡ଼ବଡ଼ଆଙ୍କ କଥା ସେ ଶ୍ରମିକମାନଙ୍କୁ ଶୁଣେଇଲା । ଶ୍ରମିକମାନେ ବି ପଣ୍ଡାଙ୍କ ତୁଣ୍ଡରୁ ବାହାରୁଥିବା ଭାଗବତର ପଦଗୁଡ଼ାକୁ ପିଇ ଯାଉଥାଆନ୍ତି । ସେମାନେ ଆନନ୍ଦରେ କୁଲୁରି ଉଠୁଥାଆନ୍ତି, ରଙ୍ଗୀନ ଠିଆ ସ୍ୱପ୍ନରେ ବିଭୋର ହୋଇ ପଡ଼ୁଥାଆନ୍ତି । ହୁଣ୍ଡା ମୁହୁରୁ ସ୍ୱପ୍ନରେ ସମସ୍ତଙ୍କୁ ଟପି ଯାଇ ଭାବିଲା ସେ ମାଲିକ ହେଲେ ଆଗ ଖଡ଼ିକା ମୁଠାତକ ଆଉ ପନିକି ତିଆରି କରିବାକୁ ଖଣ୍ଡେ କମାଣି ଲୁହା ନେଇ ନୁଖୁରୁ ବୋଉ ଜମା ଦେଇଦେବ । କେତେ ଥର ଏ ବ'ଟା କିନଷ ପାଇଁ ସେ କହିଲାଣି, ଆଉ ଅଳ୍ପ ଦିନରେ

ତା ଇଚ୍ଛା ପୂରଣ ହୋଇଯିବ । ଏ ଆନନ୍ଦ ସାଙ୍ଗେ ତା ମନରେ ଗୋଟାଏ ଖଟକା ବି ଲଗିଲା, ସେ ଭାବିଲା ସେମାନେ ମାଲିକ ହେଲେ କାଳେ ତାଙ୍କପରି କିଏ ସର୍ଦ୍ଦାର ବନିଯାଇ ତାଙ୍କଠୁଁ ମାଲିକାନା ଛଡ଼ାଇ ନେବ ! ସନ୍ଦେହଟାକୁ ଦୂର କରିନେବା ଲାଗି ସେ ହରିଗ୍ରୁକୁ ଚୁପ୍ ଚୁପ୍ କରି ସବୁ କଥା ପଚାରିଲା । ହରିଗ୍ରୁର "ଦୂର ହୋ ହୁଣ୍ଡା" ପଦରୁ ସେ ବୁଝିଗଲା ଯେ ତାର ଆଶଙ୍କା ଅମୂଳକ ।

ଘମାଘୋଟ ଯୁଦ୍ଧରେ ଶ୍ରମିକମାନଙ୍କର ଖୁବ୍ ଜିତାପଟ ହେଲା, ହୁଣ୍ଡା ମୁଖରୁ ଜଣି ଆଣିଥିବା ଜିନିଷର ଆକାର ପ୍ରକାର ଓ ଦାମ ଜାଣିବା ଲାଗି ନୁଖୁରା ବୋଉ ଗେଲେଇ ହୋଇ ପଚାରନ୍ତେ ସେ କହିଲା—"ଦୂର ହୁଣ୍ଡୀଟା ତୁ କଅଣ ବୁଝି ପାରିବୁ ? ଆମ୍ଭେ ପାହିଲେ ଦେଖ ଆମ ୟୁନିଅନକୁ ଓ ତା ସଭାପତି ହରିଗ୍ରୁ ବାବୁଙ୍କୁ ମାଲିକ ସୀତାକାନ୍ତବାବୁ ଆଉ ସରକାର ମାନିନେଲେ ।"

ନୁଖୁରା ବୋଉ ଆଶ୍ଚର୍ଯ୍ୟ ହୋଇ ପଚାରିଲା "ସେଇଟା ଯଦି ଆମର ଜିତାପଟ ହେଲା, ତେବେ ତମ ଦରମାରୁ ଦି'ଟଙ୍କା କମ୍ ହେଲା କାହିଁକି ?"

"ହୁଣ୍ଡୀଟା ତୁ ବୁଝିବୁ ନି, ଆମ୍ଭେ ଆମ ୟୁନିଅନକୁ ଦି'ଟଙ୍କା ଚାନ୍ଦା ନ ଦେଲେ ଆମ ୟୁନିଅନ ଚଳିବ କେମିତି ?

"ମଲା ମୋର—ଆମର ତ ଦୁଇଟଙ୍କା କମିଗଲା, ୟୁନିଅନ ଥାଇ କେତେ ନ ଥାଇ କେତେ ।"

"ଆଲୋ ହୁଣ୍ଡୀ କେବଣ୍ଡି ଗୁଣ୍ଡିଲେ ବାଲିଆ ମିଳେ, ଏ ଦୁଇଟଙ୍କା ଦେଇକି ଯେ କେବଣ୍ଡିଟାଏ ଗୁଣ୍ଡିଲି, ଦେଖିବୁ ଆଉ କେଇ ଦିନେ ଦରମା ଦଶଟଙ୍କା ବଢ଼ିଯିବ ।"

ଘମାଘୋଟ ଯୁଦ୍ଧ ଲାଗି ରହିଲା । ଥକି ପଡ଼ିଥିବା ସେନାପତି ହରିଗ୍ରୁ ମାଲିକ ଦିନେ କହିଲେ, ଦେଖ ଏତେ ବଡ଼ ଇଉନିଅନର ସଭାପତି ମୁଁ,

ଆଉକୁ ମନ୍ତ୍ରୀ, ଉପମନ୍ତ୍ରୀ, ବଡ଼ ବଡ଼ ନେତା ଓ ଅଫିସର ମୋ ପାଖକୁ ଆସିବେ । ଆଉ ଏ କୁଡ଼ିଆ ଘରେ କାମ ଚଳିବ ନି । ଗୋଟାଏ କୋଠାଘର ଯୋଗାଡ଼ କରନ୍ତୁ ଭଡ଼ା ଅଢ଼େଇ ଶହ ଟଙ୍କା ଦରକାର । ଇଉନିଅନର ଇଜ୍ଜତ ରହିବ । ସମସ୍ତେ ରାଜି ହେଲେ, କିଛି ଚାନ୍ଦା ବି ବଢ଼ିଲା । ଏତେ ବଡ଼ ଲୋକ ସେ ! ଏଇକ୍ଷଣି ଅଫିସର ସଙ୍ଗେ କଥାବାର୍ତ୍ତା ତ ସାଙ୍ଗେ ସାଙ୍ଗେ ମନ୍ତ୍ରୀଙ୍କ ସଙ୍ଗେ କଥାବାର୍ତ୍ତା ଦରକାର । ପଛେ ପଛେ ଲାଟ ସାହାବ ବି ଦରକାର ପଡ଼ି ପାରନ୍ତି । ଏପରି ସ୍ଥଳେ ଫୋନ୍‌ଟାଏ ନ ହେଲେ ଚଳିବ କିପରି ? ପୁଣି ଚାନ୍ଦା ବଢ଼ିଲା, ତା ବି ହେଲା ।

ଶହ ଶହ ଶ୍ରମିକଙ୍କ ସ୍ୱାର୍ଥରକ୍ଷା ପାଇଁ କିଛି ଅଳ୍ପ ପରିଶ୍ରମ ଲୋଡ଼ା ହୁଏନି । ବିଜୁଳି ବେଗରେ ଏଠୁଁ ସେଠିକି ସେଠୁଁ ଏଠିକି ଦଉଡ଼ିବାକୁ ପଡ଼େ । ଚାଲିକରି, ରିକ୍‌ସାରେ ବା ସାଇକେଲରେ ଯା’ଆସ ସାହାଯ୍ୟ କରିପାରିବନି । ଏ କାମକୁ ଏକ ଜିପ୍ ଦରକାର । ଅବଶ୍ୟ ଏ ଜିପ୍‌ଟା ଶ୍ରମିକମାନଙ୍କର ପିଲାପିଲିଙ୍କ ବାହାଘର, ଆରାମ ବେରାମରେ ଡାକ୍ତରଖାନାକୁ ଗାଡ଼ିରେ ଯିବା, ଦଶହରା, କାଳୀପୂଜା ଓ କାର୍ତ୍ତିକେଶ୍ୱର ମେଢ଼ ଦେଖି ଆସିବା ପାଇଁ ନିହାତି ଦରକାର । ନିଜର ଗୋଟିଏ ହୋଇ ଗଲେ ଆଉ କେଉଁଠି ଗୋଡ଼ ଭାଙ୍ଗି ହାତ ପତେଇବାକୁ ପଡ଼ିବ ନାହିଁ । ସଭାପତି ହୋଇବା କେତେବେଳେ ସିନା ମନ୍ତ୍ରୀ ଓ ଲାଟ ସାହେବଙ୍କ ସଙ୍ଗେ ଦେଖା କରିବା ଲାଗି ମାସକେ ଥରେ ଦିଥର ଜିପରେ ଯିବେ; କିନ୍ତୁ ଶ୍ରମିକମାନେ ତ ସବୁବେଳେ ଜିପ୍ ବ୍ୟବହାର କରିବେ । ଏଣୁ ଜିପ୍‌ଟାଏ ଶ୍ରମିକମାନଙ୍କର ବେଶୀ ଉପକାରରେ ଲାଗିବ । ସୁତରାଂ ଜିପ୍‌ଟାଏ ନିହାତି ଦରକାର, ଦାମ ବେଶୀ କିଛି ନୁହେଁ, ମାତ୍ର ପନ୍ଦର ହଜାର । ଶ୍ରମିକମାନେ ଅଧା ମାସର ଦରମାଟା ଚୁଣ୍ଡେଇଲେ କେଇଟା ମାସରେ ନୂଆ ଜିପ୍ ଥୁଆ । ଖନ ଖନେଇ ଶ୍ରମିକମାନେ କହିଲେ "—ହଉ ତେବେ ଆସୁ ।"

ସ୍ୱାମୀ ଉପରେ ନୁଖରା ବୋଉ ସିନା ମୁହଁ ଖୋଲି କିଛି କହି ପାରିଲାନି, ହେଲେ ମନେ ମନେ ସେ ମଙ୍ଗଳା ମାଆଙ୍କ ପାଖେ ଚୁରି ପାଞ୍ଚ ମାସ ଯାଏ ଫେରାଦ ହୋଇ ଅନୁରୋଧ କରନ୍ତି—"ମା ! ଏ ଅଲପେଇସ ସଭାପତିର

ବଢ଼ିଂଶ ବୁଢ଼େଇଦେ । ତା ହାତ ଗୋଡ଼ ଛୁଣ୍ଡି ପଡ଼ୁ । ତାକୁ ଅଚହ୍ନା ରୋଗ ଧରୁ । ଅଲପେଇସଠା ଯୋଗୁଁ ଆମମାନଙ୍କ ପେଟରେ ଓଦାକନା ଦେବାକୁ ପଡ଼ୁଚ୍ଛି, ଅଲପେଇସ କେଡ଼େ ଅଇସରେ ଦନ କାଟୁଛି ।" ମାଇପି ଲୋକଠା ବୁଝେ କଅଣ ? ତାକୁ ବା ଦୋଷ ଦେଇ ଲଭ କଅଣ ! କେତେକ ଅସହଣୀ ପାଠୁଆ ଲୋକେ ବ କହନ୍ତ—"ଯା ଯା, ଖାଇଯାରେ ହଗ୍ରୁ ! ବୃହସ୍ପତ ତୋର ପଞ୍ଚମରେ ପଡ଼ଚ୍ଛି । ତା ନ ହେଲେ ସ୍କୁଲ ଫାଇଦା ନ ମାଡ଼ ତୁ ଏକ ଆଇ. ଏ. ଏସ୍ ଅଫିସର ପର ଚଳୁଚ୍ଛୁ । ବଗିଚ ଘର, ଟେଲିଫୋନ୍, ଜିପ୍ କୋଉଥିରେ ଊଣା ନାହିଁ । ଗ୍ରେଟ ଲୋକଠା ମୁଲିଆଙ୍କଠୁ ପଇସା ଠକ ନେଇ ଅପ୍ଟସରେ କାଳ କଟାଉଚ୍ଛି । ଏମିତିଆ ବାବୁଙ୍କୁ 'ବେ' କହିବା ଲୋକ ଦୁନିଆରେ ସବୁଠି ଅଛନ୍ତ ।

ଦନେ ହଗ୍ରୁକୁ ଭକ୍ତମାନେ ହାଲିଆ ହୋଇ ପଡ଼ିବାର ଦେଖି ବବ୍ରତ ହୋଇ ପଡ଼ିଲେ । ଅନୁସନ୍ଧାନରୁ ଜଣାଗଲା ସବଦା ଶ୍ରମିକମାନଙ୍କ ମଙ୍ଗଳ ପାଇଁ ଅତ୍ୟଧିକ ପରିଶ୍ରମ କରିବା ଫଳରେ ତାଙ୍କର ଅବସାଦ ଓ କ୍ଳାନ୍ତ ଦେଖାଦେଇଚ୍ଛି । ଏ କ୍ଳାନ୍ତର ଅପନୋଦନ ପାଇଁ ଦୈନିକ ନରୁତା ଦୁଧ ୧ସେର, କମଳା ଓ ଅଙ୍ଗୁର ରସ ଗ୍ଲାସେ ଲେଖାଁଏ, ମାଂସ ୨୫୦ ଗ୍ରାମ୍, ପୁରୁଣା ସରୁ ଚୂଉଳର ଭାତ, ଗଉରେ ଅଗ୍ ମାର୍କା ଦେଶୀ ଘିଅରେ ଛଣା ପୁର ନତାନ୍ତ ଦରକାର । ଅତ୍ୟଧିକ ପରିଶ୍ରମଜନତ କ୍ଷୟର ପରିପୂରଣ ପାଇଁ ଏ ଜନଷ ସବୁର ଏକାନ୍ତ ପ୍ରୟୋଜନ । ଏ ସବୁ ନ ହେଲେ ସେନାପତ ହଗ୍ରୁଙ୍କ ମୂଲ୍ୟବାନ ଜୀବନ-ଦୀପଟି ଯେ କେତେବେଳେ ପୁଟ୍ କରି ଲଭିଯିବ ତାର ଠିକଣା ନାହିଁ ।

ଭକ୍ତମାନେ ଏହା ଶୁଣି ବଚଳତ ହୋଇପଡ଼ିଲେ । ଖୁନ୍ଦାର ପରିମାଣ ବୃଦ୍ଧି କରାଯାଇ ପୁଷ୍ଟିକର ଖାଦ୍ୟର ବ୍ୟବସ୍ଥା କରାଗଲା । ସୁତରାଂ ନୁଖୁରା ମା ଓ ନୁଖୁରାର ପେଟ ଅଧାପୁରା ରହବାକୁ ଲାଗିଲା । ହଗ୍ରୁ ଉଦ୍ଦେଶ୍ୟରେ ନୁଖୁରା ମା'ର କଠା ସମ୍ପା କ୍ରମେ ପେଟରୁ ଉଛୁଳି ପାଟି ବାଟେ ଟିକିଏ ଟିକିଏ ପଦାକୁ ବାହାରିଲା । ମୁନ୍ଦରୁକୁ ଏ ସବୁ ଭଲ ନ ଲାଗିଲେ ବ କଥା ଗୁଡ଼ାକୁ ପୁରାପୁରି ଉଡ଼େଇ ଦେଇ ପାରିଲା ନାହିଁ ।

ଏତେ ବଡ଼ ପ୍ରତିଷ୍ଠାକୁ ଅରକ୍ଷ ଅବସ୍ଥାରେ ମଉଳି ଯିବାକୁ ଦେବା ବୁଦ୍ଧିମତାର ପରିଚାୟକ ନୁହେଁ । ହରି ଠିକ୍ କଲା ଯେ ତାର ଏ ପ୍ରତିଷ୍ଠାକୁ ବଂଶ ପରଂପରାନୁକ୍ରମେ ହସ୍ତାନ୍ତରିତ କରିବାକୁ ହେବ । ବଂଶର ପରମ୍ପରା ରକ୍ଷା କରିବାକୁ ଜାୟା ଦରକାର । ସେ ଜାୟାର ସନ୍ଧାନ ସେ ଡାକ୍ତରଖାନାରେ ବେମାର ହୋଇ ପଡ଼ିଥିବାବେଳେ ପାଇଥିଲା । ତାର ଶୁଭାଗମନ ପାଇଁ କିନ୍ତୁ ଅର୍ଥର ଆବଶ୍ୟକ । ଶ୍ରମିକମାନେ ଆଉ ଚାନ୍ଦା ଦେଇପାରିବେ ନାହିଁ । କାରଣ ଯେତିକ ଆଦାୟ ହେଉଥିଲା ସେତିକ ପାଇଁ ଅନେକ ଶ୍ରମିକ ଗୁଞ୍ଜନ ଆରମ୍ଭ କରିଥିଲେ । ଏଣେ ହରି ପେଟ ଭିତରେ 'ପିତା' ହେବାର ଡାକ କାନ ଓ ଗୁଣ୍ଡ ଫଟେଇ ଦେଉଥାଏ । ଶେଷରେ ଗୋଟିଏ ଉପାୟ ବାହାର କଲା ।

ସୀତାକାନ୍ତ ବାବୁ ତାଙ୍କ କୋଠରୀରେ ବସି ଥାଆନ୍ତି । ନିଜ ପାଇଁ ତାଙ୍କର ଚିନ୍ତା ନ ଥାଏ । କାରଖାନା ଭାଙ୍ଗିଗଲେ ବି ପେଟ ପୋଷିବାର ସାମର୍ଥ୍ୟ ତାଙ୍କର ଥିଲା । ଶ୍ରମିକମାନଙ୍କର ଉଚ୍ଛୃଙ୍ଖଳତା ଓ କର୍ମକୁଣ୍ଠ ଭାବ ତାଙ୍କୁ ବିବ୍ରତ କରି ରଖିଥାଏ । ସବୁଠାରୁ ବେଶି ଦରମା ସୁଖସ୍ୱାଚ୍ଛନ୍ଦ୍ୟ ଦେଲେ ସୁଦ୍ଧା ସେମାନେ ତୃପ୍ତ ନୁହନ୍ତି । ଗୋଟାଏ ଜାଲଆଡ୍ ଟାଉଟରର କଥାରେ ପଡ଼ି ନିଜର ସର୍ବନାଶକୁ ଡାକି ଆଣୁଛନ୍ତି । ଓଲୁଗୁଡ଼ାକ ଦେଖିପାରୁ ନାହାନ୍ତି ସେମାନେ ନିଜେ କପରି ଅଛନ୍ତି ଆଉ ସେମାନଙ୍କର ତଥାକଥିତ ସେବକ ନେତା ହରି କି ଅବସ୍ଥାରେ ରହୁଛି । ତାଙ୍କଠୁ ଦୁହାଁ ହୋଇ ଯାଉଥିବା ଅଧିକା ଧନ ଯଦି ଶ୍ରମିକମାନଙ୍କ ପେଟରେ ପଡ଼ୁଥାଆନ୍ତା ତେବେ ତାଙ୍କ ମନ ଖୁବ୍ ଆନନ୍ଦିତ ହେଉଥାଆନ୍ତା । ଏବେ ହେଉଛି କଅଣ ? ସେମାନଙ୍କ ପେଟରୁ ଛଡ଼େଇନେଇ ଟାଉଟରଟା ବେଶ୍ ଆରାମରେ ବସି କାଳ କଟଉଛି । ଓଲୁଗୁଡ଼ାକ କିଏ ରକ୍ତ ଶୋଷୁଛି ଜାଣିପାରୁ ନାହାନ୍ତି । ସେ ଦେଇ ହେଇଛନ୍ତି ରକ୍ତଶୋଷକ ଆଉ ହରି ରକ୍ତଶୋଷି ହୋଇଛି ନେତା, ରକ୍ଷକ । କେତେ ଦିନେ ଠେକ ଶିଖିବେ ଶିଖନ୍ତୁ, ଏଇସବୁ ଭାବନାରେ ତାଙ୍କ ମୁଣ୍ଡ ଭାରାକ୍ରାନ୍ତ ହୋଇ ଉଠିଥାଏ । ଠିକ୍ ସେତିକବେଳେ ଶ୍ରମିକନେତା ହରି ପଶିଯାଇ ସରୁ ନମସ୍କାରଟିଏ ଜଣାଇଲେ । ଗୋଡ଼ରୁ ଜୋତାକାଢ଼ି ସେକଦେବାକୁ ସୀତାକାନ୍ତବାବୁଙ୍କ

ମନ କପ କପ ହୋଇ ଉଠିଲା; ପରକ୍ଷଣରେ ସେ ନିଜକୁ ସମ୍ଭାଳିନେଲେ । ମୁହଁରେ ଜୋର ଜବରଦସ୍ତି ହସ ଟିକିଏ ଖୁଟିଦେଇ ପଚାରିଲେ—"କଅଣ ଆଜ୍ଞା କି ଦରକାର ।"

ହରୁ ଚଉକିରେ ବସିପଡ଼ି ଆରମ୍ଭ କଲା "ଦେଖନ୍ତୁ ସୀତାକାନ୍ତ-ବାବୁ, ମୁଁ ଥରେ ଆସିଥିଲି । ଆପଣ ସେତେବେଳେ ମୋତେ ଅପମାନ ଦେଇ ଫେରାଇ ଦେଇଥିଲେ । ମୋ ହୃଦୟଟା ପଥର ନୁହେଁ । ମୁଁ ପୁଣିଥରେ ଆସିଛି । ଆପଣଙ୍କ ସହିତ ଶ୍ରମିକମାନଙ୍କର ଗୋଟାଏ ସ୍ଥାୟୀ ମିଳାମିଶା କରେଇ ଦେବି । ଖୁବ୍ ହୋଇଗଲାଣି । ଆଉକୁ ମାଲିକ ଓ ଶ୍ରମିକ ଉଭୟେ ଶାନ୍ତିରେ ରହନ୍ତୁ ଏହା ହିଁ ମୋର ଇଚ୍ଛା । ଆପଣଙ୍କର ମତ କଅଣ ?"

ସାପ ଯେ ପୁଣି ଏକ ଚୋଟ ପକାଇବାକୁ ଫଣା ଟେକୁଛି ତାହା ବୁଝିବାକୁ ସୀତାକାନ୍ତବାବୁଙ୍କର ଆଉ ବାକି ରହିଲା ନାହିଁ । ସେ ବି ପଦୁଚୋଳା ବୋଲି ସାପକୁ ଫେଡ଼ି ଭିତରୁ ପଦାକୁ ଆଣିବା ଲାଗି ମନେ ମନେ ସ୍ଥିର କରିନେଲେ । ନ୍ୟୂନତା ଦେଖାଇ କହିଲେ— "ମୋତେ ଆଉ ପଚାରୁଛନ୍ତି ନା, ଏହାଠାରୁ ବଳି ଶୁଭକଥା ଆଉ କଅଣ ହୋଇପାରେ, ଆପଣଙ୍କ କଥାରେ ମୁଁ ରାଜି ।",

ସୀତାକାନ୍ତବାବୁଙ୍କୁ ଖାଲେଇରେ ପଶିବା ଦେଖି ହରୁ ମନରେ କୁଲୁରି ଉଠିଲା । ପ୍ରଫୁଲ୍ଲ ବଦନରେ କହିଲା —"ସବୁ ଠିକ୍‌ଠାକ୍ କରି ଦେବି । ପୂର୍ବ ଅବସ୍ଥା ପୁଣି ଫେରାଇ ଆଣିବି, ଆପଣ ମୋ ପାଇଁ ତେବେ କଅଣ କରିପାରିବେ କହନ୍ତୁ ।"

ହରୁର ମନକଥା ସୀତାକାନ୍ତବାବୁଙ୍କୁ ଜଳ ଜଳ ହୋଇ ଦିଶିଲା । ନିଜକୁ ଆହୁରି ସଂଯତ କରି କଅଁଳ ଭାବରେ କହିଲେ—"ଆପଣ ଯାହା କହିବେ ସେଥିରେ ମୁଁ ରାଜି ।"

ସୀତାକାନ୍ତବାବୁ ଯେ ପୁରାପୁରି ଆୟତ୍ତାଧୀନ ତାହା ହରୁକୁ ପରିଷ୍କାର ଜଣାପଡ଼ିଗଲା । ଆହୁରି ଆଗରୁ ଏ ପଦକ୍ଷେପ ନେବା ଉଚିତ୍

ଥିଲା ବୋଲି ଧାରଣା ହେଲା । ନିଃସଙ୍କୋଚ ଭାବରେ ବେପାରୀର ଲାଭକ୍ଷତିର ଫର୍ଦ୍ଦ ଥୋଇ ସେ କହିଲା "ଦେଖନ୍ତୁ ପୂର୍ବପରି ଆପଣଙ୍କ କାରଖାନାରେ କାମ ଚାଲୁ ହୋଇଗଲେ ଆପଣଙ୍କର ମାସକୁ ଲକ୍ଷେ ଦଶହଜାର ଟଙ୍କା ଅଧିକା ପାଇବେ । ଆପଣ ଲକ୍ଷେ ରଖି ମୋତେ ଦଶହଜାର ଦେଇ ଦିଅନ୍ତୁ । ମୁଁ କିଛି ସବୁବେଳେ ଆପଣଙ୍କୁ ମାଗୁନି, ମାତ୍ର ଥରକ ପାଇଁ କିନ୍ତୁ ଏଇଟା ଆପଣଙ୍କୁ ଆଗତୁରା ଦେବାକୁ ପଡ଼ିବ ।"

ସୀତାକାନ୍ତବାବୁ ଦେଖିଲେ ସାପ ପୁରାପୁରି ପେଡ଼ିରୁ ବାହାରି ପଡ଼ିଛି । ଆଉଟିକୁ ଭଲକରି ଖେଳାଇବାକୁ ହେବ । ପୂର୍ବପରି ଧୀରସ୍ଥିର ଭାବରେ ସେ କହିଲେ "ମୁଁ ରାଜି ଅଛି କିନ୍ତୁ ଦେଖନ୍ତୁ ମୋତେ ସପ୍ତାହେ ସମୟ ଦିଅନ୍ତୁ । ଆପଣତ ମୋର ଏକ ପ୍ରକାର ଦେବାଳିଆ ଅବସ୍ଥା ଜାଣନ୍ତି । ସାଙ୍ଗେ ସାଙ୍ଗେ ମୋ ପାଖରେ ଟଙ୍କା ନାହିଁ । ଆର ଗୁରୁବାର ଦିନ ଦଶଟା ବେଳକୁ ଏଇଠିକି ଆସିବେ, ମୁଁ ସଙ୍ଗେ ସଙ୍ଗେ ଟଙ୍କାଟା ଦେଇଦେବି । ଯାହାହେଉ ଆପଣ ଯେ ମୋ ପ୍ରତି ସଦୟ ହୋଇଛନ୍ତି, ସେଥିପାଇଁ ମୁଁ ଚିର କୃତଜ୍ଞ ।"

ଦୁହେଁ ଦୁହିଁଙ୍କୁ ଖାଲେଇରେ ଭର୍ତ୍ତିକରି ପାରିଛନ୍ତି ଭାବି ବେଶ୍ ଆନନ୍ଦ ଅନୁଭବ କଲେ । ହରି ବିଜୟୀ ଯୋଦ୍ଧାପରି ପ୍ରଫୁଲ୍ଲ ହୃଦୟରେ ସେଠାରୁ ଫେରିଲା ।

ହରି ମନେ ମନେ ଠିକ୍ କଲା ଯେ ସେ ଏଇ ଛଅଦିନ ଭିତରେ ତା କ୍ଷମତାର ଅପର ପାଖଟା ସୀତାକାନ୍ତ ବାବୁଙ୍କୁ ଦେଖାଇ ଦେବ, ତାହାହେଲେ ସେ ତା ପ୍ରତି ସବୁବେଳେ ଅନୁଗତ ହୋଇ ରହିବେ । ସୀତାକାନ୍ତବାବୁ ଜାଣିଥାନ୍ତି ଯେ ତାକୁ ଯେମିତି ଭାଙ୍ଗି ଆସେ ସେମିତି ଗଢ଼ି ବି ଆସେ ।

ତାର ଅଗ୍ନକ ପରିବର୍ତ୍ତନରେ ଶ୍ରମିକମାନେ ଟିକିଏ ବିବ୍ରତ ହୋଇପଡ଼ିଲେ । ସେମାନଙ୍କ ମୁହଁରେ ପ୍ରଶ୍ନବାଚୀର ଚିହ୍ନ ଦେଖି ସେ

କହିଲା—"ଦେଖ ମୁଁ ହେଉଛି ସେନାପତି, ଆଉ ତୁମ୍ଭେମାନେ ସୈନିକ । କେତେବେଳେ ଆଗେଇବ, କେତେବେଳେ ପଛେଇବ ତାହା ମୁଁ ଜାଣେ ଓ ସେହି ଅନୁଯାୟୀ ମୁଁ ଆଦେଶ ଦେବି । ତୁମର ଆଖି ବୁଜି ତାହା ପାଳନ କରିବା ଉଚିତ । ଯାହା କହୁଛି କରଯାଅ, ପଚରି ପଚରି କଲେ ଯୁଦ୍ଧ କୌଶଳ ଭଣ୍ଡୁର ହୋଇଯିବ ।"

ସନ୍ଦେହ ମନରେ ଶ୍ରମିକମାନେ ଆଜ୍ଞାର କିଛି ଅଂଶ ପୂରଣ କଲେ । କାରଖାନାରେ ଉତ୍ତେଜନା ଦେଖାଦେଲା ।

ଧାର୍ଯ୍ୟ ହୋଇଥିବା ଗୁରୁବାରଟି ଆସିଗଲା । ନିର୍ଦ୍ଧାରିତ ସମୟରେ ହରି ସୀତାକାନ୍ତ ବାବୁଙ୍କ ଘରକୁ ଯାଇ ତାଙ୍କ ପାଖ ଚଉକିରେ ବସିଲେ । ସୀତାକାନ୍ତ ବାବୁ ଟଙ୍କା ଯୋଗାଡ଼ ହୋଇଥିବା କଥା ଜଣାଇ ଦୁଃଖ ସୁଖ ହେବାକୁ ତାଙ୍କୁ କିଛି ସମୟ ସେଠି କଟେଇବା ଲାଗି ବାଧ କଲେ । ହରି ଆନନ୍ଦରେ ହୃଦୟଫୁଟା ଖୋଲିଦେଲା ।

ସୀତାକାନ୍ତ ବାବୁ କହିଲେ "ଏ ଟଙ୍କାଟାକୁ ଆଉ ସାଉ ଉଡ଼େଇ ଦେବେ କାହିଁକି, ହାତକୁ ଦି'ହାତ ହୋଇପଡ଼ ଘରଟିଏ ଗଢ଼ନ୍ତୁ, କେତେଦିନ ଆଉ ଏପରି ଲଗାମଛଡ଼ା ହୋଇ ବୁଲିବେ ?"

ହୋ ହୋ ହୋଇ ହସିଉଠି ହରି କହିଲେ, ମୋ ପେଟ କଥା ଜାଣି ପକେଇଲେ ଆପଣ । ଆପଣଙ୍କ ଶୁଭେଚ୍ଛାରୁ ଶ୍ରୀମତୀ ମଳିକ ଆସନ୍ତା ଫେବୃଆରି ୧୩ ତାରିଖ ଦିନ ମୋ ସହିତ ରେଜେଷ୍ଟ୍ରି ବିବାହ ସୂତ୍ରରେ ଆବଦ୍ଧ ହେବେ । ତାଙ୍କ ଘର କେରଳରେ । ସେ ଏଠି ନର୍ସ କାମ କରନ୍ତି ।"

"ଯାହା ହେଉ ସୁଖର କଥା, ଦେଖନ୍ତୁ ଏ ଟଙ୍କା ଆଉ କିଛିରେ ଖର୍ଚ୍ଚ କରିବେ ନା ।"

"ଏଇଥିଲାଗି ତ ଟଙ୍କା ଦରକାର ହେଲା, ଆଉ କାହିଁରେ ଖର୍ଚ୍ଚ କରିବି କାହିଁକି ?"

"ଆଉ ଦେଖନ୍ତୁ ଶ୍ରମିକମାନେ ଟିକଏ ଉଦ୍ଧତ ହୋଇ ପଡ଼ୁଛନ୍ତି : ସେମାନଙ୍କ ସଙ୍ଗେ କଥାବାର୍ତ୍ତା କରିବାକୁ ମୋତେ ଡର ଲାଗୁଛି । ସେମାନଙ୍କୁ ଜବତ କରି ରଖିବା ଭାର ଆପଣଙ୍କ ଉପରେ ।"

"ଆପଣ ସେ ସବୁ ବିଷୟରେ ନିଶ୍ଚିନ୍ତ ରହନ୍ତୁ । ସେ ଗୁଡ଼ାକ ଭେଡ଼, ଯୁଆଡ଼େ ଅଡ଼େଇବ ସିଆଡ଼େ ଯିବେ । ବୋକା ଗୁଡ଼ାଙ୍କର ମୁଣ୍ଡ ଥିଲେ ସିନା ଭାବିବେ । କଏ କଏ ବେଶୀ କଥାଳ କରୁଛନ୍ତି କହନ୍ତୁ ନା, ମୁଁ ସେମାନଙ୍କୁ ଠିକ୍ ବନେଇ ଦେବି, ତାଙ୍କ ବିଷଦାନ୍ତ ଭାଙ୍ଗିଦେବି ।"

ସୀତାକାନ୍ତ ବାବୁ ତାଙ୍କ ଆଗରେ ନୋଟ୍‌ବନ୍ଦ ଗଣିବାକୁ ଲାଗିଲେ । ନୋଟ୍‌ର ରୂପଶ୍ରୀରେ ଉଲୁସିଉଠି ହରି ଆତ୍ମବିସ୍ମୃତ ହୋଇପଡ଼ିଲେ । ସୀତାକାନ୍ତ ବାବୁଙ୍କୁ ଆହୁରି ଆପଣାର କରିବାକୁ ଯାଇ କହିପକାଇଲେ— "ଦରକାର ପଡ଼ିଲେ ଏଠାର ସମସ୍ତ ଶ୍ରମିକଙ୍କୁ ନିକାଳି ଦେଇ ନୂଆ ଶ୍ରମିକ ନିଯୁକ୍ତ କରିଦେବା । ଆଗ ଶ୍ରୀମଣ୍ଟ ମାଲିକ ଆସିଯାଆନ୍ତୁ, ଆପଣ ଦେଖିବେ ମୁଁ ଆପଣଙ୍କ ପାଇଁ କଅଣ କରିପାରେ । ଆପଣ—"

ପାଟି କଥା ପାଟିରେ, ହଠାତ୍ ପୃଥିବୀ ଯେପରି ଲେଉଟି ପଡ଼ିଲା, ପଛପାଖ ଘରୁ କବାଟଟାକୁ ପେଲିଦେଇ ଘୋର ଚିତ୍କାର ଓ ଗାଳି ବର୍ଷଣ ସହ ପ୍ରାୟ ଦଶ କୋଡ଼ିଏ ଜଣ ତାଗଡ଼ା ତାଗଡ଼ା ଶ୍ରମିକ ହରି ପାଖକୁ କ୍ଷେପି ଆସିଲେ । ହରିର ବେକକୁ ଚଣ୍ଡିଆ ଉପରେ ଚଣ୍ଡିଆ ଦେଇ ପଦାକୁ ନେଇଗଲେ । ଘର ଭିତରକୁ ଖାଲି ଦୁମଦାମ୍, ମରିଗଲି ମରିଗଲି, ପୁଅର ମାମୁଁ ପଦ, ଜନ୍ମର ବୈଧତା ବିଷୟରେ ସନ୍ଦେହୋକ୍ତି ଇତ୍ୟାଦି ଶୁଭୁଥାଏ । ଯେଉଁ କେତେଜଣ ଘର ଭିତରେ ରହିଗଲେ ସେମାନଙ୍କୁ କୁଣ୍ଢେଇ ପକାଇ ସୀତାକାନ୍ତ ବାବୁ ଲୁହ ଛଳ ଛଳ ଆଖିରେ କହିଲେ —"ଆଃ ମୋର ଆଜି କି ଆନନ୍ଦର ଦିନ । ତୁମେ ସବୁ ଠିକଣା ବାଟଟା ଦେଖିପାରିଛ । ଯାହା କିଛି ମୁଁ ଦେଇଥିଲି ସବୁ ତୁମ ପେଟରେ ପଡ଼ିଥିଲେ ମୁଁ କେତେ ଖୁସି ହୋଇଥାନ୍ତି । ଏ ଦଶହଜାର ଟଙ୍କା ବାଣ୍ଟି କୁଣ୍ଟି ନିଅ । ମୁଁ ମଲାପରେ କାରଖାନାଟିକୁ କେମିତି ନିଜେ ନିଜେ ଚଳେଇ ପାରିବ ତାହା ଶିଖ ।"

# ଓଜନ ମାପ ସପ୍ତାହ

ଓଜନ-ମାପ ବିଭାଗର ମନ୍ତ୍ରୀ ନିଜ ଡ୍ରଇଂରୁମ୍‌ର ଉତ୍ତର-ଉତ୍ତର ପୂର୍ବ କୋଣରେ କେନ୍ଦ୍ରର ୫. ୩ ମିଟର ଦୂରରେ ୧୫ ମିନଟ ୫ ସେକେଣ୍ଡ ହେଲା ବସିଛନ୍ତି । ଚଉକିରେ ଥିବା ୧୦ ସେଣ୍ଟିମିଟର ଡନ୍‌ଲୋପିଲୋ ଗଦି ୨.୫ ସେଣ୍ଟିମିଟର ତଳକୁ ଦବିଯାଇ ମନ୍ତ୍ରୀଙ୍କର ୧.୫ ମିଟର ଲମ୍ବ ଓ ୭୦ କିଲୋଗ୍ରାମ ଓଜନ ବିଶିଷ୍ଟ ଶରୀରକୁ ସମ୍ଭାଳୁ ଥିଲା । ମନ୍ତ୍ରୀ ୧୩୫ ଡିଗ୍ରୀ ଅଣ୍ଟା କୋଣ ଓ ୧୪୦ ଡିଗ୍ରୀ ଆଣ୍ଠୁ କୋଣ କରି ବସିଥିଲେ । ତାଙ୍କ ହାତ ଦୁଇଟି ପରସ୍ପର ସହିତ ୫୭ ଡିଗ୍ରୀ କୋଣ କରି ମିଳିତାଙ୍ଗୁଷ୍ଠି ସହ ଜାନୁ ଉପରେ ନିଶ୍ଚେଷ୍ଟ ହୋଇ ପଡ଼ି ରହିଥିଲେ । ମନ୍ତ୍ରୀଙ୍କଠାରୁ ୧୦ ଠାରୁ ୧୨ ମିଟର ବ୍ୟବଧାନରେ ୫ ଜଣ ଭଦ୍ର ବ୍ୟକ୍ତି ଅଣ୍ଟା କୋଣକୁ ଯଥାକ୍ରମେ ୯୦, ୮୫, ୮୦ ଓ ୭୨ ଡିଗ୍ରୀ କରି ବସିଥାଆନ୍ତି । ୯୦ ସେଣ୍ଟିମିଟର ୩ ବ୍ଲେଡ ବିଶିଷ୍ଟ ୫୦ ଓ୍ୱାଟିଆ ଏକ ଫ୍ୟାନ୍ ଉପରେ ମିନିଟକୁ ୭୨୫ ଥର ଘୂରି ୩୦ ଡେସିବେଲ୍ ଶବ୍ଦ ସୃଷ୍ଟି କରୁଥିଲା । ଭଦ୍ରବ୍ୟକ୍ତିମାନଙ୍କର କଥାବାର୍ତ୍ତା ବେଳେବେଳେ ଗଣ୍ଡଗୋଳକୁ ୭୦ ଡେସିବେଲ୍ ଯାଏ ବଢାଇ ଦେଉଥିଲା ଗୃହର ଆଲୋକନ ୩୦ ଫୁଟ କ୍ୟାଣ୍ଡେଲ୍, ଉତ୍ତାପ ୩୭.୫ ଡିଗ୍ରୀ ସେଣ୍ଟିଗ୍ରେଡ ଏବଂ ଆର୍ଦ୍ରତା ୧୫ ଡିଗ୍ରୀ ଥିବାରୁ ପରିବେଶଟି ୪.୫ ୟୁନିଟ୍ ଆମୋଦ-ଦାୟକ ହୋଇଥାଏ । ଉତ୍ତର ପଶ୍ଚିମ କୋଣରେ ୪.୫ ଡେସିମିଟର ଉଚ୍ଚ ୩ ଡେସିମିଟର ଚଉଡ଼ା ଓ ୭ ଡେସିମିଟର ଲମ୍ବା ବିଶିଷ୍ଟ ଏକ ସଜ୍ଜିତ ଟେବୁଲ ଉପରେ ଏକ କିଲୋଗ୍ରାମ ମାପ କ୍ଷମ ଏକ ଦଣ୍ଡୀ ଝୁଲି ଓଜନ ମାପ ମନ୍ତ୍ରୀଙ୍କ ଦପ୍ତରର ଗୌରବ ୭୦ ୟୁନିଟ୍ ଯାଏ ବଢ଼ାଇ ଦେଇଥାଏ ।

ଜଣେ ଭଦ୍ରବ୍ୟକ୍ତି ହଠାତ୍ ଅଣ୍ଟା କୋଣକୁ ୮୦ ଡିଗ୍ରୀ କରି ଓ ଆଙ୍ଗୁଠି ମଳମଳ କହିଲେ—"ଆଜ୍ଞା ଆମ ପ୍ରଦେଶରେ ଓଜନ ମାପ କାମ

ଆଶାନୁରୂପ ହୋଇପାରୁନ ବୋଲି ଲୋକେ କଥାବାର୍ତ୍ତା ହେଉଥିବାର ମୁଁ ଶୁଣିଛି । ଏହାର ବହୁତ ପ୍ରତିକାର ହେବା ଉଚିତ୍ । ତା ନ ହେଲେ ଜନ ଅସନ୍ତୋଷ ବଢ଼ିବ ।"

ମନ୍ତ୍ରୀଙ୍କ ମୁଖମଣ୍ଡଳରେ ୩ ୟୁନିଟ୍ ଅସନ୍ତୋଷର ସୂଚନା ଦେଖା ଦେଲା । ନାସିକା ପାର୍ଶ୍ୱ ୫ ମିଲିମିଟର ଉପରକୁ ଉଠିଗଲା । ୫୦ ଡେସି-ବେଲ୍ ସ୍ୱରରେ ସେ କହିଲେ—"ଓଜନ ମାପ ମନ୍ତ୍ରୀକୁ ଏପରି ବେହିସାବୀ କଥା କହିଲେ ମନ୍ତ୍ରୀ କରିବେ କଅଣ ? ଓଜନ ମାପ କାମପାଇଁ କେତେ ୟୁନିଟ୍ ଆଶା ଦରକାର : କେତେ ହୋଇଛି : ଏଥିପାଇଁ ଜନ ଅସନ୍ତୋଷ କେତେ ୟୁନିଟ୍ ହୋଇଛି : କେତେଦିନ ଡେରି ହେଲେ କେତେ ୟୁନିଟ୍ କରି ଅସନ୍ତୋଷ ବଢ଼ିବ : ନିର୍ଦ୍ଦିଷ୍ଟ ଆଶା କେତେ ୟୁନିଟ୍ ବଢ଼ିଗଲେ ସନ୍ତୋଷ କେତେ ୟୁନିଟ୍ ଦେଖାଦେବ : ଏ ସବୁ ନ କହିଲେ ମନ୍ତ୍ରୀ କରୁଟା ବୁଝିବେ ।"

ଭଦ୍ରବ୍ୟକ୍ତି ଜଣକ ୫୫ ୟୁନିଟ୍ ଘାବରେଇ ଗଲେ । ମନ୍ତ୍ରୀଙ୍କର ଏପରି ପ୍ରଶ୍ନର ତୋଫାନକୁ ସମ୍ଭାଳିବାର ଶକ୍ତି ତାଙ୍କର ନ ଥିଲା । କିଛି ଗୋଟାଏ ଉତ୍ତର ଦେବା ଲାଗି ସେ ନିଜ ମସ୍ତିଷ୍କକୁ ୩ ଅସିଲେସନ୍ ସେକେଣ୍ଡ ବେଗରେ ଘର୍ଷିବାକୁ ଲାଗିଲେ । ହେଲେ ଛେପ ଢୋକିବା ହିଁ ସାର ହେଲା ମସ୍ତିଷ୍କରୁ ଏକ ମିଲିଲିଟର ବି ରସ ବାହାରିଲା ନାହିଁ ।

କଣ୍ଟ୍ରୋଲର୍ ସାହେବ ମଧ୍ୟ ସେଠି ଉପସ୍ଥିତ ଥିଲେ । ସେ ମାତ୍ର ୨ ସେକେଣ୍ଡରେ ଏ ଅବସ୍ଥାଟାକୁ ସେଣ୍ଟପର୍ସେଣ୍ଟ କଣ୍ଟ୍ରୋଲ କରି ନେଇ ମନ୍ତ୍ରୀଙ୍କୁ ବୁଝାଇଦେଲେ—"ଆଜ୍ଞା ଯେ କୌଣସି ନୂଆ କାମ ଆରମ୍ଭ କଲେ ଆଶା ୫୦ ୟୁନିଟ୍ ଥାଏ । କାମର ଅଗ୍ରଗତି ସଙ୍ଗେ ସଙ୍ଗେ ଆଶାର ୟୁନିଟ୍ ବଢ଼ୁଥାଏ । କାମ ସଂପୂର୍ଣ୍ଣ ହେଲେ ଆଶା ୧୦୦ ୟୁନିଟ୍ ହୋଇ ତୃପ୍ତ ହୋଇଯାଏ । ଆଉ ବଢେ ନାହିଁ । ଏହା ହିଁ ଆଶାର ଉପର ସୀମା । ସେହିପରି କାମ ନ ହେଲେ ଆଶା ୫୦ ରୁ କମେ । କାମ ପୁରାପୁରି ଭଣ୍ଡୁର ବା ନିଷ୍ଫଳ ହେଲେ ଆଶା କମିଆସି ୧ରେ ପହଞ୍ଚେ ଓ ତା'ପରେ ଲୋପ ପାଇଯାଏ । ଏହା ହେଉଛି ଆଶାର ନିମ୍ନ ସୀମା । ତା ତଳକୁ ଆଶା

ସମ୍ପୂର୍ଣ୍ଣ ଲୋପ ପାଇଯାଏ । ଜନସାଧାରଣଙ୍କର ଆଶା ୨୫ ପ୍ୱଏଣ୍ଟ୍‌ରୁ ଖସିବା ଫଳରେ ସେମାନଙ୍କଠାରେ ୩ ପ୍ୱଏଣ୍ଟ୍ ଅସନ୍ତୋଷ ଦେଖା ଦେଲଣି । ଆଶା ଯେଉଁ ରେଟ୍‌ରେ ଖସି ଆସୁଛି ସେଥିରେ ଯଦି ୩୦ ଦିନ ଭିତରେ କିଛି ପ୍ରତିକାର କରାନଯାଏ ତେବେ ଅସନ୍ତୋଷ ୩୩ ପ୍ୱଏଣ୍ଟ୍‌କୁ ଶୀଘ୍ର ଟପିଯିବ ।”

ଏତିକିବେଳେ ମନ୍ତ୍ରୀ ବାଧା ଦେଇ କହିଲେ—“ଆଚ୍ଛା କଣ୍ଟ୍ରୋଲର ବାବୁ ! ଡ଼ିସ୍‌କଣ୍ଟେଣ୍ଟମେଟ୍ରି (ଅସନ୍ତୋଷ ମାପ)ର ଗ୍ରାଫଟା ଟିକିଏ ପଢ଼ି ଦେବଟି, ଭୁଲିଗଲି ।”

କଣ୍ଟ୍ରୋଲର୍ ୪୦ ସେଣ୍ଟିମିଟର ଲମ୍ବା ୨୫ ସେଣ୍ଟିମିଟର ଚଉଡ଼ା ଓ ୫ ସେଣ୍ଟିମିଟର ମୋଟର ଏକ ଫାଇଲରୁ ଡ଼ିସ୍‌କଣ୍ଟେଣ୍ଟମେଟ୍ରି ଗ୍ରାଫଟା କାଢ଼ି ଆଖି ବୁଲାଇ ନେବାପରେ କହିଲେ—“ଅସନ୍ତୋଷ ୧ ରୁ ୩୩ ପ୍ୱଏଣ୍ଟ୍ ଯାଏ ମୁଣ୍ଡ ଭିତରେ ଆବଦ୍ଧ ଥାଏ । ୩୩ ରୁ ୬୦ ପ୍ୱଏଣ୍ଟ୍ ଯାଏ ପାଟିରେ ପ୍ରକାଶ ପାଏ । ୬୦ ରୁ ୧୦୦ ପ୍ୱଏଣ୍ଟ୍ ପର୍ଯ୍ୟନ୍ତ ହାତ, ଗୋଡ଼ରେ ପ୍ରକାଶ ପାଏ । ୧—୩୩ ଭିତରେ ଲୋକେ କେବଳ ମନରେ ଅସନ୍ତୁଷ୍ଟ ହୁଅନ୍ତି । ବାହାରକୁ ତାହା ପ୍ରକାଶ ପାଏ ନାହିଁ । ୩୩–୬୦ ପ୍ୱଏଣ୍ଟ୍‌ରେ ଲୋକେ ଗାଳି ଗୁଲଜ, ସଭାସମିତି ଓ ନାନାପ୍ରକାର ଆତଙ୍କଜନକ ଧ୍ୱନି ପ୍ରଦାନ କରନ୍ତି, ମାତ୍ର କ୍ଷତି ଘଟାନ୍ତି ନାହିଁ । ୬୦–୧୦୦ ପ୍ୱଏଣ୍ଟ୍ ବଡ଼ ବିପଦ-ଜନକ ଅବସ୍ଥା । ଏଥିରେ ଲୋକେ ଭଙ୍ଗାରୁଜା କାମ କରିବା, ନିଆଁ ଲଗେଇବା’ ହାତବୋମା ଫୋପାଡ଼ିବା କାମରେ ମାତନ୍ତି । ୧୦୦ ପ୍ୱଏଣ୍ଟ୍ ଅସନ୍ତୋଷ ଖୁବ୍ କ୍ୱଚିତ୍ ଦେଖାଯାଏ । ଫ୍ରାନ୍‌ସ ଓ ରୁଷ୍ ରାଷ୍ଟ୍ରବିପ୍ଳବରେ କେବଳ ଏହା ୧୦୦ ପ୍ୱଏଣ୍ଟ୍ ଯାଏ ଉଠିଥିଲା । ଏବେ ଆମ ଲୋକଙ୍କ ଓଜନ ମାପ ବିଷୟକ ଅସନ୍ତୋଷ ମାତ୍ର ୩ ପ୍ୱଏଣ୍ଟ୍‌ରେ ପହଞ୍ଚିଛି । ଆଶୁ ପ୍ରତିକାର କରି ଏହାକୁ ଶୂନ୍‌କୁ ଖସାଇ ଦେବାକୁ ହେବ । ନାନା ଅଭାବ ଅସୁବିଧା ଯୋଗୁ ଆମକୁ ମାତ୍ର ୨୫ ଉପର୍ ପ୍ୱଏଣ୍ଟ୍‌ରେ କାମ କରିବାକୁ ପଡ଼ୁଛି—”

ମନ୍ତ୍ରୀ ୭୫ ଡେସିବେଲ ସ୍ୱରରେ ହଠାତ୍ କହି ଉଠିଲେ “ଆଉକୁ ୭୦ ଉପର୍ ପ୍ୱଏଣ୍ଟ୍‌ରେ କାମ କର । ୨୫ ପ୍ୱଏଣ୍ଟ୍‌ରେ ଆଉ କାମ ହୋଇ

ପାରିବନି । ଖାଲି ୬୦ ଉପର୍ ପ୍ଫୁନଟ୍ ହେଲେ ଚଳିବନି, ତା ସଙ୍ଗରେ ୬୦ ପ୍ଫୁନଟ୍ ନଷ୍ଟା ଯୋଗକରି କାମ କର । ତା ନ ହେଲେ କିଛି ହୋଇ ପାରିବନି ।"

ସଳଖ ହୋଇପାଇ କଣ୍ଟ୍ରୋଲର କହିଲେ "ଆଜ୍ଞା ମୁଁ ୬୦ ଉପର୍ ପ୍ଫୁନଟ୍ ଓ ୮୦ ପ୍ଫୁନଟ୍ ନଷ୍ଟାର ସହ କରିପିବ । ଆପଣ ନିଶ୍ଚିନ୍ତ ରହନ୍ତୁ ।

ହଠାତ୍ ପଦାରେ ଏକ ଜିପ୍ ୬୫ ଡେସିବେଲ୍ ଶବ୍ଦ କରି ୬୦ କିଲୋଗ୍ରାମ ସ୍ପିଡରେ ବ୍ରେକ୍ ଦେଲା । ଜଣେ ଦେଡ଼ ମିଟରିଆ ଗୋରା ଆସିଷ୍ଟାଣ୍ଟ କଣ୍ଟ୍ରୋଲର ଘର ଭିତରକୁ ଆସି ୧୬୦ ଡିଗ୍ରୀର ବେକ କୋଣ କରି ନମସ୍କାରଟିଏ କଲେ । ମନ୍ତ୍ରୀଙ୍କ ମୁଖମଣ୍ଡଳରେ ୫ ପ୍ଫୁନଟ ପ୍ରସନ୍ନତା ଦେଖାଦେଲା । ସେ ୫୦ ଡେସିବେଲ୍ ସ୍ୱରରେ କହିଲେ—"କହୋ ତୁମେ ପରି ଓଜନମାପ ସପ୍ତାହ ଉପଲକ୍ଷେ ଏକ ପ୍ରଦର୍ଶନୀ କରୁଛ ? କାହିଁ ମୁଁ ତ ତାର ୧ ପରସେଣ୍ଟ୍ ସୂଚନା ପାଉନାହିଁ । ହୋଇଛି କଅଣ ?"

ଆସିଷ୍ଟାଣ୍ଟ କଣ୍ଟ୍ରୋଲର ଯଥାବିଧି ୮୦ ପ୍ଫୁନଟ୍ ଭକ୍ତିର ସହ ଉତ୍ତର ଦେଲେ—"ଆଜ୍ଞା, ପ୍ରଦର୍ଶନୀ ସେଣ୍ଟ୍ ପରସେଣ୍ଟ୍ ରେଡ଼ି, ଆପଣଙ୍କୁ ଡାକିବାକୁ ଆସିଲି । ପ୍ରଦର୍ଶନୀ ଆପଣ ଉଦ୍‌ଘାଟନ କରିବେ । ତାପରେ ଆପଣ ବକ୍ତୃତା ଦେବେ । ତାପରେ ମନୋରଞ୍ଜନ କାର୍ଯ୍ୟକ୍ରମରୁ କିଛି । ସଭା ଶେଷରେ ସାମାନ୍ୟ ଲୃହା ପାନର ବ୍ୟବସ୍ଥା କରିଛୁ । ଆଉ ମାତ୍ର ପନ୍ଦର ମିନଟ୍ ବାକି । ସେକ୍ରେଟେରି ପ୍ରଦର୍ଶନୀ ମଣ୍ଡପ ପାଖରେ ଅପେକ୍ଷା କରିଛନ୍ତି । ଆପଣ ଶୀଘ୍ର ଆସନ୍ତୁ ।"

ଏସବୁ ବ୍ୟବସ୍ଥା କଥା ମନ୍ତ୍ରୀ ଭୁଲି ଯାଇଥିଲେ । ମନେ ପଡ଼ିପିବାରୁ ସଙ୍ଗେ ସଙ୍ଗେ କଣ୍ଟ୍ରୋଲରଙ୍କ ଗହଣରେ ଗାଡ଼ିରେ ବସିଲେ । ଗାଡ଼ିଟି ୬୦ କିଲୋମିଟର ବେଗରେ ପ୍ରଦର୍ଶନୀ ମଣ୍ଡପ ଆଡ଼େ ଧାଇଁଲା । ମଣ୍ଡପ ପାଖରେ ପହଞ୍ଚିବାକୁ ମାତ୍ର ୧୫ ମିନଟ୍ ୧୯ ସେକେଣ୍ଡ ଡେରି ହେଲା । ବାଟରେ ୨୦ ଲିଟର ପେଟ୍ରୋଲ ଭର୍ତ୍ତି କରିବାକୁ ପଡ଼ିବାରୁ ଏ ଡେରିଟା ହୋଇ-ଗଲା ।

ଗାଡ଼ି ପହଞ୍ଚିବା ମାତ୍ରେ ୮୦ ଡେସିବେଲ୍ ନିନାଦରେ ସ୍ଲୋଗାନ ସବୁ ସ୍ଥାନଟିକୁ କମ୍ପାଇ ଦେଲା । ସ୍ଲୋଗାନ୍‌ଗୁଡ଼ିକ ଥିଲା—'ଓଜନ ମାପ ମନ୍ତ୍ରୀ କି—ଜୟହୁ, ନୂଆ ଓଜନ ଜିନ୍ଦାବାଦ, ପୁରୁଣା ଓଜନ ମୁର୍ଦ୍ଦାବାଦ, କଣ୍ଟା ଦଣ୍ଡୀ ଜିତେ ରହୋ, କାଠ ଦଣ୍ଡୀ ଥୂ ଥୂ, ସେର ଛଟାଙ୍କ ନେବୁ ନାହିଁ, କିଲୋଗ୍ରାମ ବଟକରା ଆମର ଦାବି । ଦଣ୍ଡୀମାର ଦଳ ନିପାତ ହେଉ ।

ସ୍ଲୋଗାନ୍ ପରେ ଗୋଳ ୪୦ ଡେସିବେଲ୍‌କୁ ଖସି ଆସିଲା । ସେକ୍ରେଟେରି ଓ କଣ୍ଟ୍ରୋଲରଙ୍କ ଗହଣରେ ଯାଇ ମନ୍ତ୍ରୀ ଦୁଇ ମିଟର ଲମ୍ବର ନାଲି ଫିତାକୁ କଇଞ୍ଚିରେ କାଟି ପ୍ରଦର୍ଶନୀ ଉଦ୍‌ଘାଟନ କଲେ । ପ୍ରଦର୍ଶନୀକୁ ୯୦ ପର୍‌ସେଣ୍ଟ ଶିକ୍ଷଣୀୟ ହୋଇଥିବା ଦେଖି ମନ୍ତ୍ରୀଙ୍କ ମନଟରେ ୭୦ କଣ୍ଟେଣ୍ଟ ୟୁନିଟ୍‌ର ଆନନ୍ଦ ଦେଖାଗଲା । ମନ୍ତ୍ରୀ ସବୁଯାକ ପଦାକୁ କାଢ଼ିଲେ ନାହିଁ । ତାଙ୍କର ୧୦ ୟୁନିଟ୍ ଭୟ ହେଲା ଯେ ଯଦି ସେ ସବୁଯାକ ପ୍ରକାଶ କରି-ଦେବେ ତେବେ ବିଭାଗୀୟ କର୍ମଚାରୀମାନେ ତାଙ୍କର ପରି ଆନନ୍ଦିତ ହୋଇ ଯାଇ ନାହିରେ ୧ ମିଲିଲିଟର ଲେଖାଏଁ ତେଲ ପକାଇ ଚୂପ୍ ଚୂପ୍ ରହି ଯିବେ । ଆଉ ଅଧିକ ଆଗେଇବେ ନାହିଁ । ତେଣୁ ସେ ୬୫ କଣ୍ଟେଣ୍ଟ ୟୁନିଟ୍ ପେଟ ଭିତରେ ଚପି ରଖିଲେ ଏବଂ କୁନ୍ଥେଇ କୁନ୍ଥେଇ କହିଲେ— "ହୁଁ, ସାମାନ୍ୟ କିଛି ହୋଇଛି । ଏତ ମାତ୍ର ୧୦ ପରସେଣ୍ଟ । ୯୦ ପରସେଣ୍ଟ ବାକି ଅଛି । ୮୦ ୟୁନିଟ୍ ନିଷ୍ଠା, ୯୦ ୟୁନିଟ୍ ଉତ୍ସାହ ଆଉ ୭୯ ୟୁନିଟ୍ ପରିଶ୍ରମ କଲେ ସେଣ୍ଟ ପରସେଣ୍ଟ ସଫଳତା ମିଳି ପାରିବ । ପ୍ରଦର୍ଶନୀ ମନ୍ଦ ହୋଇନି । ପୁରୁଣାକାଳିଆ ଦଣ୍ଡୀ, ବଶାଦଣ୍ଡୀ, ବିଭିନ୍ନ କିସମର ଠେକେଇ କାଣୀ ଦଣ୍ଡୀ, ବାଲିଗରଡ଼ା ବଟକରା ଗଜବାଡ଼ି ପାଖରେ ଏବର କଣ୍ଟାଦଣ୍ଡୀ, ମୋହର ହୋଇଆ କିଲୋଗ୍ରାମ ବଟକରା, ମିଟର୍ ସ୍କେଲ୍, ଲିଟର କ୍ୟାନ୍ ସବୁ ଜନସାଧାରଣଙ୍କୁ ଦେଖାଇବା ଅନୁର୍ବର ମସ୍ତିଷ୍କର କାମ ନୁହେଁ । ଲୋକେ ଏ ପ୍ରଦର୍ଶନୀରୁ କିଛି ଶିଖି ପାରିବେ ନାହିଁ ବୋଲି ମୋର ସନ୍ଦେହ ହେଉନାହିଁ । ମୋଟ ଉପରେ ଏହା ଅସଫଳତାରୁ ଖୁବ୍ ଦୂରରେ ରହିଛି । ପୋଷ୍ଟରଗୁଡ଼ିକ ବି ମନ୍ଦ ହୋଇନି ।

ପ୍ରଦର୍ଶନୀ ସ୍ଥାନ ବୁଲି ଆସିବା ପରେ ମନ୍ତ୍ରୀ ମଣ୍ଡପସ୍ଥ ଚୌକୀରେ ବସିଲେ । ସେକ୍ରେଟେରି ଓ କଣ୍ଟ୍ରୋଲର ଦୁଇ ପାଖରେ ବସିଲେ । ଦେଓ୍ଵ ମିଟରିଆ, ଗୋରା ଚେଟମ୍ ଆସିଷ୍ଟାଣ୍ଟ୍ କଣ୍ଟ୍ରୋଲର୍ ବିଭାଗର କାମ ବିଷୟରେ ୨ପୃଷ୍ଠା ହାପ୍ ଫୁଲ୍ସ୍କେପ୍ କାଗଜରୁ ଲେଖାଟକ ପଢ଼ିସାରିବା ପରେ ମନ୍ତ୍ରୀ ଉଠି ବକ୍ତୃତା ଆରମ୍ଭ କଲେ । ବକ୍ତୃତାରେ ଜନ୍ମଠାରୁ ମରଣ ପର୍ଯ୍ୟନ୍ତ ସବୁ କ୍ଷେତ୍ରରେ ଓଜନ ମାପ କିପରି ଜନସାଧାରଣଙ୍କର ଏକ ଅପରିହାର୍ଯ୍ୟ ଅଙ୍ଗ ତାହା ମନ୍ତ୍ରୀ ଭଲକରି ବୁଝାଇ ଦେଇ କହିଲେ ଯେ ପିଲା ଜନ୍ମ ହେବାମାତ୍ରେ ଡାକ୍ତର ତାକୁ ମାପି ପକାଏ । ସେହି ଓଜନ ଦେଖି ପିଲାର ସ୍ୱାସ୍ଥ୍ୟ ବିଷୟରେ ଡାକ୍ତର ସଚେତନ ହୁଏ ଓ ସେହି ଅନୁଯାୟୀ ଚିକିତ୍ସା ସୁରୁ କରେ । ପିଲା ବଢ଼ିବା ସଙ୍ଗେ ସଙ୍ଗେ ପୁଷ୍ଟି, ସ୍ନେହ ଓ ଶର୍କରା ସାର ଖାଦ୍ୟରୁ କେତେ କେତେ ଗ୍ରାମ୍ ବଢ଼ିବା ଦରକାର ତାହା ଡାକ୍ତରଙ୍କୁ ସ୍ଥିର କରିବାକୁ ପଡ଼େ । ପୁଅର ପୋଷାକ ପାଇଁ ଏତେ ମିଟର୍ କନା ଦରକାର । ପୁଅ ବାହାଘର ଭୋଜିପାଇଁ ଏତେ କ୍ୱିଣ୍ଟାଲ୍ ଅଟା, ପରିବା, ଡାଲି, ଏତେ କିଲୋ ଘିଅ, ମାଛ ଦରକାର । ଏତେ ଲୋକ ଖାଇଲେ କେତେ ଜଳଷର ବରାଦ ହେବା ଦରକାର, ପୁଅ ବୋହୂଙ୍କ ପାଇଁ ଆଉ ଗୋଟିଏ ଘର ଦରକାର ପଡ଼ିଲେ ଏତେ ସିମେଣ୍ଟ୍, ଏତେ ଲୁହାଛଡ଼ ଦରକାର । ଶେଷରେ ନିଜେ ବୁଢ଼ା ହୋଇ ମଲାବେଳେ କେତେ କ୍ୱିଣ୍ଟାଲ୍ କାଠ ଦରକାର ଇତ୍ୟାଦି ଇତ୍ୟାଦି ।

ମନ୍ତ୍ରୀ ପୁଣି କହିଲେ ଯେ ସେ ମନ୍ତ୍ରୀ ହୋଇଛନ୍ତି ବୋଲି ଯେ ଆଖି ପିଛୁଳାକେ ସବୁକିଛି କରିଦେଇ ପାରିବେ ତାହା ବିଚାରିବା ଭୁଲ । ଜନସାଧାରଣଙ୍କଠାରୁ ଖୁବ୍ କମରେ ୧୯ ୟୁନିଟ୍ ସହଯୋଗ ନ ପାଇଲେ କିଛି କରି ପାରିବେ ନାହିଁ ।

ଓଜନ ମାପରୁ ଆରମ୍ଭ କରି ମନ୍ତ୍ରୀ, ସଂସ୍କୃତି, ଶିକ୍ଷା, ଜଳସେଚନ, ଖଣି, ବନସମ୍ପଦ, ମାଛ ଓ କୁକୁଡ଼ା ଚାଷ, କୃଷି, ଉନ୍ନୟନ, ଗ୍ରାମ ମଙ୍ଗଳ ଆଦି ସବୁ ବିଭାଗ ଓ ଚଉଦ ବ୍ରହ୍ମାଣ୍ଡରେ ପଇଁତରା ମାରି ଓ ସବୁଠି ଓଜନ ମାପ କିପରି ମେଣ୍ଢାବାଳ ଓ ଜଡ଼ାତେଲ ଭଳି ଲାଗି ରହିଛି ତାହା

ଶ୍ରୋତାମାନଙ୍କୁ ବୁଝାଇ ସାରିଲା ପରେ ବସି ପଡ଼ିଲେ । ୧ ଘଣ୍ଟା ୧୯ ମିନିଟ୍ ୨୩ ସେକେଣ୍ଡ ଯାଏ ମନ୍ତ୍ରୀ ୯୮ ପ୍ରତିଶତ ଉପାଦେୟ ବକ୍ତୃତାଟିଏ ଦେଇଥିବାରୁ ସେକ୍ରେଟେରି ମନ୍ତ୍ରୀଙ୍କୁ ପୋଛିପାଛି ଶହେ ପ୍ରତିଶତ ଧନ୍ୟବାଦ ଦେଇଦେଲେ ।

ଏହାପରେ ମନୋରଞ୍ଜନ କାର୍ଯ୍ୟ କ୍ରମରେ ଏକ ଏକାଙ୍କିକାର ଅଭିନୟ କରାଗଲା । ଶିରୋନାମା ଥିଲା 'ବିଭ୍ରାନ୍ତିଆ ଓଜନ' । ବିଷୟ ବସ୍ତୁଟି ସେଣ୍ଟ୍ ପରସେଣ୍ଟ୍ ବୋଧଗମ୍ୟ ଥିଲା । ଗୁରୁବାବୁ ଭାରତର ସମସ୍ତ ତୀର୍ଥ ଭ୍ରମଣ କରିବାକୁ ଗଲେ । ବିଭିନ୍ନ ସ୍ଥାନରେ ବିଭିନ୍ନ ନାମ ଓ କିସମର ଓଜନ ଦେଖି ୭୦ ପ୍ରତିଶତ ଘାବରେଇ ଗଲେ । କେଉଁଠି ସେର ତ କେଉଁଠି ମାଣ, କେଉଁଠି ତାମ୍ବି କେଉଁଠି ପୂଡ଼ୁଗୁ, କେଉଁଠି ବିଶା, ପଳ, କରିଷ । ପ୍ରକୃତ କେତେ ଓଜନର ଜିନିଷ ପାଇଲେ ତାହା ତାଙ୍କର ଜାଣିବାର ଉପାୟ ନଥିଲା । ଦୋକାନୀର ଦୟା ଉପରେ ତାଙ୍କୁ ନିର୍ଭର କରିବାକୁ ପଡ଼ିଲା । ତୀର୍ଥଯାତ୍ରା ପରେ ସେ ଓଜନ ମାପ ସାରା ଭାରତରେ ଏକ ପ୍ରକାର ଚଳେଇବାକୁ ଆନ୍ଦୋଳନ କଲେ । ଫଳରେ ମେଟ୍ରିକ୍ ଓଜନ ମାପ ଭାରତସାରା ଚାଲୁ ହେଲା । ସମସ୍ତେ ଖୁସି ହେଲେ । ଏଇଠି ଏକାଙ୍କିକା ସରିଲା । ମନ୍ତ୍ରୀ ୬୦ କମ୍ପ୍ଲେଣ୍ଟ ପ୍ରତିଶତ ପେଟରେ ଚାପି ରଖି ୨୦ ପ୍ରତିଶତ ସନ୍ତୋଷ ପଦାକୁ ପ୍ରକାଶ କଲେ । ଦର୍ଶକମାନେ କିନ୍ତୁ ୯୫ ପ୍ରତିଶତ ସନ୍ତୋଷ ପାଇଲେ ।

ସବୁ ଶେଷରେ ଉଦ୍ୟୋକ୍ତାମାନେ ମନ୍ତ୍ରୀଙ୍କୁ ଚାହା ପାନ ପାଇଁ ଅନୁରୋଧ କରନ୍ତେ ସେ କହିଲେ ଯେ ଚାହା ଉପରେ ତାଙ୍କର ୩୯ ପ୍ରତିଶତ ବିତୃଷ୍ଣା ଥିବାରୁ ସେ ତାହା ପିଅନ୍ତି ନାହିଁ । ତେଣୁ ତାଙ୍କୁ ଗିଲାସେ କମଳାରସ ଦିଆଗଲା । ଫେରିଲାବେଳେ ମନ୍ତ୍ରୀ ଉଦ୍ୟୋକ୍ତାମାନଙ୍କୁ ପରାମର୍ଶ ଦେଲେ ଯେ ଓଜନ ମାପ କାମରେ ଦେଖା ଦେଇଥିବା ୮୫ ପ୍ରତିଶତ ଉତ୍ସାହ, ୭୯ ପ୍ରତିଶତ ନିଷ୍ଠା, ୭୫ ପ୍ରତିଶତ ଆନ୍ତରିକତାରୁ ଗୋଟିଏ ପ୍ରତିଶତ ଯେପରି ଭବିଷ୍ୟତରେ କମ୍ ନ ହୁଏ ସେଥିପ୍ରତି ସମସ୍ତଙ୍କର ସେଣ୍ଟ୍ ପରସେଣ୍ଟ୍ ଦୃଷ୍ଟି ଦିଆଯିବା ଉଚିତ୍ ।

—ଃ—ଃ—

# ଦଣ୍ଡୀମାର ଅଧ୍ୟାପନା

ସମସ୍ତେ କହନ୍ତି ଗନ୍ଧ ସାହୁ ଜଣେ ପହିଲା ନମ୍ବର ଦଣ୍ଡୀମାରୁ । ଗରାଖଙ୍କ ଆଖିରେ ଧୂଳି ପକାଇ କେମିତି ସେ ଧରମ ଦଣ୍ଡୀରେ ଦଣ୍ଡୀମାରୁ କାମକରିଥାଏ ତାହା କେହି ଜାଣିପାରନ୍ତି ନାହିଁ । ଜିନିଷ ନେଲାବେଳେ ଗରାଖ ମାନେ ଦେଖନ୍ତି କଲେ ସଉଦା କଲେ ପାଞ୍ଚଗ୍ରାମ୍ ହେଉଛି ପଛେ ୯୯୯ ଗ୍ରାମ୍ ହେଉନି । ହାପ୍ପୁ ହାପ୍ପୁ ଘରେ ଗୃହିଣୀଙ୍କ ଅପସନ୍ଦ ଯୋଗୁଁ ପୁଣି ଓଜନ କରି-ବାରେ ୯୫୦ଗ୍ରାମ୍ । ୫୦ଗ୍ରାମ୍ କପର ଗାଏବ୍ ହେଲା ? ଗୃହସ୍ୱାମୀ କେବଳ ମୁଣ୍ଡ ପଛ ଆଉଁଷା ଗୃହିଣୀଙ୍କ ଆଗରେ କୁଣ୍ଡେଇ ହୁଅନ୍ତି । ମୋହର ହଥା ବଟକରା ଓ ଦଣ୍ଡୀରେ ଆଖି ଆଗରେ ଓଜନ କରି ଆଣିଲେ । ତଥାପି କମ୍ ! କିଛି ଭୌତିକ କାଣ୍ଡ ହେଲାକି ?

ଗନ୍ଧ ସାହୁର ଦଣ୍ଡୀମାରଣୀ କ୍ରମେ ସମସ୍ତଙ୍କର ଚର୍ଚ୍ଚାର ବିଷୟ ହୋଇଗଲା । କିଏ କହିଲା ପାପୀଟା ଧରମ ଦଣ୍ଡୀରେ ନାସନା କାମ କରୁଛି । ଅଲପେଇସାଟାକୁ ସତର ନର୍କରେ ବି ଠାବ ମିଳିବ ନାହିଁ । କିଏ କହିଲା—ଧରମ ଦଣ୍ଡୀରେ ଅଧର୍ମ କାମ କରୁଛି । ହାତ ଗୋଡ଼ ଛୁଣ୍ଡି ପଡ଼ିବ, ପକ୍ଷାଘାତରେ ଅଚଳ ହୋଇ ପଡ଼ିବ । କିଏ କହିଲା ଅଧର୍ମ ବଢ଼ି ବଢ଼େ ବହୁତ, ଗଲାବେଳେ ଯାଏ ମୂଳ ସହିତ । ପୁଅକୁ ଦଣ୍ଡୀ ମାରିବାକୁ ଖୁସି ଲାଗୁଛି । ନେଡ଼ଗୁଡ଼ କହୁଣୀକୁ ବୋହିଗଲେ ପୁଅ ଚେତିବ । ଏହିକ୍ଷଣି ଆଲୁଅ ପକ୍ଷ ପଡ଼ିଛି । ଧର୍ମ ଅଧର୍ମ ନ ବିଚାରି ହ'ହାତିଆ ଦଣ୍ଡୀ ମାରି ଚାଲିଛି । ଅନ୍ଧାରପକ୍ଷ ଆସିବ ବୋଲି ପୁଅ ଏକାବେଳେକେ ଭୁଲି ଯାଇଛି ।

ଏହିପରି ସମସ୍ତେ ମନକୁ ସାନ୍ତ୍ୱନା ଦେଇ ଗନ୍ଧ ସାହୁର ଅନ୍ଧାର ପକ୍ଷକୁ ଚାହିଁ ରହିଲେ । ବିଧାତା କାହାରିକୁ ବୁଦ୍ଧି ଦେଲାନି ଯେ ସରକାର-

ଙ୍କର ଗୋଟାଏ ଓଜନ ମାପ ବିଭାଗ ଅଛି । ସେ ବିଭାଗରେ ଦଣ୍ଡୀ ବଟକରା ଯାଞ୍ଚ କରିବାକୁ ଓ ଦଣ୍ଡୀମାରମାନଙ୍କୁ ପକଡ଼ ମାମୁଁ ଘରକୁ ପଠେଇବା ଲାଗି ଶହଶହ ଟଙ୍କା ଦରମାରେ ଅନେକ କର୍ମଚାରୀ ଅଛନ୍ତି । ଗନ୍ଧ ସାହୁ କଥାଟା ଅନ୍ତତଃ ସେମାନଙ୍କ କାନରେ ପକେଇ ଦେବା ଉଚିତ୍ । ଏହି କଥାଟା କାହାରି ମୁଣ୍ଡକୁ ଢୁକୁ ନଥାଏ । କାହିଁକିବା ଢୁକିବ ! ସେମାନେ ଯେ ଗନ୍ଧ ସାହୁର ଅନ୍ଧାର ପକ୍ଷକୁ ଚାହିଁ ରହିଛନ୍ତି ।

କେହି ଚେଷ୍ଟା ନ କଲେବି ଦୁର୍ଗନ୍ଧ ଓ ଖରାପ କଥା ଚାରିଆଡ଼କୁ ବ୍ୟାପିଯାଏ । ଗନ୍ଧ ସାହୁର ଦଣ୍ଡୀମାର କଥା ସେହିପରି ଖେଳେଇ ହୋଇଯାଇ ଛାଏଁ ଛାଏଁ ଓଜନମାପ ବିଭାଗର କର୍ମଚାରୀମାନଙ୍କ କାନରେ ପଡ଼ିଲା । ପରିଦର୍ଶକମାନେ ଗନ୍ଧସାହୁ ଦୋକାନକୁ ଗଲେ । ଯିଏ ଚୋରିବୃତ୍ତି କରେ ସେ ତା ଆଖପାଖରେ ଥିବା ପୁଲିସ୍‌ମାନଙ୍କୁ ଭଲ କରି ଚିହ୍ନି ନେଇଥାଏ । ଗନ୍ଧ ସାହୁ ଠିକ୍ ସେହିପରି ଓଜନମାପ ପରିଦର୍ଶକ-ମାନଙ୍କୁ ଚିହ୍ନି ନେଇଥାଏ । ତାର ଗୋଟାଏ ଆଖି ଦୋକାନରେ ତ ଆଉ ଗୋଟାଏ ଆଖି ରାସ୍ତାରେ । ପରିଦର୍ଶକ ଜଣେ ଆସୁଥିବାର ଦେଖିଲେ ସେ ସାଙ୍ଗେ ସାଙ୍ଗେ 'ଉଭାନ୍ କମିଆ' କରିଦିଏ । ପରିଦର୍ଶକ ତା'ହାତରେ ମୋହର ଦିଆ କଣ୍ଟା ଦଣ୍ଡୀ ମୋହର ଥିବା ଖାଣ୍ଟି ବଟକରା ଦେଖି ମୁହଁ ମୋଡ଼ନ୍ତି । ସେହି ଦଣ୍ଡୀ ବଟକରାରେ କି ସଉଦା ସେହି ସମୟରେ ନେଇଥିବା ଲୋକେ ଘରେ ଦେଖନ୍ତି ତ ସଉଦା କମ୍ । ସେ କଥାକି ପରିଦର୍ଶକଙ୍କ କାନରେ ପଡ଼ିବା ମାତ୍ରେ ସେ କାନରେ ହାତ ଦିଅନ୍ତି । ମନେ ମନେ ବିଚାରନ୍ତି—"ନା ଏ କମିଆ ଛଡ଼ା ଆଉ କିଛି ନୁହେଁ । ଗନ୍ଧ ସାହୁ ନିଶ୍ଚେ ଏକ ଜବର ଇଲମ୍‌ଦାର ଦୋକାନୀ ।" ଉଣା ଅଧିକେ ପ୍ରାୟ ସବୁ ପରିଦର୍ଶକ ଠିକ୍ ଏମିତି ଭାବୁଥିଲେ । କିନ୍ତୁ ଗୋଟମ୍ ସହକାରୀ ନିଯୁକ୍ତିଙ୍କ କଥା ନିଆରା । ସେ ସାଫ୍‌ସାଫ୍ ପରିଦର୍ଶକମାନଙ୍କୁ କହିଲେ—"ହଟାଅ ସେ ଇଲମ୍‌କୁ । ମୋ ବେଙ୍ଗା ଦୋକାନୀକୁ ସିଧାସଳଖ ଧରି ହେବନି । ଲୁଚି ଛପି ତା ଉପରକୁ କୁଦିବାକୁ ହେବ ।" × ×

ଦିନ ନଅଟା କି ସାଢ଼େନଅ ହେବ । ଗନ୍ଧ ସାହୁ ଦୋକାନରେ ଭିଡ଼ ଜମି ଯାଇଥାଏ । ପୁରା ଦମ୍‌ରେ ଚାଲୁଥିବା କଳପରି ଗନ୍ଧ ସାହୁ

ସଉଦା ବିକିବାରେ ଲାଗିଥାଏ । ଦଣ୍ଡୀଟା ତା' ହାତରେ କୁଣ୍ଢେଇ ପରି ନାଚୁଥାଏ । ପାଟି ବି ତା ସାଙ୍ଗରେ ତାଳ ଦେଇ ନାନା ବିଚିତ୍ର ଶବ୍ଦ କାଢ଼ୁଥାଏ । ଏହି ସମୟରେ ଦୁଇଜଣ ମଳମୁଣ୍ଡିଆ, ମୂଳିଆ ହେବେ ପରି, ସେଇଠି ପହଞ୍ଚିଲେ । ଜଣେ କହିଲା "ସାହୁଏ ଦି କିଲୋ ଚାଉଳ, ଆଉ ଅଢ଼େଇକିଲୋ ବିରି ଦିଅ ।" ଆଉ ଜଣେ ଯୋଗି ଦେଲା "ଜଲଦି ଦିଅ, ଆମର ବହୁତ କାମ ବାକି ।" ଲୋକ ଦୁହିଁଙ୍କ ଛିଣ୍ଡା ଲୁଗା ଓ ଗାମୁଛା ଉପରେ ଆଖି ବୁଲେଇ ନେଇ ଗନ୍ଧ ସାହୁ କାମରେ ଲାଗିଗଲା । କାଠି ଦଣ୍ଡୀରେ ବଟକରା ପକେଇ ଚାଉଳ ଓଜନ କରିବାକୁ ଆରମ୍ଭ କଲାରୁ ଜଣେ ପ୍ରତିବାଦ କଲା—"ଆମେ ଏ ଦଣ୍ଡୀରେ ନେବୁନି, କଣ୍ଟା ଦଣ୍ଡୀରେ ଦିଅ ।"

ଗନ୍ଧସାହୁର ନାକ ଅଗକୁ ରଗ ଉଠିଗଲା । ଗରାଖ ଦୁହିଁଙ୍କୁ ନାପସନ୍ଦ କରିଦେଇ କହିଲା—"ହଇହୋ ତମ ଘର କୋଉଠି ? କଣ୍ଟା ଦଣ୍ଡୀରେ ୪ଥର ମାପିବ କାହିଁକି ? ଏକାଥରକେ ତଉଲିବ ନାହିଁ କାହିଁକି ? ଅଶୀ ବର୍ଷରେ ତମ ବୁଦ୍ଧି ପାକଳ ହେବ ଦେଖୁଛି । ସବୁଗୁଡ଼ାକ ଦଣ୍ଡୀ, ଧରମଦଣ୍ଡୀ—ତୁମ ଆଗରେ ମାପି ଦେବି, ମୁଁ କଅଣ ଅନ୍ଦାଜ କରି ଦେଉଛି ?"

ଜଣେ ସେ ଦଣ୍ଡୀଟାକୁ ଦେଖିବା ଲାଗି ତା'ହାତରୁ ଆଣିବାକୁ ଚେଷ୍ଟା କଲାରୁ ଗନ୍ଧ ସାହୁ ଖପା ହୋଇଯାଇ ତାକୁ ପୁଅର ମାମୁଁ, ଅରଣ୍ୟାଞ୍ଚଳବାସୀ ଓ ସହରୀ ସଭ୍ୟତାର ଦୂରରେ ଥିବା ବ୍ୟକ୍ତି ବୋଲି ସମ୍ବୋଧନ କରି ବାପୁଜି ପ୍ରଦର୍ଶିତ ମାର୍ଗର ବିପରୀତ ଦିଗରେ ଯିବାକୁ ଉଦ୍ୟମ କଲା । ଲୋକଟି କିନ୍ତୁ ଦଣ୍ଡୀକୁ ନିଗୁଡ଼ି ପାଟି କରିଲାଗିଲା । ଅନ୍ୟ ଜଣକ ଅଣ୍ଟାରୁ ଗୋଟିଏ ସୁସୁରି କାଢ଼ି ବଜାଇ ଦେଲା । ଚାହୁଁ ଚାହୁଁ ଚାରିଜଣ ନାଲି ପଗଡ଼ିଆ ସହ ସହକାରୀ ନିୟନ୍ତ୍ରକ ୪।୫ ଜଣ ପରିଦର୍ଶକ ବାବନାଭୂତପରି ମାଡ଼ିଆସି ଦୋକାନରେ ପଶିଗଲେ । ଘଣ୍ଟାଘଣ୍ଟିପରେ ବହୁତକିଛି ଜିନିଷ ବାହାରି ପଡ଼ିଲା । ଗନ୍ଧ ସାହୁ ଅବସ୍ଥାଟା ଠଉରେଇ ନେଇ ସଙ୍ଗେ ସଙ୍ଗେ ଯୁଦ୍ଧ କୌଶଳ ବଦଳେଇ ଦେଲା । ସହକାରୀ ନିୟନ୍ତ୍ରକଙ୍କ

ଗୋଡ଼କୁ ଜକଟି ମକଟି ଧରି ଅଧା ବାହୁନାଲ ପରି ଡାକ ପକେଇଲା —"ଆଜ୍ଞା ଆପଣ ବାପ ମା । ଆଉ ଏ ଗୁହଖିଆ କାମ କରିହବନି । ଆଜ୍ଞା ପାଞ୍ଚପ୍ରାଣୀ କୁଟୁମ୍ବ ଭୋକରେ ମରିଯିବୁ । ଆଜ୍ଞା ଦୟା ନ କଲେ ଆମେ ସମସ୍ତେ ଭସିଯିବୁ । ଆଜ୍ଞା ଦୁନଆରେ କଏ ନ ଠକୁଛି ? ଆଜ୍ଞା ମାଷ୍ଟର ପୂରା ଦରମା ନେଇ ଅଧା ପଢ଼ଉଛି । ଓକିଲ ତାରିଖ ଗଡ଼େଇ ଗଡ଼େଇ ମହକିଲକୁ ଦେବାଳିଆ କରି ଦେଉଛି । ଡାକ୍ତରକୁ ଦେହ ଦେଖାଇଲେ ସେ କହୁଛି ଗୁହଦେଖା, ମୂତଦେଖା, ରକ୍ତଦେଖା ଓ ଖଙ୍କାର ଦେଖା କହି ଟଙ୍କାକ ଜାଗାରେ ପାଞ୍ଚଟଙ୍କା ଠକି ନେଉଛି । ଆଜ୍ଞା ଦୁନଆର ଏ ମୁଣ୍ଡରୁ ସେମୁଣ୍ଡ ଯାଏ ଠକାଠକି ଚାଲିଛି । ଆଜ୍ଞା ମୁଁ କେତେବା ଠକୁଛି । ଆଜ୍ଞା ମୋର ସାତଟି ପିଲା । ତାଙ୍କ ଚଣ୍ଡି ଆପଣଙ୍କ ହାତରେ । ଚପିଲେ ଚପନ୍ତୁ । ରଖିଲେ ରଖନ୍ତୁ ।

ଏହିପରି ନାଟଗୀତ ହେଉଥିଲାବେଳେ ଘରଭିତରୁ ତା'ର ୭ଟି ଯାକ ପିଲା ବାହାରି ଆସି ସହକାରୀ ନିୟନ୍ତ୍ରକଙ୍କ ପାଖରେ ଠିଆ ହୋଇଗଲେ । ଜଣେ ପରିଦର୍ଶକ ଏ ଫଉଜକୁ ଦେଖି କହିଲେ—"ଆରେ ତୁମେ ଏଠି ଏମିତି ପଢ଼ରହିବା ଅପେକ୍ଷା ଶୀଘ୍ର ଜନ୍ମନିୟନ୍ତ୍ରଣ କେନ୍ଦ୍ରକୁ ଯାଅ ।"

ସହକାରୀ ନିୟନ୍ତ୍ରକଙ୍କ ମନରେ ଦୟାହେଲା । ସେ ତାକୁ ପ୍ରବୋଧ ଦେଇ କହିଲେ—"ଆଚ୍ଛା ଅଧୁଧରି; ମୁଁ ପହିଲଥର ତୁମକୁ ଛାଡ଼ଦେବି, କିନ୍ତୁ ତା ପରିବର୍ତ୍ତେ ତୁମକୁ କିଛି କରିବାକୁ ହେବ ।"

କଥା ନ ସରୁଣୁ ଗନ୍ଧ ସାହୁ ହାତଯୋଡ଼ ବଡ଼ ଆଗ୍ରହରେ ଫୁସୁର୍ ଫୁସୁର୍ ହୋଇ କହିଲା—"ଆଜ୍ଞା ମୁଁ ସେଥିକ ରାଜି । ସୁଦାମା କୃଷ୍ଣଙ୍କୁ ଚୂଡ଼ାଳ ଭଜାରେ ସନ୍ତୁଷ୍ଟ କଲାପରି ମୁଁ ଆପଣଙ୍କୁ ଯଥାଶକ୍ତିରେ ସନ୍ତୁଷ୍ଟ କରିବି ।" କେହି କାହା କଥା ଠିକ୍ ଠିକ୍ ବୁଝିପାରିଲେ ନାହିଁ । ସହକାରୀ ନିୟନ୍ତ୍ରକ, ପରଦିନ ଦଶଟାରେ ତାକୁ ଅଫିସକୁ ଯିବାକୁ କହି ଚାଲିଗଲେ । × × ×

ତହିଁ ଆରଦିନ ୮ଟା ବେଳକୁ ଗନ୍ଧ ସାହୁ ଅଫିସରେ ଆସି ହାଜର। ଦଶଟାରେ କର୍ମଚାରୀମାନେ ଆସି ଆପଣା ଆପଣା ଥାନରେ ବସିଲେ। ଡକରାହେବା ମାତ୍ରେ ଗନ୍ଧ ସାହୁ ବେକରେ ଗାମୁଛା ପକେଇ ସହକାରୀ ନିୟନ୍ତକଙ୍କ ଗୋଡ଼ତଳେ ପଡ଼ିଲା। ସହକାରୀ ନିୟନ୍ତକ ତାକୁ ସାନ୍ତ୍ୱନାକରି କହିଲେ—"ଦେଖ ତମେ ଗୋଟିଏ କାମ କଲେ ଆମେ ତମକୁ ଛାଡ଼ିଦେବୁ।"

କଥା ନ ସରୁଣୁ ଗନ୍ଧ ସାହୁ ୫ଟି ଦଶଟଙ୍କିଆ ନୋଟ୍ ତାଙ୍କ ଟେବୁଲ ଉପରେ ରଖିଦେଲା। ସ: ନିୟନ୍ତକ ରାଗିଯାଇ କହିଲେ "ତମ ପିଲାଗୁଡ଼ିଙ୍କୁ ଦେଖି ଦୟା ଲାଗୁଛି। ନ ହେଲେ ଏହିକ୍ଷଣି ଯୋଡ଼ାଏ ଦଫାରେ ପୁଲିସ୍ ହାତରେ ଦେଇଥାନ୍ତି। ଉଠା-ଉଠା- ତୋ ଅଣ୍ଟାରେ ଆଗ ମାର"। ଗନ୍ଧ ସାହୁ ଚଳ ଝାମ୍ପି ନେଲାପରି ଟଙ୍କାତକ ନେଇଯାଇ ଅଣ୍ଟାରେ ମାରିଲା।"

ସ: ନିୟନ୍ତକ ପୁଣି କହିଲେ ଦେଖ ଦଣ୍ଡୀ ମାରି କିଛି ଲାଭ ନାହିଁ। ପଇସେ ବି ପଇସା କରି ତୁମେ ଯାହା ଠୁଳ କରିବ ତାହା ଗୋଟାଏ କୋର୍ଟମାମଲାରେ ଖତମ ହୋଇଯିବ। ନଚେତ୍ ଅସାଧୁ କର୍ମଚାରୀଙ୍କ ପେଟରେ ପଡ଼ିବ। ଏଣୁ ସେସବୁ କାମ ଛାଡ଼। ଠିକଣା ବାଟରେ ଥିଲେ ଗୋଟିଏ ପଇସା ବି ତୁମକୁ ଦେବାକୁ ପଡ଼ିବନି। ଦେଖ ତୁମକୁ ଗୋଟିଏ କାମ କରିବାକୁ ପଡ଼ିବ। ତୁମେ କପରି ଭେଳକି ଦେଖାଇ ଦଣ୍ଡୀ ମାର ତାହା ଏଇଠି ଆମ ସମସ୍ତଙ୍କୁ ବୁଝାଇ ଦିଅ। ଏତକ କଲେ ଆମେ ତୁମକୁ ଛାଡ଼ିଦେବୁ।

ଟଙ୍କାତକ ବଞ୍ଚିଯାଇ ଥିବାରୁ ଗନ୍ଧସାହୁ ମନେମନେ ଭାରି ଖୁସି ହୋଇ ଯାଇଥିଲା। ଏବେ ଛାଡ଼ ପାଇବାର ପ୍ରତିଶ୍ରୁତି ପାଇବାରୁ ସେ କୁଲୁରି ଉଠି ଅତି ଉତ୍ସାହରେ ଅଧ୍ୟାପନା କାମ ଆରମ୍ଭ କରି ଦେଲା।

"ଦେଖନ୍ତୁ ଆଜ୍ଞା ଦଣ୍ଡୀମାରୁ କାମ ୩ଟି ଉପାୟରେ ହୁଏ। ଗୋଟିଏ କନିଷ ଓଜନ କରିବାକୁ ଦେଲେ ତିନୋଟି ବିଷୟ ଏକାଠି

କରିବାକୁ ହୁଏ । ବକାଳର ହାତ, ଦଣ୍ଡୀ ଆଉ ବଟକରା । ଏଣୁ ଓଜନ କଲାବାଲା ଦଣ୍ଡୀ ଓ ବଟକରା ଏହି ତିନ ବାଟରେ ଦଣ୍ଡୀମାରୁ କାମ ହୋଇ ପାରିବ । ପହିଲେ ବକାଳ କଥା କହୁଛୁ । ବକାଳ ଦଣ୍ଡୀରେ ଜିନଷଟା ଭୁସ୍କରି କଚଦେଲେ କମ୍ ଜିନଷବି ଝୁଙ୍କ୍ତି ଦେଖାଇ ଦିଏ । ଏ ବାଟେ ୨୪୦ ଗ୍ରାମର ଜିନଷ ବି ୨୫୦ ଗ୍ରାମ୍ ବଟକରାଠୁ ବେଶି ଦେଖେଇ ହୋଇଯାଏ । ତଳକୁ ଦବି ଯାଇଥିବା ଜିନଷ ପଲାକୁ ଉଠିବାକୁ ଛାଡ଼ି ନଦେଇ ବକାଳ 'ହେଁ ଏହି ଅଡେ଼ଇଶହ ନଅ' ବୋଲି କହି ପଲାକୁ ଧରିନଏ ଓ ଜିନଷ କାଢ଼ି ଦିଏ ।

ଆଉ ଗୋଟିଏ ବାଗ ହେଉଛୁ—ଓଜନ କଲାବେଳେ ପଲା ଦୁଇଟା ଠିକ୍ ପାଦ ଉପରକୁ ଝୁଲେଇ ରଖିବ, ଗରାଖ ସବୁବେଳେ ଦଣ୍ଡୀର କଣ୍ଟାକୁ ନଜର ଦେଇଥାଏ, କଣ୍ଟା ଠିକ୍ ଓଜନ ଠିକ୍ ହେଲା କି ନା ଦେଖିବାକୁ । ମପାଳି ବଟକରା ପାଖ ପଲାକୁ ବାଁ ଗୋଡ଼ ବୁଢ଼ା ଆଙ୍ଗୁଠିରେ ଟେକି ଦିଏ । ପଲାଟା ପାଦ ଉପରେ ଥିବାରୁ ପାଦର ଏ କାରବାର ଗରାଖ ଦେଖିପାରେ ନାହିଁ । ଜିନଷପାଖ ତଳକୁ ଝୁଙ୍କି ପଡ଼ି ବେଶି ହୋଇଛୁ ବୋଲି ଜଣେଇ ଦିଏ । ୨୪୦କୁ ଅଡେ଼ଇଶହ ଭାବି ଗରାଖ ଖୁସିରେ ଘରକୁ ଚାଲିଯାଏ ।

କାଠଦଣ୍ଡୀ ହୋଇଥିଲେ ମଝି ଡୋରକୁ ମୁଠେଇ କରି ଧରି ମୁଠାକୁ ଟିକିଏ ଜିନଷ ପାଖ ଆଡ଼କୁ ମୋଡ଼ି ଦେଲେ ସେ କଡ଼ଟା ତଳକୁ ଝୁଙ୍କିଯାଏ ଓ ଜିନଷ ବେଶି ବୋଲି ଜଣେଇ ଦିଏ ।

ଏବେ ଦଣ୍ଡୀ କଥା ଦେଖିବା । ଦଣ୍ଡୀ ମାରିବା ପାଇଁ କାଠିଦଣ୍ଡୀ ସବୁଠୁ ବଢ଼ିଆ । କାଠି ଦଣ୍ଡୀର ମଝି ଡୋର କଣାଟା ଯଦି ଠିକ୍ ମଝିରେ ଥିବ ତେବେ ଓଜନ ଠିକ୍ ରହିବ । ଯଦି କୋଉ ବାଗରେ ଜିନଷ ପାଖଟା ଆର ପାଖଠୁଁ ସାମାନ୍ୟ ଟିକିଏ ଲମ୍ବା କରି ଦିଆଯିବ ତେବେ ସେ ପାଖ ତଳକୁ ଝୁଙ୍କି ପଡ଼ିବ ଓ କମ୍ ଓଜନର ଜିନଷକୁ ବେଶି ଦେଖେଇ ଦେବ । ଜିନଷ କଡ଼କୁ ଲମ୍ବା ଅନେକ ବାଗରେ କରିହେବ । ଗୋଟାଏ ହେଲା କାଣୀଦଣ୍ଡୀ । ଏଥିରେ ମଝି କଣାକୁ ସିଧା ନକରି ତେରଛେଇ

କରିଯାଇଥାଏ । ଏଥିରେ ଗୋଟାଏ କଡ଼ ପଲ୍ଲା ନଷ୍ଟ ତଳକୁ ଝୁଙ୍କିବ । ଗରାଖ ଦଣ୍ଡୀରେ ପାସଙ୍ଗ ଅଛି ବୋଲି କହିଲେ ତାକୁ ଏମିତି କହିଦେଇ —ହଉବାବୁ ଏଇ ଝୁଙ୍କି ପାଖରେ ମୁଁ ବଟକରା ପକଉଛି । ତେବେ ଆପଣ ହେଲ ଗରାଖ ଈଶ୍ୱର, ଦ'ଘର ଭରି ଆପଣଙ୍କ ଆଡ଼େ ବେଶୀ ଯାଉ । ତେବେ ଆପଣ ଖୁସିହେଲେ ଆମକୁ ସେଇଟା ଭଲ । ସବୁ ସେଇ ଭଗବାନଙ୍କର । ଦଉଛି କଏ, ନଉଛି କଏ ! ଖାଲି ମାୟା—ଏମିତି ଗପି ଗରାଖକୁ ଭୋଳ କରିଦେଉ । ଦଣ୍ଡୀକୁ ବୁଲାଇ ଝୁଙ୍କି ପାଖରେ ବଟକରା ପକାଇବ । ଗରାଖ ମହାଖୁସି ହୋଇଯିବ । କାଠିଟାକୁ ତଳେ ଥୋଇ ଦେଇ ଜିନଷକୁ ସଜାଡ଼ିବାର ଛଳନା କରିବ । ପୁଣି କାଠି ଉଠେଇଲା ବେଳେ ତଳପାଖ କଣାକୁ ଉପରକୁ ରଖି ଉଠେଇବ । ଗରାଖ କିଛି ଜାଣି ପାରିବ ନାହିଁ । ସେତ ଦେଖୁଥିବ ପଲ୍ଲା ଠିକ୍ ଅଛି । ତଳ କଣାକୁ ଉପରକୁ କରିଦେବା ଫଳରେ ଜିନଷ ପାଖ କାଠିଟା ଯେ ଟିକଏ ବେଶି ଲମ୍ବା ହୋଇଗଲା ତା ଗରାଖର ଚଉଦ ପୁରୁଷ ବି ଜାଣି ପାରିବେ ନାହିଁ । ଫଳରେ ସେ ପାଖରେ ପଡ଼ିଥିବା କମ୍ ଜିନଷ ବେଶୀ ହୋଇ ଦେଖେଇ ହୋଇଯାଏ । ଗରାଖ ଠକା କଟେଇ ଘରକୁ ଯାଏ ।

ଆଉ ଏକ ପ୍ରକାର କାଠି ଦଣ୍ଡୀ ଅଗରେ ପଲ୍ଲା ଡୋରପାଇଁ ଦୁଇଟା ଲେଖାଁଏ କଣାଥାଏ । ପଲ୍ଲା ଡୋର ଏଇ ଦୁଇ କଣା ଦେଇ ହୁଗୁଳା ହୋଇ ବନ୍ଧା ହୋଇଥାଏ । ପଲ୍ଲା ଡୋରକୁ ମଝି ଆଡ଼କୁ ଟାଣି ଆଣିଲେ ତାହା ଘୁଞ୍ଚିଆସେ । ଫଳରେ ସେ କଡ଼ କାଠି ଅଗର ପଛକୁ ପଲ୍ଲା ଡୋର ରହିଯାଏ । ଏହାଦ୍ୱାରା ସେକଡ଼ କାଠି ଶ୍ରେଟ ହେଲାପରି କାମ ହୁଏ, ଦିପାଖ ଏମିତି ଶ୍ରେଟ କରିଦେଇ ମାପ ଆରମ୍ଭ କରିବ ଗରାଖ ଦେଖିବ ସବୁ ଠିକ୍ । ମାପିଲା ବେଳେ ଭଉଁର ଭଉଁର ହୋଇ ଜିନଷ ପାଖ ଡୋରକୁ ଆଗକୁ ଟାଣିଦେବ । ଏହା ଫଳରେ ସେକଡ଼ କାଠ ଲମ୍ବା ହୋଇଯିବାର କାମ କରିବ ଆଉ କମ୍ ଜିନଷ ବେଶୀ ଦେଖେଇ ହୋଇଯିବ ।

ଆଉ ଗୋଟିଏ ପ୍ରକାର କାଠି ଦଣ୍ଡୀ ଅଛି । ତା ଅଗ ମୁଣ୍ଡିଟା ଅଲଗା । ସେଇଟା ଏମିତିଆ ବାଗରେ ଦଣ୍ଡୀ ବାଡ଼ିରେ ଖପା ହୋଇଥାଏ

ଯେ ତାହା ଦଣ୍ଡୀରୁ ଅଲଗା ବୋଲି କେହି ଜାଣି ପାରିବେ ନାହିଁ । ଅଗ ମୁଣ୍ଡିଟାକୁ ଘୁଞ୍ଚେଇ ଗୋଟାଏ କଡ଼କୁ ବଡ଼ ସାନ କରନ୍ତିଏ । ଓଜନ କଲାବେଳେ ଜନଷ ପାଖର ଅଗ ମୁଣ୍ଡିକୁ ଟିକଏ ଘୁଞ୍ଚେଇ ଦେଇ ସେ କଡ଼ଟାକୁ ଟିକଏ ବଡ଼କରି ଦିଆଯାଏ । ତେଣିକି ଆଉସବୁ ବୁଝିପାରିବେ ।

ଆଉ ଗୋଟାଏ ପ୍ରକାରରେ ଜନଷପାଖ ପଲା ତଳେ ଅଠାଲଗା କଣ୍ଟା ଗୋଟାଏ ଜନଷ କୌଶଳ କ୍ରମେ ଲଗେଇ ଦିଆଯାଏ । ପଲାର ତଳକୁ ଗରାଖ ଦେଖିପାରେ ନାହିଁ ।

ବଟକରାରେ ଦଣ୍ଡି ମାରିବା ମାମୁଲି କଥା । ସେଥିରେ ହାତ ସଫେଇ ଦରକାର ନାହିଁ । ବଟକରାରେ ଯେଉଁ ସୀସା ଦିଆଯାଇ ଠିକ୍ ଓଜନର କରାଯାଇଥାଏ ଓ ତା ଉପରେ ମୋହର ଦିଆ ଯାଇଥାଏ । ତାକୁ କୋରି କାଢ଼ିଦେଲେ କାମ ଫତେ । ମୋହରକୁ ଛାଡ଼ ଅନ୍ୟ ଆଉ ମଧ୍ୟ କଣ୍ଟା କୋରିଦେଲେ ବା ଘସିଦେଲେ ବି ଚଳେ, ଏ ସବୁ କାମରେ ଦୁଇସେଟ୍ ବଟକରା ରଖିବାକୁ ହୁଏ । ବସିବା ଥାନରେ ଏକ ଗୁପ୍ତଜାଗା କରି ତହିଁରେ ସଚା ବଟକରାତକ ଲୁଚେଇ ରଖିବାକୁ ହୁଏ ଓ ନକଲି ବଟକରାରେ କାମ କରାଯାଏ । କେହି ହାକିମ ବା ଅନ୍ୟକେହି ଦରକା ଗରାଖ ଆସି ପହଞ୍ଚିଗଲେ ସାଙ୍ଗେ ସାଙ୍ଗେ ନକଲିକୁ ଗାଏବ କରି ଅସଲକୁ କାଢ଼ି ଦେବାକୁ ହୁଏ । ଜନଷରେ ବି ବାଲି ଗୋଡ଼ ମିଶାଇ, ପାଣିଛିଞ୍ଚି ଦଣ୍ଡୀ ମାରି ହୁଏ । ହେଲେ ସେ ଗୁଡ଼ାକ କାରିଗରୀ କାମ ନୁହେଁ ମୋଟଙ୍କ କାମ, ଛୁଆଟାଏ ବି ତା ସହଜରେ କରିଦେବ ।

ଦଣ୍ଡୀମାର ଅଧ୍ୟାପନା ସରିଲା । ସହକାରୀ ନିଯୁକ୍ତକ ହସି ହସି କହିଲେ—"ହଜୁ ଗନ୍ଧ ସାହୁ ସାର୍ ! ଆମ ସମସ୍ତଙ୍କ ତରଫରୁ ମୁଁ

ତମକୁ ଧନ୍ୟବାଦ ଦେଉଛୁ । ତମ ପରିଶ୍ରମ ପାଇଁ ଏ ଦୁଇଟା ଟଙ୍କା ନିଅ । ଆମର ପୂର୍ବ ବିଶ୍ୱାସ ତମେ ଆଜି ଦଣ୍ଡୀ ମାରିବ ନାହିଁ ।

ଗନ୍ଧ ସାହୁ ବହୁତ ଅନିଚ୍ଛା ପ୍ରକାଶ କରି ଟଙ୍କା ଦୁଇଟି ଅଣ୍ଟାରେ ଗୁଞ୍ଜିଲା । ଗଲାବେଳେ ସେ ମନେ ମନେ ଭାବୁଥାଏ ଏତେ ବେଳକୁ ଦୋକାନରେ ବସିଥିଲେ ଏଥର ଦଶଗୁଣ ଟଙ୍କା ରୋଜଗାର ହୋଇ-ପାରନ୍ତାଣି । ଛି ଛି ଆଉ ଏ ଗୁହଖିଆ କାମ କରିବି ନାହିଁ ।''

———

# ତିନଟଙ୍କିଆ ବାହାଘର

ଚଇଁ ପାଣି ସାଙ୍ଗ ଗେଣ୍ଡୁ ଦାସଙ୍କ ସଙ୍ଗେ ଦୁଃଖ ସୁଖ ହେଉଥିଲା ବେଳେ ଡାକବାଲା ଗୋଟାଏ ସରକାରୀ ଚିଠି ହାତକୁ ବଢ଼େଇ ଦେଇ ଚାଲିଗଲା। ଗେଣ୍ଡୁଙ୍କ ହାତକୁ ଚିଠିଟା ବଢ଼େଇ ଦେଇ ଚଇଁ କହିଲେ 'ଚିଠି ପଢ଼ିବୁଟି—କୁଆଡ଼ୁ ଆସିଲା, କାହିଁକି ଆସିଲା, କଅଣ ଆସିଲା।"

ସରକାରୀ ଚିଠି। ଖୁବ୍ ସାବଧାନତାର ସହ ଖୋଲିବାକୁ ହେବ। ଚିଠିଟା ଗୁରୁତ୍ୱ ପୂର୍ଣ୍ଣ ଏଥିରେ ସନ୍ଦେହ ନାହିଁ। ଅତ୍ୟଧିକ ସାବଧାନତା ଅବଲମ୍ବନ କରିବା ଫଳରେ ଚିଠିଟା ଫିଟିବାକୁ ବହୁତ ସମୟ ଲାଗିଲା। ଗେଣ୍ଡୁ ଦୁଇ କଣରୁ ନଖେଇ ନଖେଇ ନ ପାରିବାରୁ ଟିକିଏ ପାଣିଆଣି ଲଫାପାର ଯୋଡ଼ ମୁହଁରେ ବାରମ୍ବାର ବୋଳିବାକୁ ଲାଗିଲା। ଚଇଁ ପାଣିଏ ଏତେଗୁଡ଼ାଏ ସମୟ ବସନ୍ତେ କିଆଁ, ସେ ମନେ ମନେ ଖୋଲ ଭିତରେ ପଶି ଚିଠିଟାକୁ ପଢ଼ିବାକୁ ପ୍ରାଣ ପଣେ ଚେଷ୍ଟା ଚଳେଇଲେ—

ଚିଠିଟି ନିଶ୍ଚୟ ସେଟେଲ୍‌ମେଣ୍ଟ କ୍ୟାମ୍ପର ହାକିମ ପାଖରୁ ଆସିଛି। କେତେ ବା ଜମି ମୋର ! ଅଲପେଇସ ଟାଉଟର ତକ ଭାଗଚାଷୀମାନଙ୍କୁ ମତେଇ ଦେଇଛନ୍ତି। ସେମାନେ ଭାଗ ଜମିକୁ ଧୂଳିଭାଗ କରେଇ ନବାକୁ ବୋଧେ ବସିଛନ୍ତି। ଭାଗଚାଷୀ ଗୁଡ଼ାକ ସିନା ମୂର୍ଖ ଟାଉଟରଙ୍କ କଥାରେ ମାତି ଯାଆନ୍ତି। ହେଲେ ହାକିମ ଚାରିଆଡ଼କୁ ଚାହିଁବା ଲୋକ। ସେ ନିଶ୍ଚୟ ସବୁ କଥା ଜଣେଇ ଚିଠି ଦେଇଛନ୍ତି। ଲକ୍ଷ୍ମୀଛଡ଼ା ଗୁଡ଼ାକ ଚାରିଆଡ଼େ ଉତ୍ପାତ ଆରମ୍ଭ କରି ଦେଇଛନ୍ତି। ସରକାରଟାତ ମାଇଚିଆ, କହିବା କାହାକୁ। କହୋ ଆମ ଉପରେ ଏତେ ନଜର

କାହିଁ ? ଯେଉଁ ଶେଠମାନେ ଦଶ ଦଶଟା ମିଲ୍ ଖୋଲି ବସିଛନ୍ତି ସେଠିକି ଉଁ କି ଚୁଁ କରୁ ନାହିଁ । ଆମେ ତ ଭାଗ ଚାଷୀଙ୍କୁ ବାରଣା ଦେଇ ଚାରଣା ଆଣୁଛୁ, ତେବେବି ଭଡ଼ା ଓଟର । ଶେଠମାନେ ଚାରଣା ଦେଇ ବାରଣା ନେଉଛନ୍ତି । ସେତକ ଆଉ ସରକାର ଆଖିରେ ପଡୁନ । ଟାଉଟରମାନେ ସେଠି ଆଉ ନାଟ ଲଗେଇ ପାରୁ ନାହାନ୍ତି । ଅବାଇଜେ କୁହାଟୁଛନ୍ତି ଲଙ୍ଗଳ ଯା'ର ଜମି ତା'ର । କାହିଁକି କହୁନା ହାତୁଡ଼ି ଯା'ର ମିଲ ତା'ର । ଆମେ ତ ହଳ କରି ପାରୁନୁ ବୋଲି ଆମ ଜମିତକ ଭାଗଚାଷୀଏ ଛଡ଼େଇ ନେବେ, ଆଉ ବି ସେମାନେ ଯେପରି ସୁରୁଖୁରୁରେ ଛଡ଼େଇ ନେଇ ପାରିବେ ସେମିତିଆ ଆଇନ୍ ସରକାର ଗଢ଼ି ଚାଲିଛନ୍ତି । ଶେଠମାନେ ତ ହାତୁଡ଼ି, ପେଚକସ ଧରି ମିଲ୍ ଚକ ବୁଲଉ ନାହାନ୍ତି, ତେବେ ତାଙ୍କଠୁଁ ଶ୍ରମିକମାନେ ଯେପରି ସୁରୁଖୁରୁରେ ମିଲ ଛଡ଼େଇ ନେବେ ସେମିତିଆ ଆଇନ୍ ସରକାର ଗଢୁ ନାହାନ୍ତି କାହିଁକି ? ଅସଲ କଥା ହେଲା ସରକାରୀ କଳକୁ ଚଳାଇବା ପାଇଁ ଯେଉଁ ମନ୍ତ୍ରୀମାନେ ଅଛନ୍ତି, ସେଇମାନେ ହେଲେ ଅସଲ ମନ୍ତୁଡ଼ି । ଶେଠମାନଙ୍କଠାରୁ ବହାଣିଆ ବୋହି ନେଉଛନ୍ତି, ସେମାନଙ୍କ ବାହାରେ ଟିପ ଛୁଆଁଇ ଦେବେ ନାହିଁ । ଆମଠୁଁ ତ ଟୋପାଏ ବି ରସ ପାଇବେନି, ତେଣୁ ଟାଉଟର୍ ମାନଙ୍କୁ ସିଆଡ଼୍ ଅଡ଼େଇ ଆଣି ଆମରି ଆଡ଼େ ମୁହାଁଇ ଦେଇଛନ୍ତି । ଆମ ଭଳିଆ ଶହେ ଜଣ ଭାସିଗଲେ ସେମାନଙ୍କର କିଛି ଯିବନି । କିନ୍ତୁ ଗୋଟାଏ ଶେଠ ଭାସିଗଲେ ଦଶ ଦଶଟା ମନ୍ତ୍ରୀ ଭାସିଯିବେ । ଯାଉ ଅଲଟପେଇସେ ଯାହା କରୁଛନ୍ତି, କରନ୍ତୁ—

ସେତେବେଳକୁ ଲଫାପା ଖୋଲି ଗେଣ୍ଡୁଦାସେ ଚିଠିଖଣ୍ଡ ମନଦେଇ ପଢ଼ି ଲାଗିଥାନ୍ତି । କଥାଟା କଅଣ କହିବାରେ ଡେରି ହେବାରୁ ଚଇଁ ପାଣିଏ ପୁଣି ରାସ୍ତା ଭାଙ୍ଗି ଅନ୍ୟରକମ ଭାବି ଲାଗିଲେ—ନା ଏଇଟା ସେମିତିଆ ଚିଠି ବୋଧହୁଏ ନୁହେଁ, ହୋଇଥିଲେ ଗେଣ୍ଡୁ ଦେଖୁ ଦେଖୁ କହିଦେଇ ଥାଆନ୍ତେ । ଆଉ କଅଣ ହୋଇପାରେ ତାହା ଭାବିବାକୁ ଯାଉଛି, ଠିକ୍ ଏତିକିବେଳେ ଗେଣ୍ଡୁଦାସେ ଚିଠିଟିକୁ ବୁଜିଦେଇ କହିଲେ—"ବୁଝିଲ ପାଣିଏ ! ପୁଷ୍ପମଣିଙ୍କୁ ଆଉ ଡେରି ନ କରି ବାହାକରି ପକାଅ ।"

ପାଣିଏ ଘାବରେଇ ଗଲେ । ସରକାଷ୍ଟ ଚିଠି, ସେଥିରେ ପୁଣି ବାହାଘର, ବୋଧହୁଏ କେହି ଜଣେ ହାକିମ ତାଙ୍କ ପିଲା ବିଷୟରେ ପ୍ରସ୍ତାବ ଦେଇଛନ୍ତି । ଯାହାହେଉ ମୋ ପୁଅକୁ କେମିତି ଦେଖି ନେଇଛନ୍ତି । ତାର ଗୁଳଚଳନ ଓ ପାଠ ପଢ଼ାରେ ଖୁସ୍ ହୋଇଯାଇ ପ୍ରସ୍ତାବ ପଠେଇଛନ୍ତି । ଯାହା ହେଉ ପୁଅ ଯୋଗୁ ସିନା ଆଜ ହାକିମ ଘରେ ବନ୍ଧୁ ବାନ୍ଧିବ । ପୁଅ ଯେ କେବଳ ପୁତ୍‌ନାମକ ନର୍କରୁ ଉଦ୍ଧାର କରେ ତା ନୁହେଁ, ବଇଁଶର ଠେକାକୁ ମଧ୍ୟ ବଢ଼ାଏ, ଯେତେହେଲେ ସେ ମୋର ପୁଅ । ଆମ୍ବଗଛରେ ଅମ୍ବ ନ ଫଳି କଅଣ ଅମ୍ବଡ଼ା ଫଳନ୍ତା । ଏମିତି ଭାବୁ ଭାବୁ ଗେଣ୍ଡୁଦାସେ ପୁଣି କହିଲେ "ବୁଝିଲ—କଲେଜ ପ୍ରିନସ୍‌ପାଲ ଚିଠି ଦେଇଛନ୍ତି ।"

ଚଇଁ ପାଣିଏ ଏଥର ମୁହଁ ଖୋଲି କହିଲେ—"ଜାଣିଲ ଦାସେ ଅତି ବେଶି ହୋଇଗଲା । କେଡ଼େବଡ଼ ହାକିମ ସେ—ତାଙ୍କ ଝିଅକୁ ଆମେ ଚଳେଇ ପାରିବା ନାହିଁ । ବଡ଼ ଘରେ ବନ୍ଧୁ ବାନ୍ଧିଲେ ଭଲ, ହେଲେ ବେଶି ବଡ଼ ବନ୍ଧୁ ହେଲେ କଥାଟା ଦୁସର ରକମ ହୋଇଯିବ । ବନ୍ଧୁ ସ୍ନେହ ସେଠୁ ଆଉ ନ ମିଳେ; ଦେଖିଲା ମାତ୍ରେ ସେ ଆଗ ନାକ ଟେକିବ । ନାଃ ସେଠୁଁ ଝିଅ ଆଣିବାନି, ତୁମର ମତ କଅଣ ଦାସେ ?"

ଦାସେ ମୁରୁକି ହସା ଦେଇ କହିଲେ—"ପାଣିଏ କି କଥା କହୁଛ କହେ । ହଇହେ ଝିଅ ଆଣିବା କଥା ଉଠୁଛି କୁଆଡ଼ୁ ? ନଙ୍କା ନ ଦେଖୁଣୁ ଏକାବେଳକେ ଲଙ୍ଗଳା ! ଆହେ ତୁମେ ଜାଣିଥିବ, କଲେଜରେ ପୁଏ ଝିଏ ସମସ୍ତେ ପଢ଼ନ୍ତି । ତମ ପୁତ୍ରମଣି କୁଆଡ଼େ ଝିଅପିଲାମାନଙ୍କ ସାଙ୍ଗରେ ଖରାପ ବ୍ୟବହାର କରୁଛି । ପୁଣି ଭବିଷ୍ୟତରେ ଏମିତି କଲେ କଲେଜରୁ ତାକୁ ତଡ଼ି ଦିଆଯିବ ବୋଲି ପ୍ରିନସ୍‌ପାଲ ତାକୁ ସତର୍କ କରାଇ ଦେଇଛନ୍ତି । ଓ ସେ ଖବରଟା ତୁମକୁ ଜଣେଇ ଦେଇଛନ୍ତି । ମୁଁ କଥାଟା ମନରେ ବେଉନ୍ତ କହିଲି—ପୁତ୍ରମଣି ଯେତେବେଳେ ବହିକୁ ଠେପି ଏତେ ଦୂର ଆଗେଇ ଗଲାଣି, ସେତେବେଳେ ଆଉ ଡେରି ନ କରି ହାତକୁ ଦିହାତ କରିଦେଲେ କାମ ଫତେ ହୋଇଯିବ । ବେକରେ ଢୋଲ ପଡ଼ିଲେ ତେଣିକି ପୁଅ ବଜେଇ ଶିଖିବ ।'

ଚଇଁପାଣିଙ୍କ ଫକାଶି ଉଡ଼ିଗଲା । ପାଟିଟା ପୁରପୁର ମେଲା ହୋଇ ଗଲା । ଦାସଙ୍କ ମୁହଁକୁ ବାଲୁ ବାଲୁ କରି ଚାହିଁ ରହିଲେ । କିଛି ସମୟ ପରେ ପାପୁଲିଟାକୁ ମଥାରେ ବାଡ଼େଇ ଦେଇ ବିରକ୍ତ ଉଠିଲେ—"ହାଃ ହତଭାଗା ! ଏଣେ ପେଟରୁ କାଟି ପୁଅ ପଢ଼ିବ ବୋଲି ଟଙ୍କା ପଠେଇବାରେ ଲାଗିଛି, ତେଣେ ପୁଅ ଆମର ଅଲଗା ପାଠ ପଢ଼ିବାରେ ବ୍ୟସ୍ତ । ଇଏତ କଳିକାଳ, ଆମ୍ବ ଗଛରେ ଆମ୍ବଡ଼ା ନ ଫଳିବ କେମିତି ? ନାଃ ଆଉ ତା ମୁହଁ ଚାହିଁବି ନାହିଁ ।"

ଦାସେ କଥାଟାକୁ ନରମେଇ ଦେବାକୁ ଯାଇ କହିଲେ—"ବୁଝିଲ ପାଣିଏ, ବୟସ ହେଲେ ସମସ୍ତେ ସେମିତି ହୁଅନ୍ତି । ତେବେ ବେଳକାଳ ଜାଣି ହାତ ଛନ୍ଦିଦେବା ଭଲ । ପୁଅ ପାଶ୍ କରି କିଛି ଚାକିରି ଖୋଜିବନି ଯେ ସେଇଟା ନ ପାଇବା ପର୍ଯ୍ୟନ୍ତ ହାତଛନ୍ଦା ପାଇଁ ଅପେକ୍ଷା କରିବ । ନିଜ ଘର ବେଉସା କଲେ ତ ପେଟ ନାହିଁ ଖାଇବାକୁ । ଏଣୁ ଚଟାପଟ୍ ତାକୁ ଛନ୍ଦିଦିଅ ।"

ପାଣିଏ କଥାଟାକୁ ଗିଳିଦେଲେ ସିନା, ହେଲେ ହଜମ କରି ନପାରି ଅଜଗର ଭଳି ମୋଡ଼ି ହେଲାପରି ଭଡ଼ମୋଡ଼ ହୋଇ କହିଲେ—"ଯାହା କହିଲ ଦାସେ ତା ଠିକ୍ ଯେ, ହେଲେ ଏମିତି ଚଟାପଟ୍ କରିବା ପାଇଁ ଅଣ୍ଟାରେ ଜୋର ଥିଲେ ତ—?"

"ହଇହେ ପାଣିଏ ! ପୁଅ ବାହାଘରେ ଅଣ୍ଟା ଜୋରର କି ଦର-କାର ? ଗୋଟାଏ ବଡ଼ଘର ଦେଖି ବନ୍ଧୁ ବାନ୍ଧିଲେ ଯୌତୁକ ଧନରେ ସବୁ ଖର୍ଚ୍ଚ ଉଠି ବଳକା କିଛି ଘଡ଼ାରେ ପଶିବ—"

"ସେତକ ଥାଉ ଦାସେ । ପୁଅବିକା କାମ ମୋ ଦ୍ୱାହାନ୍ତରେ ହୋଇ ପାରିବ ନାହିଁ । ଆମ ସାତାନ ସାତ ପୁରୁଷରେ କେହି ଯୌତୁକର ନାଁ ଧରି ନାହାନ୍ତି, ମୋ ପୁଅ କଅଣ ତାଙ୍କୁ ବାହାର ହେବ । ପୁଅ ମୋ ଜୋରରେ ହେଉ ବା ତା ନିଜ ଜୋରରେ ହେଉ ହାତକୁ ଦି'ହାତ ହେବ । ଶଶୁର ଧନରେ ନୁହେଁ । ମୋ ନିଜ ଜୋରରେ ମୁଁ କରି ଯାଆନ୍ତି ଯେ

ଏବ୍ଭକଷଣି ମୋ ମୁଣି ଝାଉଁଝୁଉ । ଭାଇଭଉଣୀଆ ଘର, ଭାଇ ବରାଦର, ବନ୍ଧୁ ବାନ୍ଧବ, ସମସ୍ତେ ଠାକ ରହିଛନ୍ତି । ପୁଅ ବାହାଘର ବେଳକୁ ମୋତେ ଡାହାଳ କୁକୁର ଘେରିଲା ପରି ଘେରିପିବେ । ମୋତେ ପୁରାପୁରି ଦେବାଳିଆ କରି ଛାଡ଼ିଦେବେ । ସବୁଆଡୁ ବେଉନ୍ତି ମୁଁ ଦେଖିଛି ଚୋପଠାସ୍ ଦଶ ହଜାରଟି ଟଙ୍କା ହଟେଇଦେବେ ।"

"କହୋ ତୁମେ ଯଦି ଖର୍ଚ୍ଚ ନ କରିବ ତେବେ ତୁମକୁ କଅଣ ବାନ୍ଧି ବାଡ଼େଇବେ । କଅଣ ତୁମର କେଞ୍ଚ ପକେଇବେ । ସାଫ୍ ସାଫ୍ କହିଦେବ—ମୋର ଶକ୍ତି ନାହିଁ । ମୁଁ ଏତେ ଖର୍ଚ୍ଚ କରି ପାରିବନି । ପୁଅ ବାହାଘର କରିବ ବୋଲି କଅଣ ଦାଣ୍ଡରି ଭିକାରି ହେବ । ତୁମେ କଅଣ ମଫସଲର ହାଟୁଆ ବାଟୁଆ ଘରର ଲୋକ ହୋଇଛ ଯେ ତମକୁ ଏକଘରିକିଆ କରିବେ, ନିଆଁ ପାଣି ବାସନ୍ଦ କରିବେ । ହେଇ ହେଇ ପଛରେ କୁହା କୋହି ହେବେ—କଞ୍ଜୁସ୍ଟା, ଲୋଭିଟା, ମଖିଚୁସ୍ଟା, କହନ୍ତୁ, ତୁମର କଅଣ ଦାହ ଛିଣ୍ଡି ପଡ଼ୁଛି ।"

"ଯାହା କହିଲ ଦାସେ ସେଇଟା ଠିକ୍ ଯେ, ହେଲେ ଆମ ସମାଜ ଭିତରେ ଏମିତି ଏକ ଅଦୃଶ୍ୟ ଶକ୍ତି ଅଛି ଯାହା କି ସମସ୍ତଙ୍କ ନାକରେ ଦଉଡ଼ି ଲଗେଇ ଘୋଷାଡ଼ି ନେଇଯାଏ । ମଣିଷର ଯୁ ନଥାଏ ଉଁ ଚୁଁ କରିବାକୁ । ମହା ମହା ଦ୍ରୁମ ସମାଜ ଆଗରେ ଟଳି ପଡ଼ୁଛନ୍ତି । ମୁଁ କଦଳୀ ଗଛ କବା ଛାର ! ଆମ ବାପଅଜା ଯାହା କରି ଆସିଛନ୍ତି ସେଥିରୁ ଓହରିଯିବାକୁ ମୋର ତାକତ ନାହିଁ ।"

"ବୁଝିଲ ପାଣିଏ ! ସମାଜ କଅଣ ଥିଲା କଅଣ ହେଲାଣି । ଏହି ପରିବର୍ତ୍ତନଟାକୁ ସ୍ୱର୍ଗରୁ ଦେବତାମାନେ ଆସି କରିନାହାନ୍ତି । ତୁମ ଆମ ଭଳିଆ ମଣିଷମାନେ କରିଛନ୍ତି ।"

"ସେଇଟା ସତ ଯେ ହେଲେ, କଲାବାଲାଏ ସେଥିପାଇଁ ନାକ କାନରେ ପାଣି ପିଇଛନ୍ତି । ତାଙ୍କ ପିଠିରୁ ଗୋପା ଉଡ଼ିଯାଇଛି । ସେମାନେ ମରି ହଜିଯିବାପରେ ଲୋକେ ଅବଶ୍ୟ ସେମାନଙ୍କୁ ଧନ୍ୟ ଧନ୍ୟ କହନ୍ତି ।"

ସେମାନେ କଅଣ ତାଙ୍କୁ ଗୁଣ୍ଡୁଛନ୍ତି, ସେ ଭ୍ରମତ ମୋର ନାହିଁ । ସମାଜକୁ ମୁଁ ଏଡ଼ାଇ ପାରିବ ନାହିଁ । ଭଲ ହଉ ବା ଖରାପ ହେଉ, ଆଗ ନିଜେ କମେଇ ଦଶହଜାର ଟଙ୍କା ହାତରେ ଧରିବ, ତା' ପରେ ପୁଅ ବାହାଘର କରିବ ।"

"ଆଚ୍ଛା ପାଣିଏ, ମୁଁ ଏମିତିଆ ବ୍ୟବସ୍ଥା କରିଦେବି, ଯେଉଁଥିରେ ତୁମର ଖର୍ଚ୍ଚ ହେବନି କି ସମାଜ ତୁମ ଉପରେ ଦାଉ ସାଧିବନି । ତେବେ ତୁମେ ବାହାଘର କରିବାକୁ ରାଜି କି ଅରାଜି ?"

"ଏତେ ସୁବିଧା ଗୁଡ଼େ କିଏ, ହେଲେ ଏଇଟା ଏକ ଅସମ୍ଭବ କଥା, ଖାଲି ମୁହଁର କଥା ।"

"ହଉ ସେଇଟା ମୁହଁର କଥା କି ହାତର କଥା ପରେ ଜାଣିବ, ସେ ଦାୟିତ୍ୱଟା ମୋର । ଆଚ୍ଛା କହିଲ, ରାଇବଣିଆ ଚମ୍ପତି ଘରୁ ପିଲାଟିଏ ଆଣିବ ?"

ପାଣିଏ କିଛି ସମୟ ଗୁମ୍ ଖାଇ ରହିଯିବା ପରେ କହିଲେ—"ହୁଁ—ଖାନ୍‌ଦାନୀ ଘର ନୁହେଁ, ପିଲାଟିକୁ କିନ୍ତୁ ମୁଁ ଦେଖିଛି । ଆଣିଲେ ଭଲ ହୁଅନ୍ତା ।"

"ବାସ୍ ଏଥରକ ତୁମେ ନିଶ୍ଚିନ୍ତ ରୁହ, ଗୋଟିଏ ପଇସା ବି ତୁମର ଖର୍ଚ୍ଚ କରିବାକୁ ପଡ଼ିବନି । କେବଳ ତୁମକୁ ପଦୁଟିଏ କଥା କହିବାକୁ ବାଠ ପାଇବେନି ।"

"ମୋତେ ତ ତୁମ କଥାଗୁଡ଼ାକ ଅସମ୍ଭବ ପରି ଜଣା ଯାଉଛି । କଅଣ କରିବ ବୋଲି ଠିକ୍ କରିଛ, ତାର ଟିକିଏ ଇସାରା ଦିଅ ତ ।"

ଦାସେ ପାଣିଙ୍କୁ ଗୋଟାଏ କଡ଼କୁ ଟାଣିନେଇ ସମସ୍ତ ଯୋଜନାଟି ମେଲେଇ ଦେଲେ । ପାଣିଏ ହସି ହସି କହିଲେ—"ଯୋଜନାଟା ଅବଶ୍ୟ ଚମତ୍କାର—ହେଲେ ପୁଅଟା ମୋତେ କଅଣ ଭାବିବ ।"

"ସେ କଥା ମୁଁ ବୁଝିବ । ପୁଅ ନାଡ଼ ମୁଁ ଠିକ୍ ଚପିଛୁ । ତାକୁ ଆଙ୍ଗୁଠି ଦେଖାଇଲେ ସେ ବାଦ୍ଧା ଗିଳିଯିବ । କାଲି ମୁଁ ଚମ୍ପତି ପାଖରୁ ଫେରିଲେ ତୁମର ତାର ଭେଟ ଖୁବ୍ ଗୁପ୍ତ ଭାବରେ ଓ ଗୁପ୍ତସ୍ଥାନରେ କରେଇ ଦେବ । ଚେଣିକି ଘଣ୍ଟା କଣ୍ଟାପରି ସବୁକଥା ସୁରୁସୁରୁରେ ଚାଲିବ । ହଉ ଥାଅ ମୁଁ ଚାଲିଲି ।"

× × ×

ଗେଣ୍ଡୁଦାସଙ୍କର ଉତ୍ତେଜକ ବାଣୀରେ ପାଣିଙ୍କ ପୁଅ ଏକାବେଳେକେ ସମ୍ମୋହିତ ହୋଇଗଲା । ବିଶେଷକରି ସେ ଯେତେବେଳେ ତା ମଉସାଙ୍କ-ଠାରୁ ଶୁଣିଲା ଯେ, ସେ ହେବ ଆଗାମୀ ଯୁଗର ବାର୍ତ୍ତାବହ, ଆଗାମୀ ବିପ୍ଳବର ଝଣ୍ଡାରକ୍ଷକ, ଭବିଷ୍ୟତ ଯୁବଶକ୍ତିର ଅଗ୍ରଦୂତ, ସମାଜ ସଂସ୍କାରର ପଞ୍ଚ ପୁରୋଧା, ସମାଜ ସଂଗଠନର ସୁଦକ୍ଷ ବିଦ୍ଧାଣୀ ଇତ୍ୟାଦି ଇତ୍ୟାଦି, ସେତେବେଳେ ତାର ଉତ୍ସାହ ଉଦ୍ଦୀପନାଗୁଡ଼ାକ ତା ଦେହକୁ ସଲଖେଇ ଦେଲା । ଅଣ୍ଡିରା ପାରା ଘୁମୁରିଲାବେଳେ ଛାତି ଫୁଲେଇଲା ପରି ସେ ନିଜ ଛାତି ଫୁଲେଇ ଦେଲା । ନିଜ ଗାଡ଼ିର ହିଦା ନିୟନ୍ତ୍ରଣକୁ ମଉସାଙ୍କ ହାତରେ ପୁରାପୁରି ସଅଁପିଦେଲା ।

କେବଳ ପାଣିପୁଅ ଏକା ଯେ ଗେଣ୍ଡୁଦାସଙ୍କ ଭାଙ୍ଗରେ ଭୋଳହେଲା ତା ନୁହେଁ, ଭବିଷ୍ୟତର ସମ୍ଭନ୍ଧି ଚମ୍ପତି ମଧ୍ୟ ଟଳମଳ ହୋଇଗଲେ । କନ୍ୟା ବୋଝ ରୂପୀ ଗୁଆ ବସ୍ତାଟା ଯେ ଏଡ଼େ ସହଜରେ ଖଲାସ ହୋଇଯିବ ତାହା ସେ ସ୍ୱପ୍ନରେ ସୁଦ୍ଧା ଭାବି ନ ଥିଲେ । ଗେଣ୍ଡୁଦାସେ ତାଙ୍କୁ ଦେବଦୂତ ପରି ଦେଖାଗଲେ ।

× × ×

ମଫସଲ ଗାଁ । ପାଣିଙ୍କ ପୁଅ ବି. ଏ. ବାଡ଼ ଡେଇଁ ଗଲାଣି । ମାନେ ଫୁଲଟା ଫୁଟି ଗଲା ଜାଣ । ଧାଇଁଲେ ଶଶୁର ରୂପୀ ଭଅଁରମାନେ । ପାଣିଏ କାହାକୁ ମୁହଁ ଖୋଲି ନାସ୍ତି ବାଣୀ ଶୁଣାଇଲେ ନାହିଁ । ବନ୍ଧୁ ବାନ୍ଧବମାନେ କାହିଁ କାହିଁ ଶଶୁରମାନଙ୍କୁ ସାଙ୍ଗରେ ନେଇ ପାଣିଙ୍କ ପାଖରେ ପହଞ୍ଚିଲେ ।

ଆସନ୍ତା ପନ୍ଦର ତାରିଖରେ ଯେଉଁଠି ହେଉ ପଛେ ପୁଅ ବାହାଘର କରି ଦେବାକୁ ପାଣି ଦୃଢ଼ ସଂକଳ୍ପ ହେଲେ । ସାଜ ସାଜ ରଡ଼ିରେ ଘରଦ୍ୱାର ଉଠିଲା ପଡ଼ିଲା । ବନ୍ଧୁ ବାନ୍ଧବ କୁଟୁମ୍ବ ହାଉ ହାଉ ଧାଉ ଧାଉ ହୋଇ ଉଠିଲେ । ତାଲିକା ଉପରେ ତାଲିକା ଲେଖା ଚାଲିଲା । ଶହେ ଯୋଡ଼ା ଧୋତି, ଦୁଇଶହ ଶାଢ଼ୀ, ଚାରିଶହ ବ୍ଲାଉଜ, ପାଞ୍ଚଶହ ପିଲାପେଣ୍ଟ କେଉଁ ମାରୁଆଡ଼ି ଦୋକାନରୁ ଆସିବ, ଖାଣ୍ଟି ଗିନିର ଶହେଭରି ସୁନା କେଉଁ ଘଟିଆ ଠାରୁ ଆସିବ, ଦୁଇ ହଜାର ଲୋକଙ୍କ ପାଇଁ ଖାଦ୍ୟ ସାମଗ୍ରୀ କେଉଁ ଗୋଦାମରୁ ଆସିବ ତାହା ସବୁ ଠିକ୍ ହୋଇଗଲା । ହିସାବ କିତାପ ବାଲାଏ ଗଣାଗଣି କରି ଶୁଣେଇଦେଲେ ଗାସ୍ତେମାଟ ଚାଳିଶି ହଜାର ଟଙ୍କା । ପାଣିଏ ବେପରୁଆ ଭାବରେ କହିଲେ—"ଅଃ ! ଏଇ ତ, ଗୋଟିଏ ବୋଲି ପୁଅ ତ ! ତା' ବାହାଘରରେ ଖର୍ଚ୍ଚ କରିବିନି ତ ସମ୍ପତ୍ତି ରଖି କଅଣ କରିବ । ଘରବାଡ଼ି ବନ୍ଧା ଦେଇ ବ୍ୟାଙ୍କରୁ ୪୦ ହଜାର ଟଙ୍କା ସଙ୍ଗେ ସଙ୍ଗେ ନେଇ ଆସିବ । ବାହାଘର କାମଟା ବଢ଼େଇ ଦେଇ ସୁଝିବାରେ ଲାଗିଯିବ । ଗେଣ୍ଡୁଦାସେ ଚାଳିଶିହଜାରକୁ ତିରିଶି ହଜାର କରିବା ପାଇଁ ପରାମର୍ଶ ଦେବାରୁ ଅନ୍ୟମାନେ ଘୋର ପ୍ରତିବାଦ କରି ଉଠିଲେ—"କାହିଁକି ? କଅଣ ନଅଟା ନା ଛଅଟା ଅଛୁ : ରଖିଲେ ତାରି ପାଇଁ, ଖର୍ଚ୍ଚ କଲେ ତାରି ପାଇଁ । ହାତ ଏକାବେଳକେ ଖୋଲା ହେବା ଦରକାର ।'

ସେଇଆ ବି ହେଲା । ନିର୍ବନ୍ଧପରେ କଣା କର୍ଣ୍ଣ, ବନ୍ଧୁ ଲେଉଟାଲେଉଟି ଇତ୍ୟାଦି କାମ ଜୋରସୋରରେ ଆରମ୍ଭ କରି ଦେବାକୁ ସମସ୍ତେ ସଜବାଜ ହୋଇ ବସିରହିଲେ । ବାହାଘରଟା ନିକଟେଇ ଆସିବାରୁ ବନ୍ଧୁବାନ୍ଧବମାନେ ଗୁଆକୁ ଅପେକ୍ଷା ନ କରି ଆସି ପହଞ୍ଚିଗଲେ । ପାଣିଙ୍କ ଘରେ ହାଉଯାଉ ବଢ଼ିଗଲା ।

ସମସ୍ତେ ଲକ୍ଷ୍ୟ କଲେ ପାଣିଙ୍କ ପୁଅ କନ୍ନୁ ଏ ହାଉଯାଉରେ ଯୋଗ ନ ଦେଇ ଅନାସକ୍ତ ସନ୍ନ୍ୟାସୀ ପରି ରହିଛି । ଲେଖା ଯୋଖା ଅଜାମାନେ ତାର ଭାବାକ୍ରାନ୍ତ ମନକୁ ଉଲ୍ଲସିତ କରିବା ପାଇଁ ଚିହାଇ

ଲାଗିଲେ—"ହଉବେ ଶଳା ନାଡ଼ଟୋକା ! ବାହାଘର ଆସି କବାଟ ଧୂଳ୍ ଧୂଳ୍ କଲ୍ଣି ଶଳାଟି ଏମିତ ହେଙ୍ଗ୍ ଶୁଙ୍ଗିଲା ଭଳି ମୁହଁ କଅଁ କରି ବସିଛୁ ? ତୋ ବୟସରେ ଆମେ କେତେ ରକମର ବେଶ ଧରି ଶଶୁର ଘର ପାଖରେ ବୁଲଚୁଲ ଆସୁଥିଲୁ । ସାଙ୍ଗ ସୁଙ୍ଗାଙ୍କ ସଙ୍ଗେ ମଉଜରେ ଗୀତ ଗାଇ ଯାଉଥିଲୁ ଆଉ ତୁ ଶଳାଟି ହାଣ୍ଡି ପରି ମୁହଁଟାକୁ କରି ଚୁପ୍ ହୋଇ ବସିଛୁ, ଆବେ ଶଶୁର ଦେଖିଲେ କହିବ ମାଇହାଟାଏ । ଆବେ ଶଳା ଆ ତାଆସ ଖେଳିବା ।" ପୁଅ କେବଳ ଟିକିଏ ହସି ଦେଇ ପୁଣି ହାଣ୍ଡି ମୁହାଁ ହୋଇ ବସିଯାଏ ।

ଦୁ'ଦିନ ପରେ ନିବନ୍ଧ, ତାର ୫ଦିନ ପରେ ବାହାଘର । ପୁଅ କଟକ ବାହାରିଲା । ସମସ୍ତେ ମନା କଲେ । କିନ୍ତୁ ତାର ଯିବା ଉପରେ ଗୋଟାଏ ବଡ଼ ଚାକିରି ନିର୍ଭର କରୁଥିବାର ଶୁଣି ପାଣି ଗାର ହୋଇଗଲେ । ଠିକ୍ ନିବନ୍ଧଦିନ ସନ୍ଧ୍ୟାବେଳକୁ ଘରେ ଆସି ପହଞ୍ଚିବ ବୋଲି କହି ପୁଅ ଚାଲିଗଲା ।

× × ×

ନିବନ୍ଧ ଦିନ ବହୁ ବନ୍ଧୁବାନ୍ଧବ ଆସି ଘରେ ରୁଣ୍ଡ । ଗହଳ ଚହଳରେ ଘର ଫାଟି ପଡ଼ୁଛି । ହେଲେ ଯିଏ ବାହାହେବ ସେ କାହିଁ ? ବନ୍ଧୁବାନ୍ଧବମାନେ ବିଚଳିତ ହୋଇ ପଡ଼ିବାରୁ ପାଣିଏ ବୁଝେଇଦେଲେ— "ଏତେ ବ୍ୟସ୍ତ ହେବାର କାରଣ ନାହିଁ । ଟ୍ରେନ୍ ଡେରିହେଲେ ସେ ଠିକ୍ ସନ୍ଧ୍ୟାରେ ଆସି ପହଞ୍ଚିବ ବୋଲି ଜବାବ୍ ଦେଇଛି । ଆଉ ଦି ଗେଣ୍ଡୁ ଦାସେ ସେଇଠି ଅଛନ୍ତି । ସେ ତାକୁ ଘୋଷାଡ଼ି ନେଇ ଆସିବେ । ଚିନ୍ତା କରିବାର କୌଣସି କାରଣ ନାହିଁ ।"

ସନ୍ଧ୍ୟା ହେଲା । ନିବନ୍ଧ କରିବା ପାଇଁ ପୁରୋହିତ ଓ ଭଣ୍ଡାରି ସହ ଭଦ୍ର ସମୁଦ୍ର ଆସି ପହଞ୍ଚିଗଲେ । ଲାଇଟ୍ ଲଗିଲା । ଆଦର ଅଭ୍ୟର୍ଥନା ପରେ ଖିଲି ଖଣ୍ଡିଏ ଖଣ୍ଡିଏ କଳରେ ଜାକି, ତକିଆରେ ଆଉଜି ଜ୍ୱାଇଁ ସାଆନ୍ତଙ୍କର ଆଗମନକୁ ଅପେକ୍ଷା କରି ରହିଲେ । ମଝିରେ ମଝିରେ ଦୁଇ

ସମୁଦ୍ରଙ୍କ ମଧ୍ୟରେ ମିଠା ମିଠା ହସ ପରିହାସ ବି ପଡ଼ି ଯାଉଥାଏ । ପୁରୋ-ହିତ ଓ ଭଣ୍ଡାରି କନ୍ଦୁ ଜ୍ୱାଇଁଙ୍କୁ ନ ଦେଖି ଅସ୍ୱସ୍ତି ବୋଧ କରୁଥା'ନ୍ତି । ଠିକ୍ ଏତିକବେଳେ ଭୂତ ଭୟରେ ଧାଇଁଲା ପରି ଗେଣ୍ଡୁଦାସେ ସାଇକେଲ୍‌ରେ ଧଇଁସଇଁ ହୋଇଯାଇ, ସାଇକେଲଟାକୁ ଫୋପାଡ଼ି ଦେଇ, ସେହି ସ୍ଥାନରେ ଲଥ୍‌କରି ବସିପଡ଼ି ମୁଣ୍ଡରେ ହାତ ଲଗେଇଲେ । ଏପରି ଅଶୁଭକ ଏକୁଟିଆ ଆବିର୍ଭାବ ଓ ଅପ୍ରାକୃତିକ ନୀରବତା ଦେଖି ପାଣିଏ ପଚାରିଲେ—"ହାସେ । କଅଣ ହେଲା କହେ ?"

ଗେଣ୍ଡୁଦାସେ ସେମିତି ମୁହଁପୋତି କହିଲେ—"ପାଣିଏ ସବୁ ସରିଗଲା ।" ପାଣିଙ୍କ ଛଡ଼ା ଆଉ ସମସ୍ତଙ୍କ ଗ୍ରୁତି ହାଉଁ ହାଉଁ ହୋଇ ପଡ଼ିଲା । ବନ୍ଧୁବାନ୍ଧବ ସମସ୍ତେ ଘେରିଗଲେ । ସମସ୍ତେ ବ୍ୟଗ୍ରତାର ସହ ପଚାରି ଲଗିଲେ "କଅଣ ହେଲା, କଅଣ ହେଲା ?"

ପୂର୍ବପରି ଗେଣ୍ଡୁଦାସେ ଅବସନ୍ନ ହୋଇପଡ଼ି କହିଲେ—"ଆଉ ପଚାରୁଛ କଅଣ, ପୁଅ ଆମର ନାକ ବାଳ କାଟି ଦେଇଛି । ଆମ ଇଜ୍ଜତ ମହତ ଆଉ ରଖିନ । ଆମେ ଏଣେ ଗ୍ରତି ଅନିଦ୍ରା; ତେଣେ ମୁଗୁରା ପଛଟା ମେଲା । ଭାଗ୍ୟକୁ ନ ନିନ୍ଦ ଆଉ କାହାକୁ ନିନ୍ଦିବା । କଅଣ କଲୁରେ ପୁଅ !"

ପାଣିଏ ଅସମ୍ଭାଳ ହୋଇପଡ଼ି କହିଲେ—"ହଇହେ କଅଣ ହେଲା କହୁନ କାହିଁକି ମ ? ମନଟା ଗୋଳେଇ ଘୋଳେଇ ହଉଛି ।"

"ଆମେ ଏଣେ ଗୁଳଶି ହଜାର ଟଙ୍କା ଖର୍ଚ୍ଚର ଅଟକଳ କରି ପୁଅ ବାହାଘର ପାଇଁ ଯୋଗାଡ଼ ଯନ୍ତ୍ରରେ ଲଗିଛୁ, ତେଣେ ପୁଅ ଆମର ଗାଇବଣିଆ ଚମ୍ପତିର ଝିଅକୁ ନେଇ ପୁରୀ ଦେଉଳରେ କାଲିଠାରୁ ବାହା ହୋଇ ସାରିଲାଣି । ଖେଟେରେଡ଼ିଆ କଲେଜ ଟେ କାଏ ଖୁବ୍ ଧୁମ୍‌ଧାମ୍ କରି ବାହାଘର କରେଇ ଦେଇଛନ୍ତି । ତାର ଗୋଟାଏ କଏ ଦଦେଇ ବୋଲି ଅଛି । ପକ୍‌କା ମସ୍ତାନ୍ତି ସେ । ଚମ୍ପତି ଅଜାଣତରେ ତା ଝିଅକୁ ଶିଖେଇ

ଣାଖେଇ ନେଇଯାଇ, ବାବୁ କହନ୍ତି ପିତା ସାଙ୍ଗ ବଡ଼ ଦେଉଳରେ ଆମ ପୁଅଙ୍କ ସାଙ୍ଗେ ଛନ୍ଦ ଦେଇଛନ୍ତି । ଏଣେ ଶୁଣୁଛୁ ଚମ୍ପତି ପୁଲସକୁ ସାଙ୍ଗରେ ଧରି ଝିଅକୁ ଖୋଜୁଛୁ । ତେଣେ ତ କାମ ସରିଲାଣି । ଏଣେ ଆମର ଏତେ ପାଲ୍ କରିବା କି ଦରକାର ?

ଗେଣ୍ଡୁ ଦାସଙ୍କ କଥା ସରିଛି କି ନାହିଁ, ପାଣିଏ ଗ୍ରେଡ଼ବଖାଇ ତଳେ ଗଡ଼ିଗଲେ । ହାଁ, ହାଁ, କଅଣ ହେଲା, କଅଣ ହେଲା କହି ସମସ୍ତେ ହାଉଳି ଖାଇଗଲେ । ସମୁଦ୍ର, ପୁରୋହିତ ଓ ଭଣ୍ଡାରିକୁ ଧରି ଏକ ମୁହାଁହୋଇ ପଳେଇଲେ । ଗେଣ୍ଡୁ ଦାସେ ଜମି ଯାଇଥିବା ଲୋକମାନଙ୍କୁ ଠେଲଠାଲି ସେ ଥାନରୁ କାଢ଼ିଦେଲେ । ଧରାଧରି କରି ପାଣିଙ୍କୁ ଗୋଟାଏ ଘର ଭିତରକୁ ନେଇଯାଇ ଖଟ ଉପରେ ଶୁଆଇଦେଲେ । ଖୋଲା ପବନ ନିତାନ୍ତ ଦରକାର ବୋଲି କହି ସମସ୍ତଙ୍କୁ ସେ ଘରୁ କାଢ଼ିଦେଲେ ଓ ପାଣିଙ୍କ କାନରେ ସଞ୍ଜିବନୀ ମନ୍ତ୍ର ପଢ଼ିବେ ବୋଲି କହି ଫୁସ୍‌ଫାସ୍ କରି କହିଲେ —"ପାଣିଏ ସବୁ କାମ ସୁରୁଖୁରୁରେ ହୋଇଛି । କଲେଜ ଟୋକାଏ ହାତରୁ ପଇସା ଖର୍ଚ୍ଚକରି ମହା ଆନନ୍ଦରେ ଓ ଖୁବ୍ ଜାକଜମକରେ ପୁଷି ଦେଉଳ ଭିତରେ କାମଟା ବଢ଼େଇଦେଲେ । ଯାହାକୁହ ପାଣିଏ, ଏ କଲେଜ ଟୋକାମାନେ ସମାଜକୁ ଠିକ୍ ରାସ୍ତାରେ ଚଳେଇ ଦେବେ । ଖବର କାନରେ ପଡ଼ିଲା ମାତ୍ରେ କଲେଜ ପିଲାଏ ଆଠସାଙ୍ଗ ଆସି ପହଞ୍ଚିଗଲେ । ସମସ୍ତେ ଆମ ପୁଅକୁ ଏକରକମ ମୁଣ୍ଡେଇଛନ୍ତି ବୋଲି କହିଲେ ଚଳେ । ୨।୩ ମାସ ସେ ଯେପରି ପୁଷିରେ ରହିବ ତାର ବ୍ୟବସ୍ଥା କରିଦେଇ ଆସିଛି । ଯାଃ ଗୋଟାଏ ବଡ଼ କାମ ସୁରୁଖୁରୁରେ ହୋଇଗଲା । ତମେ ଏମିତି ମାସେ ଖଣ୍ଡେ ବୋଲି ଦେଖାଅ । ଚମ୍ପତି ତୁମଠୁଁ ବେଶି ବେଳି ଦେଖାଉଛି । ଆଉକୁ ନିଶ୍ଚିନ୍ତ ରୁହ ।

+ × +

ପାଣିଙ୍କର ଘୋଷ ପ୍ରତିଜ୍ଞା, ପୁଅ ମୁହଁ ଚାହିଁବେ ନାହିଁ କି ତାକୁ ଘରେ ପୁରେଇ ଦେବେନି । ତାଙ୍କ ଇଚ୍ଛା ବିରୁଦ୍ଧରେ ପୁଅ ବୋହୂଙ୍କୁ ଯଦି କେହି ଘରେ ପୂରାଏ ତେବେ ସେ ନିଜେ ଘର ଦ୍ୱାର ଛାଡ଼ି ପଣ୍ଡିଚେରୀ ପଳେଇବେ । ଯିଏ ତାଙ୍କ ଆଗରେ ପୁଅ ନାଁ ଧରିବ ସିଏ ହେବ ଘୋର

ଶତ୍ରୁ । ତାଙ୍କୁ ଅତ୍ୟଧିକ କ୍ରୋଧାନ୍ୱିତ ଓ କ୍ଷୁବ୍ଧ ପ୍ରତିଜ୍ଞାବଦ୍ଧ ହୋଇଥିବା ଦେଖି କେହି ପୁଅବୋହୂଙ୍କୁ ଘରକୁ ନେଇ ଆସିବା କଥା କହିଲେନି । ଦି ଦିନ ପରେ ଜଣେ ବନ୍ଧୁ କହିଲା—"ଯାହା ହେବାର ତ ହୋଇ-ଗଲାଣି । କନ୍ୟା ଘର କିଛି ଖରାପ ଘର ନୁହେଁ । ବୋହୂଟି ବି ସୁଲକ୍ଷଣୀ, ଘର ପାଇଟିରେ ନିପୁଣା । ଭଗବାନ ଦୁହିଁଙ୍କୁ ଏକାଠି କରି ଦେଇଛନ୍ତି । ପୁଅ ଭଲଘରେ ପଶିଛି । ତାକୁ ଅଣାଅ । ବଡ଼ ଦେଉଳରେ ବାହାଘର ହୋଇଛି । ବଡ଼ିଆ ହୋଇଛି, ଏଇଠି ସାତମଙ୍ଗଳା ଉଜେଇଁଦିଅ ।

ପାଣିଏ ପାଟିରେ ନ କହି ମନେମନେ କହିଲେ—"ମୋ ପୁଅ ପାଇଁ କେଡ଼େ ଦରଦ । ଅସଲ କଥାଟା କହୁନୁ । ଖିଆପିଆର ଧୂମ୍‌ଉଡ଼ିବ । ଲୁଗାପଟାର ସୁଅ ଛୁଟିବ, ମୁଁ ହେବି କାଙ୍ଗାଳ, ତୁମେ ସବୁ ମାରିବ ମଉଜ । ତୁମ୍ଭେମାନେ ଏଠୁଁ ଆଗ ଖଲାସ ହୁଅ ତାପରେ ଅନ୍ୟ କଥା ।"

ତାଙ୍କ ମୁହଁରୁ କଥା ନ ବାହାରିବା ଦେଖି ପାଣିଙ୍କ ଭାଇ ବିରାଦର ଭିତରୁ ଜଣେ ପୁଣି ଯାଇ ପୁଅବୋହୂଙ୍କୁ ନେଇ ଆସିଲା । ପାଣି ପ୍ରମାଦ ଗଣିଲେ । କାଲେ ପୁଣି ସାନ ବାହାଘର ଆରମ୍ଭ କରିଦେବେ ସେହି ଭୟରେ, ପାଣିଏ ଘରୁ ରୁଷି ପଳେଇଗଲେ ପୁରୀରେ ବିଶ୍ରାମ ନେବାକୁ ।

ବନ୍ଧୁବାନ୍ଧବମାନେ ଅପ୍ରସ୍ତୁତ ହୋଇ ଗୋଟିଏ ଗୋଟିଏ ଖସିଲେ । ସମସ୍ତେ ପଳେଇବା ପରେ ଘର ଟିକିଏ ଥଣ୍ଡା ପଡ଼ିଲା । ବେଳଉଣ୍ଡି ଗେଣ୍ଡୁ ଦାସେ ପୁରୀଯାଇ ପାଣିଙ୍କୁ ଭେଟିଲେ । ବହୁତ ହସ ଖୁସି ପରେ ଦାସେ କହିଲେ ଆଉ ଅପେକ୍ଷା କାହିଁକି, ଏବେ ଘରକୁ ଚାଲ । ବୋହୂ ଯେଉଁ ଚୁହା ତିଆରି କରୁଛି ପାଟିରୁ ଛୁଡ଼ିବନି । ୪୦ ହଜାର ଟଙ୍କାର ଅଟକଳକୁ ମୁଁ ତିନିଟଙ୍କାରେ ରଖିଲି । ବାହାଘରକୁ ବାହାଘର ହେଲା । ବଡ଼ିଆ ବୋହୂଟିଏ ପାଇଲ । ଅଯଥା ଟଙ୍କା ଖର୍ଚ୍ଚରୁ ବି ବଞ୍ଚିଲ, ଏବେ ଏହିକ୍ଷଣି ଉଠ । କାଲି ସକାଳୁ ବୋହୂ ହାତରୁ ଚୁହାଟା ଖାଇବା ।"

ଆନନ୍ଦରେ କୁରୁଳି ଉଠି ପାଣିଏ ସାଙ୍ଗେ ସାଙ୍ଗେ ଉଠିଲେ ।

———

# ପାଚକ କୁଳକୁ ପାଚେଣ

ମେସ୍ ପରିଚାଳକ ଗିଧିନ ସାହୁ ଆଉ ଚୁପ୍‌ହୋଇ ରହି ପାରିଲେନି । ସେ ଚିଲେଇ ଉଠିଲେ—"ନ ଜାଣି ଅନ୍ୟ ମେସ୍‌ବାଲାଏ ଆମ ମେସ୍‌ର ନାଁ ଦେଇଛନ୍ତି ଧୂମ୍ ଧଡ଼ାକ ମେସ୍ । ୩୬୫ ଦିନରୁ ଗୋଟିଏ ବି ଦିନ ସୁରୁଖୁରୁରେ ଗଲା ନାହିଁ । ଆଜି ଥାଳିଟାଏ ଫୋପଡ଼ା ହେଲାଣିତ କାଲି ଗିନା ବା ଥାଳିଆଟାଏ । ଆଜି ପୂଜାରୀକୁ ତଣ୍ଡିଆଟାଏ ତ କାଲି ଚାକରକୁ ବିଧାଏ । ଟିକିଏ ଟିକିଏ କଥାରେ ସଭ୍ୟମାନଙ୍କ ରାଗ ନାକ ଦଣ୍ଡିକୁ ଯଦି ଚଢ଼ିକରି ଉଠିଯାଏ ତେବେ ମେସ୍ ଚାଲିବ କିପରି ? ସାଫ୍ ସାଫ୍ କହି ଦିଅ ମେସ୍ ରହିବ ନା ଭାଙ୍ଗିବ । ଏମିତିଆ ଟିଙ୍ଗ୍‌ଶୁଳିଆ ସଭ୍ୟମାନଙ୍କୁ ନେଇ ଗୋଟାଏ ମେସ୍ ତିଷ୍ଠି ପାରିବ ନାହିଁ ।

ଗୋଳମାଳର ସୃଷ୍ଟିକର୍ତ୍ତା ଗେଡ଼ଦାସେ ନିଜର ଥାଳିଆ ଫୋପଡ଼ା ଓ ଚାକର ଠୋକାକୁ ଅଇଣ୍ଠା ହାତରେ ଏକ ଖୁନ୍ଦା ଦେବା କର୍ମକୁ ସମର୍ଥନ କରିବାକୁ ଯାଇ କହିଲେ "ଆଉ ଉପାୟ କ'ଣ ? ହଜାର ଥର ମଦନାକୁ କହିଲଣି—ଆରେ ଆଳୁଦମ୍‌କୁ ଟିକିଏ ବାଗେଇ କର । ସେ ଶୁଣିବ କାହିଁକି । ଆଳୁ ଦମ୍‌ଟାଏ କରିଛି ଯେ ମଣିଷ ପାଟିରେ ଦେଇ ପାରୁନି । ଗୁହ ବି ଏହାଠାରୁ ଅଧିକ ଭଲ ଲାଗିବ ।"

ଗେଡ଼ ଦାସଙ୍କ କଥା ସରିଛି କି ନାହିଁ ଖୁନ୍ଦାଖିଆ ଚାକର ଠୋକା ନିଧିଆ ମୁଣ୍ଡ ପଛଆଡ଼ଟା କୁଣ୍ଡେଇ ଗିଧିନ ସାହୁଙ୍କ ପାଖେ ଫେରାଦ କରି କହିଲା ଆଜ୍ଞା ଭଲ ହୋଇନିତ ଦିଥର ମାଗି ଖାଇଲେ କେମିତି ? ଶେଷ ଥର ଅଳ୍ପ ହୋଇ ଗଲାରୁ ଚିଡ଼ିଯାଇ ଥାଳିଆଟା ଫୋପାଡ଼ି ଦେଲେ ।

ସେଥିରେ ପୁଣି ଗୁଡ଼ିଏ ଆଳୁରୁ ତିନିଟା ଖାଇଛନ୍ତି । ଗୋଟାଏ ଗୋଟାଏ କେବଳ ଥାଳିଆ ସାଙ୍ଗରେ ଫୋପାଡ଼ି ଦେଇଛନ୍ତି । ମୁଁ କିଛି ନାକରି କଥା କହିନି, କହିଲି ବାବୁ ଥାଳିଆ କ ଦୋଷ କଲା ? ଭାଗ୍ୟ ସିଲଭର ଥାଳିଆ, କଂସା ହୋଇଥିଲେ ଗୁଡ଼ିଏଙ୍କା ତଣ୍ଟି ଲାଗି ଥାଆନ୍ତା । ଏତିକି କହୁ କହୁ ଖାଇଲା ଥାଳରୁ ଉଠି ଆସି ଅଇଣ୍ଠା ହାତରେ ମୋ ଗାଲରେ ଖୁନ୍ଦାଏ ।

ଗେଡ଼ି ଦାସେ ଉହୁଙ୍କି ଆସି କହିଲେ ତୋର ଆଉ ଗାଲକୁ ଆଉ ଗୋଟାଏ ଖୁନ୍ଦା ଦରକାର । ହଇବେ ତରକାରି କମ ହେଉଛି କାହିଁକି ? ପରିବା କଣା ତ କିଛି କମ ହେଉନି । ହିସାବ କରି ଦେଖିଲେ ଜଣକପିଛା ଅଢ଼େଇ ଶହ ତରକାରି ପଡ଼ିବାର କଥା । ଯେଉଁ ହିସାବରେ ଆଳୁ ମୋତେ ଦେଲୁ ତା ଶହେ ହବନା ? ପରିବା ଯାଉଛି କୁଆଡେ ?

ନଧିଆ ଦେଖିଲା ସାରୁ ଖୋଳୁ ଖୋଳୁ ମହାଦେବ ବାହାରିଲେଣି । ଆଉ ବେଶୀ ଖୋଳିଲେ ଯଦି କେଉଁଟା ବାହାରିପଡ଼େ ତେବେ ତା ଭୁଷାରେ ହୁଏତ ଜୀବନଟା ଚାଲିଯାଇ ପାରେ । ଉପରେ ସେ ପଛଘୁଞ୍ଚା ଦେଲା ।

କବେ ! ପାଟିରୁ କଥା ବାହାରୁନି କାହିଁକି ? କଅଣ ଜବାବ ଦେ, ଶୀକାର ବଖତରେ ଝାଡ଼ା ଫେରି ବାହାରିଲୁ କାହିଁକି ? ନଆଁରେ ପାଣି ପଶିଗଲା କରେ ? ଆଜ ଯେତେ ପଦ୍ମତୋଳା ଗେଡ଼ି ଦାସେ ବୋଲିଲେ ତାର ଫଳ କିଛି ହେଲାନି । ନଧିଆ ସାପର ଫଣା ଆଉ ନ ଉଠେ । ଠିକଣା ଗନ୍ଧ ତା ନାକରେ ବାଜି ଥିବାରୁ ସେ କୋଚିଆ ହୋଇ ପଡ଼ିଥିଲା । ବିଚରା ଉତ୍ତର ଦେଇ ପାରୁ ନଥାଏ କି ସେଠାରୁ ଚାଲିଯାଇ ପାରୁ ନ ଥାଏ । ଏତିକି ବେଳେ ଆଉ ଜଣେ ସଭ୍ୟ ପଛଆଡ଼ୁ ଚାଂଟିଆଟାଏ ଦେଇକହିଲା ଯାଆବେ ସାଢ଼େ କାମକର । ଖୁଣ୍ଟାପରି ଠିଆହୋଇଛୁ କାହିଁକି ?

ଏ ଚଣ୍ଟିଆଟି ଆଉ କେତେବେଳେ ନଧିଆକୁ କେମିତି ଲାଗି ଥାଆନ୍ତା କେଜାଣି, ସେତେବେଳେ କିନ୍ତୁ ବଡ଼ ଆରାମଦାୟକ ଓ ଏକ ଜଟିଳ ସମସ୍ୟା ମଧ୍ୟରୁ ଏକ ମୁକ୍ତିଦାତା ପରି ଜଣାଗଲା ।

ଆମ ଓଡ଼ିଆଙ୍କ ଆଉ ଯେତେ ଲକ୍ଷଣ ଥାଉ ନା କାହିଁକି, ଗୋଟାଏ ବଡ଼ 'ଲକ୍ଷଣ ହେଉଛି—ସମସ୍ତଙ୍କ ଆଖି ଆଗରେ ଗୋଟାଏ କିଛି ଅଘଟଣା କଥା ହୋଇ ଯାଉଥିବ : କେହି କିଛି ଊଁ ଚୁଁ କରୁ ନଥିବେ; ସେ ଆଡ଼କୁ ଚାହିଁ ଯାଉ ନ ଥିବେ । ଜଣେ କେହି ଯଦି ସେଠି 'ହେ' ବୋଲି କହି ଦେବ ବାସ୍ କାମ ଖତମ୍ । ସମସ୍ତେ ସବୁ କାମ ଛାଡ଼ି ସେଠି ହାଜର ହୋଇ ଯିବେ ଆଉ 'ହୋ-ହା' ରେ ଥାନଟାକୁ ଥରାଇ ଦେବେ । ୪୦ ଜଣଯାକ ସଭ୍ୟ ସବୁ ଦିନେ ଏକା ପରିମାଣରେ ତରକାରି ଖାଇ ଆସୁ ଥିଲେ । କମ୍ ହେଉଛି ବୋଲି କାହା ମୁଣ୍ଡରେ ପଶୁ ନ ଥିଲା । ଯେଉଁ ଦାସେ ତରକାରି କମ୍ ହେଉ ଥିବା କଥାଟାକୁ ଯେମିତି ଉଖାରି ଦେଇଛନ୍ତି ସମସ୍ତେ ସେଇଠି ଠକ୍ କରି ଅଟକି ଗଲେ । ଚାଲିଲା ଖାତା ପତ୍ର ତନଖି, ହେଲା ହିସାବ କିତାବ । ପରିବା ଆସୁଛି ଗୋଟାଏ ଓଳିକୁ ଦଶ କିଲୋ, ତେଲ ଅଧକିଲୋ । ଲୁଣ ଅଧକିଲୋ ପରିବା, ପାଣି, ତେଲ, ଲୁଣ ଆଉ ମସଲା ମିଶିଲେ ତରକାରି ଓଜନ ଅଧିକେ ପନ୍ଦର କିଲୋକୁ ଟପିବ । ଜଣକ ପିଛା ଚାରି ଶହକୁ ଛୁଏଁ କି ନଛୁଏଁ । ଦେଖିଲା ବେଳକୁ ତରକାରି ମିଳୁଛି ଦେଢ଼ ଶହ କି ଦୁଇ ଶହ । କଣ୍ଟାଲ କଲେ ଆଉ ପରୀକ୍ଷା ପଡ଼େ କି ନ ପଡ଼େ । ଏମିତିଆ ଘଣ୍ଟା ଚକଟା ଖୁବ୍ ଚାଲିଲା । ସମସ୍ତେ ନିର୍ଦ୍ଧାର୍ଯ୍ୟ ଭାବେ ଜାଣିଲେ ଯେ ପୁଝାରି ମଦନା ଓ ଚାକର ଟୋକା ନଧିଆ ଓ ସିନ୍ଧୁଆ ତିନି ଜଣଙ୍କ ଷଡ଼ଯନ୍ତ୍ର ଫଳରେ ପରିବା, ଚାଉଳ ଆଦି ଅଳ୍ପ କଣା ଯାଉଛି ଓ ହିସାବ ଖାତାରେ ବେଶୀ ହୋଇ-ପଡ଼ୁଛି । ତତକ୍ଷଣ ଗୋଇନ୍ଦାଗିରି କରି ଏମାନଙ୍କର ଷଡ଼ଯନ୍ତ୍ରକୁ କାବୁ କରି ଦେବାକୁ ହେବ । ସର୍ବ ସମ୍ମତି କ୍ରମେ ଏ ପ୍ରସ୍ତାବଟି ପାସ୍ ହୋଇଗଲା । ଏହା ସଙ୍ଗେ ସଙ୍ଗେ ତେଣେ ମଦନ, ନଧିଆ, ସିନ୍ଧୁଆଙ୍କର ଗୁପ୍ତ ଅଧିବେଶନରେ ବାବୁମାନଙ୍କ ବାଣର କାଟ ପାଣି କପରି କରାଯିବ ତାହା ମଧ୍ୟ ସର୍ବସମ୍ମତିକ୍ରମେ ସ୍ଥିର ହୋଇ ଗଲା ।

ଗୋଇନ୍ଦାଗିରିର ପ୍ରଥମ ଚଢ଼ାଉ ସ୍ୱରୂପ ଦିନେ ପରିବା କିଣା ହୋଇ ଆସିବା ପରେ ଗିର୍ଦ୍ଧିନ ବାବୁ ନଧିଆକୁ ହୁକୁମ କଲେ ଗଲୁ

ପରିବା ଦୋକାନୀଠୁ ତରାଜୁ ବଟକରା ନେଇ ଆସିବୁ, ପରିବା ଓଜନ କରିବା" ।

ନଧିଆ ବଡ଼ ତତ୍ପରତାର ସହ ଦଉଡ଼ି ଯାଇ ପରିବା ଦୋକାନୀକୁ ସବୁ କଥା ଜଣାଇ ତରାଜୁ ବଟକରା ମାଗିଲା । ଦୋକାନୀଟି ତରାଜୁ ଓ ଅଧକେଜି ବଟକରା ଦେଇ କହିଲା ଦେଖ ଖବରଦାର ଏ ବଟକରା ଯେମିତି ଅନ୍ୟ ବଟକରାରେ ଓଜନ ନ ହୁଏ । ଏ ବଟକରାରେ ୧୦୦ ଗ୍ରାମ କମ୍ ଅଛି । ଓଜନ ସରୁ ନସରୁଣୁ ନେଇ ପଳାଇ ଆସିବୁ । ଦେଖ ଆଉ କାହା ହାତରେ ଯେମିତି ଏ ବଟକରା ନ ପଡ଼େ । ଓଜନ ମାପ ବାଲାଙ୍କ ହାତରେ ପଡ଼ିଲେ ସାଙ୍ଗେ ସାଙ୍ଗେ ମାମୁଁ ଘର । ଧରା ପଡ଼ିଲେ ମୁଁ ସେଇଟା ମୋ ବଟକରା ବୋଲି ମାନିବି ନାହିଁ । ତୁହି ମରିବୁ । ଏଣୁ ଦେଖି ଶୁଣି କାମ କରିବୁ ।

ଗିଧିନ୍ ସାହୁ ବଟକରା ପରୀକ୍ଷା କରି ଦେଖିଲେ ଉପରେ ୫୦୦ ଗ୍ରାମ୍ ଲେଖା ଅଛି । ତରାଜୁ ଠିକ ଦେଖିଲେ ପାସଙ୍ଗ କେଉଁ କଡ଼େ ନାହିଁ । ନିଜେ ଧଡ଼ା ଧଡ଼ା କରି ଓଜନ କରି ଲାଗିଲେ । ଗୋଟାଏ ଗୋଟାଏ ପରିବାର ଓଜନ ସାମାନ୍ୟ ଏପାଖ ସେପାଖ ହେଲେହେଁ ମୋଟ ପରିବା ଓଜନ ଦଶ କେଜିରୁ କିଛି ବଳି ପଡ଼ିଲା । ତରାଜୁ ଛାଡ଼ିବା ମାତ୍ରେ ନଧିଆ ତାକୁ ଚିଲପରି ଝାମ୍ପି ନେଇ ଯାଇ ଦୋକାନୀକୁ ଫେରାଇ ଦେଲା । ମଦନା ପୁଝାରୀ ଉତ୍ଫୁଲ୍ଲିତ ହୋଇ କୋର୍ଟରୁ ବେକ-ସୁର ଖଲାସ ହୋଇ ଆସି ପ୍ରୀତି ଦେଖାଉଥିବା ଆସାମୀ ପରି ବକ୍ତୃତା ଦେବାକୁ ଲାଗିଲା । ହୁଁଃ ! ଜଣା ପଡ଼ିଗଲାତ ଠିକଣା କଥାଟା । ଖାଇଗଲା ମଦନା ଖାଇଗଲା, ମଦନାକୁ ଏଡ଼ିକି ଶ୍ରେଷ୍ଠ ବିଗୁଡ଼ିଲା । ତାକୁ ଆଉ କିଛି ମିଳିଲା ନାହିଁ ଯେ କଞ୍ଚା ପରିବାରୁ ପୁଳାଏ ଖାଇ ଗଲା । ଓଲଟି ପରିବା କିଣିବା ବେଳେ ଦୋକାନୀସାଙ୍ଗରେ ଝଗଡ଼ା ଯେଉଁ ଲାଭ ଆଣିଥିଲା ତାକୁ ତା'ରି ଭିତରେ ପକେଇଛି । ମୋ ନିଜ ଘର ଭଳି ବିଗୁଡ଼ିବାର ଏହି ଫଳ । ଭଲ ହେଲା ବାବୁ ପରଖି ନେଲେ, ଭଲ କି ହେଲା ଜଣି ଗଲା । ମୁଁ ବା ମନ କଷ୍ଟ କରିବି କାହିଁକି ? ନିଜେ ଭଲ ଥିଲେ ହଜାରେ କିଏ କିଅଣ କହି ଗଲେ ମୋର କି ଯାଏଆସେ । ଉପରେ ବସି ଯିଏ ଦିନରାତି କରୁଛି ତାର କ'ଣ ଆଖି

ନାହିଁ । ଘୁଡ଼ ବାବୁ ସେ ଗୁହଖିଆ କାମ ଆମ ଦେଇ ହବନ'' । ଏତକ କହି ସେ ପରିବା ଝୋଟେଇକୁ ଭିତରକୁ ନେଇଗଲା ଓ ତହିଁରୁ ପରିବା କାଢ଼ି କଟା କଟି କରିବା ପାଇଁ ନଧିଆ ଯିମା କରିଦେଲା ।

ମଦନାର ସାଧୁତାକୁ ସନ୍ଦେହ କରାଯାଇ ଥିବାରୁ ଗିଧନ୍ ସାହୁ ବଡ଼ ଦୁଃଖ ଓ ସଙ୍କୋଚ ଅନୁଭବ କଲେ । ଗେଉ଼ ଦାସେ ଯୋଗକୁ ସେତେବେଳେ ନ ଥିଲେ । ଥିଲେ ହୁଏତ ତାଙ୍କ ସାଙ୍ଗରେ ବଡ଼େ ଝଟାପଟା ଲାଗି ଯାଇ ଥାଆନ୍ତା । ତାଉଣା କମି ଆସିବା ପରେ ତାଙ୍କ ସଙ୍ଗେ ଦେଖା ହେଲା । ମୁହଁ ଫଣ ଫଣ କରି ସେ ତାଙ୍କୁ କହିଲେ—'ଭୁଚ୍ଛାଟାରେ ନିର୍ଦ୍ଦୋଷ ଲୋକଟା ବିରୁଦ୍ଧରେ ମିଛ ଅଭିଯୋଗ କର କାହିଁକି ? ମୁଁ ନିଜେ ପରିବା ତଉଲ ଦେଖିଲି, ଓଲଟି ବେଶୀ ହେଲା' ।

ବିଦ୍ରୂପ କରି ଗେଉ଼ ଦାସେ କହିଲେ ପରିବାତ ତଉଲ ପକେଇଲ ବଟକରାକୁ ତଉଲ ପକାଇଲ ନାହିଁ କାହିଁକି ? ତମମାନଙ୍କୁ ସତରପଟ ଚିତା କାଟିବା ଏକ ମାମୁଲି କାମ । ଆଚ୍ଛା ମୁଁ କାଲି ନିଜେ ପରିବା କିଣିବି । ଆଜି ଝୋଟେଇରେ ପରିବା କେତେ ହୋଇଥିଲା ଆଉ କାଲି କେତେ ହେବ ଦେଖିବା ।

ସତର୍କ ଘଣ୍ଟି ସାଙ୍ଗେ ସାଙ୍ଗେ ଦୋକାନୀ କାନରେ ପଡ଼ିଲା । ନଧିଆକୁ ଚିନ୍ତିତ ହୋଇ ପଡ଼ିବାର ଦେଖି ଦୋକାନୀ ମୁରୁକି ହସା ଦେଇ କହିଲା ଏଇ ଘୁର କଥାକୁ ଏତେ ଚିନ୍ତା କଣଁ । ଓଜନ ମାପ ବିଭାଗର କେତେ ହାକିମଙ୍କୁ ଭୁଆଁ ବୁଲେଇ ଦେଇଛୁ ଆଉ ଏ 'କାଲ୍‌କା ଲଂଡ଼ା ଶୀର୍ ମେ ଜଟା' । ମୋତେ ବଳେଇ ଯିବନା ।

ନଧିଆ ବାଧାଦେଇ କହିଲା—ଆରେ କଥାଟାକୁ ଏଡ଼େ ସହଜ ବୋଲି ଭାବ ନାହିଁ । ସେ ବାବୁ ନିଜେ ଆସିବେ । ସେଇ ଝୋଟେଇଟା ଅଣେଇବେ । ଭୂତ ବାଧ ହୋଇ ଠିକ୍ ବଟକରାରେ ମାପିବୁ । କାରଣ ସେ ବଟକରାକୁ ହୁଏତ ପରଖିବେ । ଠିକ୍ ବଟକରାରେ ପରିବା ତଉଲ ହେଲେ ଝୋଟେଇଟା ପୁରା ହୋଇଯିବ । ଆମେ ସମସ୍ତେ ଧରା ପଡ଼ିଯିବା ।

ଓ ଏଇଥି ପାଇଁ ଘାବରେଇ ଯାଉଛୁ । ଆରେ ଶକୁନର ପଣାକାଠି ପରି ମୋରିବି କାଣିଦଣ୍ଡୀ ଅଛି । ସେଥିରେ ମାପିଲେ ୭୫୦ ଗ୍ରାମ ଜିନିଷ ବି କିଲେ ବୋଲି ଦେଖେଇ ହୋଇ ପାରିବ । କାଣି ଦଣ୍ଡୀର ମହିମା ଓଜନ-ମାପର ବଡ଼ ସାହାବଙ୍କୁ ବି ଆଗୋଚର । ତମ ବାବୁ କିବା ଛାର । ଆସନ୍ତୁ ସେ । ଲୁଚି ଥିବୁ ଦେଖିବୁ କେମିତି ଚଟା କଟେଇ ସୁନାପୁଅ ପରି ବସାକୁ ଗ୍ଲଲିଯିବେ ।”

ନଧିଆ ଅବାକ ହୋଇ ଦୋକାନୀ ମୁହଁକୁ ଗ୍ଲହିଁରହି ଭାବୁଥାଏ, କେଡ଼େ ପାରିଲି ଲୋକଟାଏ ! କଅଣ ନ ଆସେ ତାକୁ ! ବୁଦ୍ଧିରେ ସାହାବ-ମାନଙ୍କୁ ଟପିଯିବ । ମୁଣ୍ଡରେ ଅମ୍ପବୁଦ୍ଧି ସାଇତି ରଖିଛି । ସେ ନିଶ୍ଚୟ ସେମାନଙ୍କୁ ଘଣ୍ଟଘୋଡ଼େଇ ରଖି ପାରିବ । ଗେଡ଼ବାବୁ ଚିପିଛୁଇଁ ପାରିବେନି । ଆଜ ଦକ ଦକ ହେବାର କାରଣ ନାହିଁ । ଆସନ୍ତା କାଲିର ମାଡ଼ ଆସୁଥିବା ସଇତାନଟା ଦୋକାନୀର ମନ୍ତରେ ଚେଁ ଚେଁ, ଛାଟିପିଟି ହୋଇ କୁଆଡ଼େ ପଳେଇବ ।

+ +

ଲଗୁଆ ଦୋକାନୀ ପାଖରେ ନଧିଆକୁ ଟୋକେଇ ସହ ଠିଆ କରାଇଦେଇ ଗେଡ଼ ଦାସେ ଆଖପାଖ ଦୋକାନୀ ମାନଙ୍କ ପାଖରୁ ଦରଦାମ ବୁଝିବାକୁ ଗଲେ । ଲଗୁଆ ଦୋକାନୀଠାରୁ ସମସ୍ତଙ୍କ ଦର ବେଶୀ ହେଲି । ଗୋଟାଏ ଦୋକାନୀକୁ ସେ କହିଲେ ସେ ଦୋକାନୀତ ଏତେ କମରେ ଦେଉଛି । ତୁମେ ଏତେ ବେଶୀ ଦର କହୁଛ କାହିଁକି ? ଲଗୁଆ ଦୋକାନୀ ଉପରେ ଉଣା ଅଧିକେ ସମସ୍ତଙ୍କର ଅକସ ଥିଲି । ସେ ଦୋକାନୀଟି ଗମ୍ଭୀର ହୋଇ ଥିର ଥିର କହିଲି କାହିଁକି କମଦରରେ ଦେଉଛି ତା ବଟକରା ଆଉ କାଣିଦଣ୍ଡି ଦେଖିଲେ ବୁଝିବ । ଏଣେ ହି ପଇସା କମ ଦେଖାଇ ଓଜନ ବାଟେ ହି ଅଣା ମାରି ନଉଛି । ଆମକୁ ସେ ଧରମଛଡ଼ା କାମକରି ଆସିବନି । ଧରମ ଦଣ୍ଡି ! ଏଇକ୍ଷଣି ଉତ୍ପାତିଆ ବଅସ ମାରି ଗ୍ଲଲି ଯାଉଛି । ପଡ଼ିଲିବେଳେ କୋଉ ନର୍କରେ ଯାଇ ପଡ଼ିବ ତାର ଠିକଣା ନାହିଁ । ଯାଅ ବାବୁ, ତେମେ ଆପଣ ପଢ଼ିବା ଲୋକ । ଏସବୁ ଲନ୍ଦଫନ୍ଦ ଜାଣିବ କୁଆଡ଼ୁ । ଏଠି ହିପଇସାକୁ ଡରୁଛ, ସେଠି ହିଅଣା ଦେଇଯିବ ।

ଆଶ୍ଚର୍ଯ୍ୟ ହୋଇ ଗେଣ୍ଡ଼ ଦାସେ ପଚାରିଲେ ଆହେ କାଣି ଦଣ୍ଡି ଟା ପୁଣି କେମନ୍ତ ଜିନିଷ ?

ଦୋକାନୀ ଅନୁଚ୍ଚ ସ୍ୱରରେ ଭଲକରି ବୁଝେଇ କହିଲା ଦଣ୍ଡିଟା ବାବୁ ଠିକ । ତାର ହିକଡ଼ ଆଗରେ ଥିବା କଣା ମଝିରେ ଥିବା କଣ୍ଡା ଏକାବେଳେକେ ନବାଡ଼ିଆ : ତାକୁ ଠିକେହେଲେ ଏ ପାଖ ସେପାଖ କରି ହେବନି । ତେଣୁ ଏହାର ମାପରେ କିଛି ଗୋଳମାଳ କରି ହେବନି । କାଠବାଡ଼ିର ଦଣ୍ଡିରେ କାଣିଦଣ୍ଡି ତିଆରି ହୁଏ । ଏହା ଆଗରେ ଦୁଇ ଦୁଇଟା କଣା । ପଲାର ଡୋର ଦୁଇଟା କଣାରେ ପଶି ଗଣ୍ଠି ପଡ଼ିଥାଏ । ଭିତର ଓ ବାହାର ଆଡ଼କୁ ଟାଣିଦେଲେ ପଲାର ଡୋର ବାହାରକୁ ବା ଭିତର ଆଡ଼କୁ ହୋଇଯାଏ । ଫଳରେ ସାଗ ଓଜନଟା ଇଚ୍ଛା ଅନୁସାରେ କମ ବା ବେଶୀ ହୋଇଯାଏ । ଧରମଛଡ଼ା ଗୁଡ଼ାକ ମାଲ ଖରିଦ କଲାବେଳେ ବେଶୀ ଓଜନର ଜିନିଷକୁ କମ କରି ନେଇ ଯାଆନ୍ତି । ଆଉ ବିକିଲାବେଳେ କମ ଓଜନର ଜିନିଷକୁ ବେଶୀ ଦେଖାଇ ବିକ୍ରି କରନ୍ତି । ପାପୀଗୁଡ଼ାକ ହିଆଡ଼ୁ ପଟି ମାରନ୍ତି ।

ଆସନ୍ତା କାଲିଠାରୁ ତା'ରିଠାରୁ ପରିବା କଣାହେବ ବୋଲି ପ୍ରତିଶ୍ରୁତି ଦେଇ ଗେଣ୍ଡ଼ ଦାସେ ପୂର୍ବର ଲଗୁଆ ଦୋକାନୀ ପାଖକୁ ଗଲେ ଓ ପରିବା ତଉଲି ଝୋଲେଇରେ ପକାଇବାକୁ କହିଲେ । ଦୋକାନୀଟି ନିଜ ସାଧୁତାର ପ୍ରାଚୁର୍ଯ୍ୟ ଦେଖାଇବାକୁ ଯାଇ ବଟକରିଟା ଗେଣ୍ଡ଼ ଦାସଙ୍କ ହାତକୁ ବଢ଼ାଇଦେଇ କହିଲା—"ବାବୁ ବଟକରି ଦେଖିନିଅ । ପଛକେ ପୁଣି ଆମକୁ ଯେମିତି ଦୋଷ ନ ଦିଅ । ଠିକ ଓଜନର ବଟକରିରେ ମାପିବା, ଦଣ୍ଡି ମାରିବା ଆଦି ଗୁହଖିଆ କାମ ଆମ ଦେଇ ହବନି ।"

"ଆରେ ମୁଁ ତୁମକୁ ପରିବା ମାଗିଲି । ମୁଁ ତ ତମକୁ ଏସବୁ କଥା କିଛି କହିନି । ତମେ ଉପରେ ପଡ଼ି ଏ ଗୁଡ଼ାକ କହୁଛ କାହିଁକି, କଥା କିଅଣ ?"

ଦୋକାନୀଟି ବିଚରା ହଡ଼ବଡେଇଯାଇ କହିଲା "ନାହିଁ ଆଜ୍ଞା । ଆପଣ ସିନା କହୁ ନାହାନ୍ତି, ଆଉ ଆଉ ଗରାଖମାନେ ନିତି ଏମିତିଆ କଥା କହୁଛନ୍ତି ।"

"କଅଣ ଗୁଛାଟାରେ କହୁଛନ୍ତି । କଅଣ ଗୋଟାଏ ଦେଖିଛନ୍ତି ବୋଲି ସିନା କହୁଛନ୍ତି । ନିଆଁ ନଥିଲେ ଧୂଆଁ ବାହାରିବ କୁଆଡ଼ୁ ?"

ବିଶ୍ୱାସ ନଥ ଚୁପ୍ ଚୁପ୍ କହିଲାପରି ଦୋକାନୀଟି କହିଲା— "ହଁ ବାବୁ ଆପଣ ଠିକ୍ କହୁଛନ୍ତି । ଏଠି କେତେଟା ବଦମାସ ଗୁହଖିଆ ଏମିତିଆ କାମ କରୁଛନ୍ତି । ମଣିଷର ହୋ ତ । ଭଲଭେଲ କିଏ ଦେଖୁଛି । ଗୋଟାଏ କଥାରେ ସବୁ ଶେଷ । ଶଳେ ସମସ୍ତେ ଚୋର । ବଡ଼ ଲୋକଙ୍କୁ ଉତ୍ତର ନାହିଁ, କି ସ୍ୱର୍ଗକୁ ନଶୁଣି ନାହିଁ । ହଁ ବାବୁ କଅଣ ଲାଗୁଆ ପରିବା ଦେବି ?"

ସମ୍ମତି ଜଣାଇ ଦୋକାନୀ ଦଣ୍ଡିଟିକୁ ତାଙ୍କ ଆଗରେ ଥୋଇଦେଲା । ଉଦ୍ଦେଶ୍ୟ, ଦଣ୍ଡିରେ ପାସଙ୍ଗ ନାହିଁ ବୋଲି ବାବୁ ଜାଣି ଯାଆନ୍ତୁ । ଦଣ୍ଡିରେ ବଟକରା ପଡ଼ିଲା । ପରିବା ପଡ଼ିବା ପୂର୍ବରୁ ଦୋକାନୀଟା ନିଜ ପିଠିରେ ବୁଲାପଡ଼ ଚାପୁଡ଼ାଟାଏ ମାରି ପାଟି କଲା । "ଓହୋ ! କିଏ ଟ ଏ କାମୁଡ଼ ଦେଲାମ !"

ଗେଡ଼ ଦାସେ କିନ୍ତୁ ମୂଷାକୁ ବିରାଡ଼ି ଚାହିଁଲା ପରି ଦଣ୍ଡିଟାକୁ ଚାହିଁ ରହିଥାଆନ୍ତି । ଦୋକାନୀର ପିଠି ଚାପୁଡ଼ା ପରେ ସେ ଲକ୍ଷ୍ୟ କଲେ ଡାହାଣ ପଲାର ଡୋରି ଆଗ ଯେଉଁ ଥାନରେ ଥିଲା ସେଠୁଁ ଟିକିଏ ଆଗେଇ ଗଲା ପରି ଜଣାଗଲା । ଦଣ୍ଡିଟା, ପୂର୍ବରୁ ସନ୍ଧାନ ପାଇ ଥିବା ଦଉଡ଼ ପରି ଠିକ୍ ଦେଖାଗଲା । ମୂଷା ଉପରେ ବିରାଡ଼ି ଝାମ୍ପିଲା ପରି ଗେଡ଼ ଦାସେ ଦୋକାନୀ ଉପରକୁ ଝାମ୍ପି ପଡ଼ି ତା ହାତରୁ ଦଣ୍ଡିଟା ଛଡ଼େଇବାକୁ ଚେଷ୍ଟା କଲେ ଓ ରଡ଼ି ଛାଡ଼ିଲେ 'ପୁଲିସ ପୁଲିସ ପୁଲିସ' । ଗହଳି ଚହଳି ଲୋକ ସେଠି ଜମି ଗଲେ । ସେତେବେଳକୁ ତାଙ୍କ ଥୋମଣିରେ ଦୁଇ ତିନିଟା ଜାଗା ଫୁଲି ଗଲାଣି । ସେ କିନ୍ତୁ ଜୋକ ପରି ଲାଖି ଯାଇ ରଡ଼ି ଛାଡ଼ୁ ଥାଆନ୍ତି ପୁଲିସ ପୁଲିସ ପୁଲିସ ।

ଭକ୍ତର ଡାକ ଶୁଣି ଭଗବାନ ଆବିର୍ଭାବ ହେଲା ପରି ପୁଲିସ ଆସି ହାଜର ହୋଇଗଲେ ଓ ଦୁହିଁଙ୍କୁ ଅଲଗା ଅଲଗା କରି ଦଣ୍ଡିଟାକୁ

ନିଜ ହାତରେ ରଖିଲେ । ଗେଣ୍ଡୁ ଦାସେ ଫେସିଦ ହୋଇ କହିଲେ "ଦେଖ ଏ ଦୋକାନୀ ଏଇ କାଣି ଦଣ୍ଡିରେ ମାପି ଆମକୁ ବରାବର ଠକିବାରେ ଲଗିଛି ।"

ପୁରୁଣା ଦାଗୀକୁ ଚଟାପଟ ପୁଲିସ କାଣି ଦଣ୍ଡିକୁ ଛଡ଼ାଇ ପକେଇଲେ । କଥାଟା ଏତେ ଚଞ୍ଚଳ ଘଟିଗଲା ଯେ ଦୋକାନୀ ପଚାରିଲେ କିଛି ଠଉରେଇ ପାରିଲା ନାହିଁ । ଦଣ୍ଡିଧରା ବୁଦ୍ଧିଟା ଯେ ଗେଣ୍ଡୁ ବାବୁର ତାହା ତାର ମୋଟେ ବିଶ୍ୱାସ ହେଲା ନାହିଁ । ତା ପାଖକୁ ଆସିବା ପୂର୍ବରୁ ଯେଉଁ ଦୋକାନୀ ସଙ୍ଗେ କଥାବାର୍ତ୍ତା ହେଉଥିଲେ ସେଇ ଶଳା ହାରାମୀ ସବୁ କଥା ବତେଇ ଦେଇଛି ବୋଲି ତାର ଦୃଢ଼ ବିଶ୍ୱାସ ହୋଇଗଲା । ପୁଲିସ ଦଣ୍ଡି ସହ ତାକୁ ଥାନାକୁ ନିମନ୍ତ୍ରଣ କରିବାରୁ ସେ ପୂର୍ବ ଦୋକାନୀ ପାଖରେ ମଧ୍ୟ କାଣି ଦଣ୍ଡି ଓ କମ ଓଜନର ବଟକରା ଅଛି ବୋଲି କହି ଦେଲା । ସତକୁ ସତ ତା ଦୋକାନରୁ ମଧ୍ୟ ସେମିତିଆ ଦଣ୍ଡି ବଟକରା ବାହାରିଲା । ବୁଢ଼ା ଗଲା ବେଳେ ଯେମିତି ଛଦା ଛନ୍ଦ ହୋଇ ଦଳେ ଲୋକ ମରନ୍ତି, ସେ ଥିନରୁ ଜଣେ ଦି ଜଣ ନୁହନ୍ତି, ସବୁ ପରିବା ଦୋକାନୀ ଧରାଧରି ହୋଇ ପୁଲିସ ସାଙ୍ଗରେ ଥାନାକୁ ଯାତ୍ରା କଲେ ।

ଗୋଳମାଳ ପରେ ଗେଣ୍ଡୁ ଦାସେ ଦେଖିଲେ ନିଧିଆ ଗାଏବ, ଏଣେ ପରିବା ଦୋକାନ ସବୁ ଏକ ରକମ ବନ୍ଦ । ବାଧ୍ୟ ହୋଇ ଖାଲି ଟୋକେଇଟି ଧରି ବସାକୁ ଫେରିଲେ । ସେଠି ଦେଖନ୍ତି ତ ନିଧିଆ ସଙ୍ଗେ ସଙ୍ଗେ ସିନ୍ଧୁଆ ଓ ମଦନା ସମସ୍ତେ ଗାଏବ । କଥାଟା ସେତେବେଳକୁ 'ଠ'ବୁଲି ସାରିଥିଲା । ମେସ୍‌ର ଜଣେ ଦି ଜଣ ସଭ୍ୟ ତାଙ୍କୁ ଏକ ପ୍ରକାର ଦୋଷ ଦେଇ କହିଲେ ଛେନାରୁ ବସି ଟ୍ରେପା ଛଡ଼େଇଲ ଯେ ଏବେ ହବ କଅଣ ? ପରିବାର କଅଣ ଦି'ଗୁର ଅଣା ଖାଉଥିଲେ, ତାଙ୍କୁ ଧରି ବସିଲ ଯେ ଆଜି ରୋଷେଇ ବନ୍ଦ ।

ଅନ୍ୟମାନେ କିନ୍ତୁ ଗେଣ୍ଡୁ ଦାସଙ୍କ ପାରିଲାପଣକୁ ତାରିଫ କରି ଏ ଅଚଳ ଅବସ୍ଥାର ମୁକାବିଲା କରିବାକୁ ଦୃଢ଼ ସଂକଳ୍ପ ହେଲେ । ଅଧିକାଂଶଙ୍କ ମତରେ ଠିକ୍ ହେଲା ଯେ ଗ୍ରୀଷ୍ମ ଛୁଟି ମାତ୍ର ଦେଢ଼ ମାସ ବାକି । ଏତେ-

ବେଳେ ପୁଝାରୀ ରୁକର ରଖିଲେ ଛୁଟି ଦୁଇମାସ ଭୁଗୁଟାରେ ଦରମା ଗଣିବାକୁ ହେବ । ଏଣୁ ଏ ଦେଢ଼ ମାସଟା ପାଳି କରି ହାତେ ହାତେ ରୋଷେଇ ଶିଖିବା । ଅଇଁଠା ଉଠେଇ ବାସନ ସଫେଇ ସମସ୍ତେ ନିଜେ ନିଜେ ହାତରେ କରି ନେବେ । ଏହାଦ୍ୱାରା ନିଜ ଗୋଡ଼ରେ ଠିଆ ହେବାର ଯୋଗ୍ୟତା ଅର୍ଜନ କରାଯିବ ଓ ଅନ୍ୟାୟ ଧର୍ମଘଟକୁ ଦାବି ଦେବାର ବାଟ ଅନ୍ୟମାନଙ୍କୁ ଦେଖାଇ ଦିଆଯିବ । ଯୁବକ ସୁଲଭ ଉନ୍ମା-ଦନା ଯୋଗୁଁ ପେଜୁଆ ଭାତ ଲୁଣିଆ ଡାଲି, ପୋଡା ଭଜା, ଅସିଝା ଓ ଅଲଣା ତିଅଣ ସମସ୍ତଙ୍କର ଚଳି ଗଲା ସତ କିନ୍ତୁ ରାମୁଲୁ ପାଳିଙ୍କ ମସଲା ବଟା ପାଳି ଦିନ ସମସ୍ତଙ୍କ ଧୈର୍ଯ୍ୟ ଭାଙ୍ଗିଗଲା । ଭୋଜନ ଶାଳାରେ ଆଃ, ଉଃ, ଓଃ, ଆଦି ଶବ୍ଦର ଝଡ଼ ବୋହିଲା । ଆଖି ପାଣି ଓ ନାକ ଶିଂଘାଣି ଖାଇବା ଥାଳିରେ ମଧ୍ୟ ପଡ଼ିଗଲା । ସମସ୍ତେ ରାମୁଲୁକୁ ଲଙ୍କା ମରିଚର ପ୍ରାଦୁର୍ଭାବ ଲାଗି ତିରସ୍କାର କଲେ । ସେ ବିଚରା ନିଜର ନିର୍ଦ୍ଦୋଷପଣିଆ ଦେଖାଇବାକୁ ଯାଇ କହିଲା—ମୁଁ ତ କିଛି ଆଲିରା ପାଇଟି କରିନି । ଆମ ଆଡ଼ ହୋଇଥିଲେ ଦଶ କିଲୋ ପରିବାରେ ସମାନ ଦେଢ଼ କିଲୋ ଲଙ୍କା ମରିଚ ଦେଇଥାନ୍ତୁ । ଏଆଡ଼େ ଲଙ୍କାର ବେଶୀ ଚଳଣି ନାହିଁ ଥିବାରୁ । ତେଣୁ ଖାଲି ବାସନା ହେବା ପାଇଁ ମାତ୍ର ଅଧ କିଲୋ ଲଙ୍କାମରିଚ ଆଉ ୨୫୦ ଯାଏ ଗୋଲ ମରିଚ ହଜମ ହେବା ଲାଗି ବାଟି ଦେଇଥିଲି । ମୋର କି ଦୋଷ ହେଲା ଯେ ।

ସମସ୍ତେ ଘଡ଼ା ଦେଖିବାରେ ଜଣାଗଲା ଯେ ୧୫ ଦିନ ପାଇଁ ଅଣା ଯାଇଥିବା ଲଙ୍କା ଓ ଗୋଲମରିଚ ଏକା ଦିନକେ ଖତମ ହୋଇ ଯାଇଛି ।

ଗେଡ଼ ଦାସଙ୍କ ପୁଝାରୀ କୁଳ ଉପରେ ଭାରି ରାଗ ହେଲା । ତାଙ୍କର ବଦମାସୀ ଯୋଗୁଁ ସିନା ସେମାନେ ଆଜି ଏପରି ହଟହଟା ହେଉଛନ୍ତି । ରାଗିଯାଇ ସେ ସମସ୍ତଙ୍କ ଆଗରେ ପ୍ରତିଜ୍ଞା କଲା ଏ ପୁଝାରୀ କୁଳଠୁଁ ମୁଁ ଏହାର ବଦଲା ନେବି, ନେବି, ନେବି । ମାସେ ଯାଏ ଏ' ସହର ଯେତେ ପୂଝାରୀ ଅଛନ୍ତି ସମସ୍ତଙ୍କୁ ଗୋଲାମ କରି ଖଟେଇବି । ଏତିକି କରି ନ ପାରିଲେ ମୁଁ ଧେଡ଼ ଦାସ ପୁଅ ଗେଡ଼ ଦାସ ନୁହେଁ ।

ପର ଦିନ ଖବର କାଗଜରେ ଏକ ବିଜ୍ଞାପନ ବାହାରିଲା । ଏକ ସୁଦକ୍ଷ ପୂଝାରୀ ଲୋଡ଼ା । ମାଗଣା ବସା, ଜଳଖିଆ, ଭୋଜନ, ଲୁଗାପଟା ଛଡ଼ା ମାସିକ ଦରମା ଦୁଇ ଶହ ଟଙ୍କା । ଉତ୍ତମ କର୍ମ କଲେ ୨୫୦ ଟଙ୍କାକୁ ଦରମା ବଢ଼ାଇ ଦିଆଯିବ । ରୁମ ନମ୍ବର ୪୨୦, ନ୍ୟୁ ହଷ୍ଟେଲ, କଲେଜ ରୋଡ଼ କଟକ—୩ ରେ ପତ୍ରାଳାପ ଓ ଦେଖା ସାକ୍ଷାତ ୩ ଦିନ ମଧ୍ୟରେ କରିବାକୁ ହେବ ।

ଭିଡ଼ ଏତେ ପ୍ରବଳ ହେଲା ଯେ ଅନ୍ୟ ସଭ୍ୟମାନେ ବିରକ୍ତ ହୋଇଗଲେ । ପବ୍ଲିକ ସର୍ଭିସ୍ କମିଶନର ଚେୟାରମ୍ୟାନ ପରି ଗମ୍ଭୀର ହୋଇ ବସି ଗେଡ଼ ଦାସେ ସବୁ ପ୍ରାର୍ଥୀଙ୍କୁ ଏକ ପ୍ରକାରରେ ନିର୍ଦ୍ଦେଶ ଦେଲେ—ଦେଖ ତୁମ ଠିକଣାରେ ଗୋଟିଏ ଚିଠି ଯିବ । ସେଥିରେ ଯେଉଁ ତାରିଖ ଲେଖାଥିବ ସେଇ ତାରିଖ ଦିନ ତୁମେ ଆସି ଏଠି ତୁମ ରନ୍ଧଣାର ନମୁନା ଦେଖାଇବ । ତୁମ ରନ୍ଧଣା ଯଦି ସର୍ବଶ୍ରେଷ୍ଠ ବିବେଚିତ ହେବ ତେବେ ତୁମ ପାଖକୁ ନିଯୁକ୍ତି ପତ୍ର ପଠାଯିବ ଏବଂ ତୁମେ ୩ଦିନ ଭିତରେ ଆସି କାମରେ ଯୋଗ ଦେବ ।

ଏତ ଅତି ମାମୁଲି ସର୍ତ୍ତ । ଦରମା ଅନ୍ୟାନ୍ୟ ସୁବିଧା ଅତି ଲୋଭନୀୟ । ଅରାଜି ହେବ କିଏ ? ପୂଝାରୀମାନେ ଆପଣାଆପଣା ଘରକୁ ଫେରି ଯାଇ ଡକରା ପତ୍ରକୁ ଚକାଇ ରହିଲେ ।

ଧୂମ ଧଡ଼ାକ ମେସ୍‌ରେ ପୁରା ଗୋଟିଏ ମାସ ବେଶ ଧୂମ ଧଡ଼କାରେ କଟିଗଲା । ନିତି ଜଣେ ଜଣେ ନୂଆ ରାନ୍ଧୁଣିଆ । ବଢ଼ିଆ ରୋଷେଇ, ଅଳ୍ପ ଖର୍ଚ୍ଚରେ ବହୁ ପ୍ରକାର ତରକାରୀ, ଭଜା, ଆମ୍ବିଳ, ରାଇ ଓ ଭରତାରେ ସଭ୍ୟମାନେ ମଜଗୁଲ ହୋଇଗଲେ । ଗେଡ଼ ଦାସେ ଖିଆ ପିଆରେ ଯେତେ ନ ଫୁଲିଲେ ସେତେ ଫୁଲି ଗଲେ ସମସ୍ତଙ୍କ ଅଜସ୍ର ପ୍ରଶଂସାରେ । ଦୁଇମାସ ଛୁଟି ପରେ ଯେତେବେଳେ ସମସ୍ତେ ଗୋଟିଏ ନୂଆ ମଫସଲ ରାନ୍ଧୁଣିଆ ପରସା ଖାଦ୍ୟ ଖାଇଲେ ସେତେବେଳେ ସେମାନଙ୍କର ଦୁଇ ମାସ ତଳର ରନ୍ଧଣା ବେଶୀ ମନେ ପଡ଼ିଲା ।



# ଅଫିମଚଟେର

ଓଭରସିଅର ବିଶୁ ମହାରଣା ମୁଛ ଉପରେ ହାତ ଚଳେଇ ନେଇ କହିଲା,—"ହେ ହେ କଣ୍ଟ୍ରାକ୍ଟର ! ତମର ନାଲି ଆଖିଆ କଥା କି ସାକୁଲିଆ କଥା ମୋ ଦେହରେ ମୋଟେ କାଟୁ କରିବନି । ଯାହା କରୁଛ କର, ମୁଁ କେଉଁଥିରେ ପାଟି ଫିଟେଇ ଯାଉନି, କିନ୍ତୁ ମୁଁ ଯେଉଁ କୋଠା ବୁଝୁଛି ସେଠି ଟିକିଏ ହେଲେ ଗଲତି କରାଇ ଦେବିନାହିଁ । ଏକ ସିମିଠି ତିନି ବାଲି ଯାଗାରେ ତିନି ଚଉଠେ କରାଇ ଦେବିନି କି ପାନ ଖଣ୍ଡିଏ ତୋ ହାତରୁ ଛୁଇଁବି ନାହିଁ । ମୋ ବୁଢ଼ା ବାପା କି ଖୋଦ ଲାଟ ସାହାବ.ଯଦି ମୋତେ ଏମିତିଆ କଥାରେ ପାକଳେଇବେ ତେବେ ବି ମୁଁ ମୁଁହ ବୁଲାଇ ଦେବି ।"

ଜଣେ ଭାଟୁଆ ମିସ୍ତ୍ରୀ ତେଲ ପିମ୍ପା ଖୋଲିଦେଇ ଆରମ୍ଭ କରିଦେଲା—"ଆଜ୍ଞା ଯଇଟି ଲୋକ, ଯଇଟି କଥା କହିବନିତ ଆଉ କଅଣ ବେଯଇଟି କଥା କହିବ । ଆପଣଙ୍କ ପରି ଆଉ ଜଣେ ବିଶୁ ମହାରଣା ପରା କୋଣାର୍କ ଦେଉଳ ଗଢ଼ିଥିଲା । ଆଜି ଯାଏ ବି ଲୋକେ ତା ନାଆଁରେ ବାହାବ୍‌ବା ଗାଉଛନ୍ତି । ସେ ଇଷ୍ଟ୍ରାଇକ ଜିନିଷ ଏ ପର୍ଯ୍ୟନ୍ତ ବି କେହି କରି ପାରୁ ନାହାନ୍ତି । ଦେଉଳଟା ଭାଙ୍ଗି ଗଲାଣି ପଛକେ ତା ଚଅକ୍ ଯାଉନି । କୋଉ କୋଉ ମୁଲକରୁ ଲୋକ ଧାଉଁଛନ୍ତି ଦେଖିବାକୁ । ଏବେବି ଛୁଆଠୁଁ ବୁଢ଼ାଯାଏ ସମସ୍ତେ ତାଙ୍କୁ ମନେ ରଖିଛନ୍ତି । ଆପଣ ହେଲେ ତାରି ସଙ୍ଗାତ । ଆପଣଙ୍କ ଠେଇଁ ସେଇସବୁ ଗୁଣ ଫୁଟିବନିତ' ଆଉ କାହାଠି ଫୁଟିବ । କୋଉଠି ଟିକିଏ ହେଲେ ଗଲତି ଆପଣଙ୍କ ଦିହରେ ତ ଯିବନି । ସୁନା ଯିଏ ସୁନା ପିତଳ ଯିଏ ପିତଳ । ସୁନା ପିତଳ ହବନି କି ପିତଳ ସୁନା ହେବନି ।

ନଶ ଦୁଇପଟ ପୁଣି ସାଉଁଳେଇ୍ ଦେଇ ବଶୁ ବାବୁ ହାଙ୍କିଲେ—"ଠିକ କହୁଛ ! ସମସ୍ତେ କେବଳ ନଜ ପେଟକୁ ହିଁ ଗୃହିଁଲେ । ଦେଶର ପେଟାଟାକୁ କେହ୍ବ ଦେଖିଲେନ । ଏ କଣ୍ଟ୍ରାକ୍‌ଟରମାନେ ଦେଶଟା-ଯାକ ପୋଲମସ୍ତ କର ସାରଲେଣି । ବଦେଶରୁ କୋଟି କୋଟି ଟଙ୍କା ଋଣ ଓ ସାହାଯ୍ୟ ସୂତ୍ରରେ ଆସୁଛି । ହେଲେ ସେ ସବୁ ଏହ୍ବ ପୋଲବାଟେ ଅସାଧୁତା ଦରିଆକୁ ସଉ୍‌ସାଉ୍ ହୋଇ ବୋହ୍ବ ଯାଉଅଛି । କଏ ପୋଲ କରୁଛି କରୁ । ମୁଁ କନ୍ତୁ ପୋଲତ ପୋଲ, କଣାଟିଏ ବ କରଇ ଦେବନ ।"

କଣ୍ଟ୍ରାକ୍‌ଟର ଟି ମୁହଁଟା ବୁଲେଇ ଦେଇ ସେ ଥାନରୁ ଗୃଲଗଲ । ମିସ୍ତ୍ରୀ କନ୍ତୁ ପିମ୍ପାରୁ ତେଲ ଇଉ଼ବାରେ ଲ୍ଗିଲ୍—"ଆଜ୍ଞା ମୋ କରଣି ବହୁତ ବହୁତ ଓଭରସିୟର ଦେଖି ଆସିଛି, ହେଲେ ଆପଣଙ୍କ କାଟରେ ଜଣେ କୋଉଠି ଦେଖିନ । ଯୋଉ କୋଠାରେ ଆପଣଙ୍କ ହାତ ଲ୍ଗିଥିବ ତାକୁ ଆଉ ଝାଡ଼ ବାଡ଼ ନାହିଁ । କାଳକାଳକୁ ସେ ଠିଆ ହୋଇ ହସୁଥିବ । ଆପଣଙ୍କ ମଇଧ ପର ଆପଣ କେତେ କୋଣାରକ ଗଢ଼ି ଦେଇ ଯିବେ, ତା ସାଙ୍ଗରେ ବ ନଜ ନାଆଁକୁ ଅଜାମର କର ଦେଇଯିବେ ।"

ମିସ୍ତ୍ରୀର ତେଲଗୁଡ଼ାକ କନ୍ତୁ ବଶୁବାବୁଙ୍କ ଦେହରେ ଲ୍ଗିଲ୍ ନାହିଁ । ମୁହଁ ପୋଛିଦେଇ ସେ ଠୋ ଠଟାସ୍ କହ୍ବଦେଲେ—"କାହିଁକି ସେ ଅଲଣା କଥାଗୁଡ଼ାକ କହୁଛ । ମୋତେ ତୁମେ କେବଳ ଠିକ୍ ଠିକ୍ କାମରେ ସନ୍ତୁଷ୍ଟ କରପାରବ, ତୁଚ୍ଛା ଖୋସାମଦିଆ କଥାରେ ନୁହେଁ । ମୁଁ ରୋକ୍ ଠୋକ୍ କାମର ପିଆସି, ଅଲଣା, ଖୋସାମଦିଆ କଥାର ନୁହେଁ ।" ଅସିମ ଧୈର୍ଯ୍ୟ ସାଇତ ରଖିଥିବା ମିସ୍ତ୍ରୀ ସହଜେ ହଟିବାର ପାତ୍ର ନୁହେଁ । ତେଲ ମାଲସିର ବାଗଟା ବଦଳେଇ ଦେଇ ସେ କହ୍ବଲ୍—"ଆଜ୍ଞା ମୋତେ ଯାହା କହ୍ବବେ କୁହନ୍ତୁ, ହେଲେ ମୁଁ ଯାହା ଦେଖୁଛି, ଯାହା ଅଙ୍ଗେ ନଭେଇଛି ତା ଓଲଟେଇ କହ୍ବବ କେମିତ ? ଆପଣ ଯାହାକଛି କହୁଛନ୍ତି ସବୁ ଖାଣ୍ଟି କଥା । ଖାଣ୍ଟି ଲ୍ଲେକ ନହେଲେ କେହ୍ବ ଏମିତିଆ ଖାଣ୍ଟିକଥା କହ୍ବ ପାରବନ । ମୋତେ ବ ବାବୁ ଏମିତିଆ ନାସନା କାମ ଦେଖି ଦେଖି ଚଟାଲ୍ଗି ଗଲ୍ଣି । କାନତରାଟ ବାବୁଙ୍କୁ ଯେତେ ବାଗରେ ତେଡଇଲ୍

ସେ ଶୁଣନ୍ତେ କାହିଁକି ! ମୁଁ କହିଲି—ହେଇ ଦେଖ ବାବୁ ! କାହା ପାଖରେ ଚଳିଲେ ଚଳିବ, କିନ୍ତୁ ନୂଆ ଉଦ୍ରେସର ବାବୁଙ୍କ ପାଖରେ ଏ ସବୁ ମୋଟେ ଚଳିବନି । ସେ ଖାଣ୍ଟି ସୁନା । ଧାନେ ବି ଖାଇ ସେ ସମ୍ଭାଳି ପାରିବେ ନାହିଁ । କାହିଁକି ନିକିଏ ସେ ଶୁଣି ଯାଆନ୍ତେ । ଚେତେଇ ଦେଲି —ବାବୁ ! ଖବରଦାର, ବାଘ ହାବୁଡ଼େ ଥରେ ପଡ଼ିଲେ ଚେଲିବ । ସେ ବାଘ—ଏମିତିଆ ସେମିତିଆ ବାଘ ନୁହେଁ, ପୁରା ମହାବଳ ବାଘ, ହାବୁଡେ ପଡ଼ିଲେ ନ ଛାଡ଼େ । ବାବୁ ! ସେ କଅଣ କହିଲେ ଶୁଣିବ ?''—

"କଅଣ କହିଲେ ?"

"କଅଣ ଆଉ କହିବ ବାବୁ, ଶୁଣିଲେ ହସିବେ ନା ରାଗିବେ ?''—

"ଆରେ କହିଲେ କଣ ?''—

"କୋଉ କାଟପାଣି ତାଙ୍କ ପାଖରେ ନାହିଁ ?''

"ଆରେ ରଖ ତୋ ପାଣି । କହିଲେ କଅଣ ?''—

"ତାଙ୍କୁ ଏପଟ କହି ଆସେ, ସେପଟ କହି ଆସେ । ମୃଦଙ୍ଗ ଦି ପଟରେ ବଜେଇ ଆସେ''—

"ଆରେ ପଛେ ମୃଦଙ୍ଗ ବଜେଇବୁ, କଥା କଅଣ କହିଲେ, କହିବୁ ତ କହ, ମୁଁ ଏତେ ଫଟେଇ ପାରିବିନି ।''

"ମୋତେ ଚୁପ୍ ଚୁପ୍ କରି କହୁଛନ୍ତି—"ଆରେ ମୁଁ କଅଣ ଜାଣେନି ସେ ଖାଣ୍ଟି ଲୋକ । ଧରା ପଡ଼ିଲେ ମହତ ଲୋକ ହାତରେ ଧରା ପଡ଼ିବ । ଦଣ୍ଡିବା ଶକ୍ତି ଯାର ଥାଇ, ସେ ପୁଣି କ୍ଷମା ଆଚରଇ । ମହତ ଲୋକ ସେ ନିଶ୍ଚୟ କ୍ଷମା ଦେବେ ? କୋଉ କଥା ମଣିଷ ଶୁଣିବ । ଯାହା କହନ୍ତୁ ବାବୁ ସେ ଆପଣଙ୍କ ନାଡ଼ି ଠିକ୍ ଚିପିଛନ୍ତି । ଆପଣଙ୍କ ପରି ମହତ ଲୋକ ଯେ କେବେ କାହାକୁ ଏକାବେଳେକେ ପ୍ରାଣରେ ମାରି ଦେବେନି ତାହା ସେ ଠିକ୍ ଠଉରେଇ ନେଇଛନ୍ତି । ଆପଣଙ୍କ ପାଖରେ ଠିକ୍ ରାସ୍ତାକୁ ଆସିଯିବେ । ଆପଣଙ୍କ ଧାସରେ ସେ ବି ଗୃହ୍ମୁଁ ଗୃହ୍ମୁଁ ସୁନା ହୋଇଯିବେ ।''

ମୁରୁକି ହସା ଦେଇ ବିଶୁ ବାବୁ କହିଲେ—"ବାଃ ବେଶ୍‌ତ ! କ୍ଷମା ଦେବ ବୋଲି ଭାବି ସେ କଅଣ ଏମିତିଆ ଗୁନ୍ଦରା କାମ କରି ଲାଗିଥିଲେ । କ୍ଷମା ଦେଲେ ଥରେ ଦେବ, ଦି'ଥର ଦେବ, ତିନିଥର ଦେବ, ତେଣିକି ?"—

"ତେଣିକି ଆଉ କଅଣ ? ତେଣିକି ଧରମ ଗୁଡ଼ । କଥାରେ ଅଛି ବାର, ବାର ତିନିବାର—ତେଣିକି ଆଉ ନଥାଏ ।"

"ହଁଅ ଗୁଡ଼ ସେ କଥାକୁ । ତମ ବାବୁଙ୍କୁ କହିଦେବ—ଯେତିକି ହୋଇଛି ସେତିକି । ଆଉ ଆଉକୁ ସେ କାମ ଚଳିବ କାହିଁ । ଭଲରେ ଭଲରେ ସେ ସବୁ କାମ ଗୁଡ଼ି ଦିଅନ୍ତୁ । ଦେଶ କଥା, ଜାତି କଥା ଠିକଏ ଭାବନ୍ତୁ । ଏ କାମ ସବୁ କାହାର ହେଉଛି ? ତାଙ୍କର ଘର, ସରକାର ତ ତୁମେ ଆମେ ସମସ୍ତେ ଗଢ଼ିଛୁ । ଆମରି ଘର ତ ଗରମଜବୁତ ହୋଇଯିବ । ନିଜ ଘରକୁ ଭଲ କିଏ ଗରମଜବୁତ କରି ଗଢ଼େ । କି ମିଳିବ ସେ ଗୁହଖିଆ କାମରୁ । ବସ୍ତାଏ ହିବସ୍ତା ସିମେଣ୍ଟ ବ୍ଲେକ୍ କରି ଦେଲେ କଅଣ ସମ୍ପତ୍ତି ଆଉକି ଯିବ ? ଓଲଟି ନିଜ ଗୋଡ଼କୁ ନିଜେ କାଟିବା ହିଁ ସାର ହେବ ।"

'ଆଜ୍ଞା ଗୋଟି ଗୋଟି କରି କହିବ । ଆପଣ କଅଣ ନାକରା କଥା କହୁଛନ୍ତି । ଆପଣଙ୍କ କଥା କଅଣ ସେ ଲଙ୍ଘି ପାରିବେ ? ଆଉ ସେ କାମରେ ସେ ହାତ ନ ଦିଅନ୍ତୁ । ଆଉ କାହାର ଚେତାଉଣି ହୋଇଛି କି ?'

ବହୁତ ବହୁତ ଦେଶାତ୍ମବୋଧ ଉଦ୍ଦୀପକ ବାକ୍ୟମାନ ବଖାଣି ବିଶୁ ବାବୁ ସେ ସ୍ଥାନ ପରିତ୍ୟାଗ କରିବା ମାତ୍ରେ, କାନିତରାଠ ବାବୁ ମିସ୍ତ୍ରୀ ପାଖରେ ଆସି ପହଞ୍ଚିଲେ । ଯୁଗଳି ତୃପ୍ତିସୂଚକ ଆଖି ଏକଯୁଠ ହୋଇଗଲା । ମିସ୍ତ୍ରୀ ପଚାରିଲା—'ବାବୁ ! କେଉଁଠି ଖସେଇଲ ?'

'ଆରେ ତୁ ମୋ ପାଖରେ ଥିଲେ ଛ ଗଣ୍ଡା ଓଭର ସିଅରଙ୍କ କଚ୍ଛା କାଟି ନେଇ ଯିବ, କେହି ଟେର ପାଇବେନି । ଯେତିକି ସମୟ ତୁ ତାଙ୍କୁ

କଥାରେ ମଜଗୁଲ କରି ରଖିଲୁ ସେତିକ ସମୟ ଭିତରେ ୪ ବସ୍ତା ସିମେଣ୍ଟ ୫ ହନ୍ଦର ଛଡ଼ ଗାଏବ ହୋଇଗଲା । ଠୋକା ଓଭର ସିଅର ଚଙ୍ଗ୍ ଚଙ୍ଗ୍ ହେବା ସୁଦ୍ଧା । ପାଶ୍ କରି ସିଧା ସରପଟ୍ଟ କାମ ଉପରକୁ ଚାଲି ଆସିଛୁ । ଦୁନିଆ ଭିତରକୁ ପଶିନି । ସେଇଥି ଲାଗି କଥା କଥାକେ ଦେଶ, ଜାତି, ନୀତି ଦଶପଦ ହାଙ୍କି ଦେଉଛୁ । ଟିକିଏ ମନ୍ଦୁରିପାଣି ଛୁଆଁ ହୋଇ ଯାଉ ତା କରାମତି ଦେଖିବା । ଠୋକାଠାକଲିଆ, ମନ୍ଦୁରିପାଣିରୁ ଟିକିଏ ବେଶି ଦରକାର ! କେତେ କେତେ ବଡ଼ ରଥୀ ଏଥିରେ ମାଙ୍କଡ଼ଚିତ୍ ମାରିଛନ୍ତି । ସୁର ଏ ପେଡିଲ୍ ସୈନ୍ୟକୁ ପଗ୍ଡରେ କିଏ ।'

'ମୋତେ ଆଉ ବୁଝିବାକୁ ଅଛିନା ! ମୋ ହାତରେ ବାଳ ଯେତେ ମୁଁ ସେତିକ ଉଗ୍ରେସର ଭୋଗ କଲିଣି । ଯୋଉମାନେ ପଢ଼ିଲେ ବେଶି ନାକ ଟେକନ୍ତି, ସେଇମାନେ ଶେଷରେ ସବ୍‌ଗିଳା ପାଲଟନ୍ତି । ଟିକିଏ ହୁସିଆରରେ ସେମାନଙ୍କୁ ବାଟ କଢ଼େଇଲେ ହେଲା ।'

'ଏ ଠୋକା ଓଭର ସିଅରର ଭାର ତୋ ଉପରେ ରହିଲା । ତୁ ତା ହାତଧରି ବାଟ କଢ଼େଇ ନେଇ ଯା । ସେ ଯଦି ଆମ ଖୋଳେଇରୁ ବାହାରି ଯାଏ ତେବେ ଆମ କଣ୍ଟ୍ରାକ୍ଟର କୁଳକୁ ଲାଜ । ତୋ ପଛକୁତ ମୁଁ ରହିଛି । ତୁ ଲାଗିଯା'—

×                ×

ବିଶୁ ବାବୁଙ୍କ ହାତରେ ଗୁହା ଗିଳାସଟା ଧରାଇ ଦେଇ ମିସ୍ତ୍ରୀ ବଲବଲେଇଲା—''ଶଳା କ ଛତରା କଦର୍ଯ୍ୟ ଲୋକଗୁଡ଼ାକ ସଜ ଘା'ରେ ପୋକ ପକେଇଦେବେ । ସୁନା କାନ୍ଥରେ ଗୋବର ବୋଳିବେ । ଶଳା ହେଉଁାଖିଆଗୁଡ଼ାଙ୍କର କେଡ଼େ ବଡ଼ପ । କାହା ନାଆଁରେ କଅଣ କହୁଛନ୍ତି''—

"କଅଣ କିଏ ଲଗାଇଲାରେ ?"

"ବାବୁ ! ଆପଣଙ୍କର ଆଉ ଡେରି କରିବା ଉଚିତ ନୁହେଁ ହାତକୁ ଦି'ହାତ ନ ହୋଇଯିବାରୁ ସିନା ଯାବତି ଅସନା କଥାଗୁଡ଼ାକ ଆପଣଙ୍କ ନାଆଁରେ ଲଗେଇ ଯୁଟେଇ କହୁଛନ୍ତି ।"

"ଆରେ କଅଣ କଏ କହିଲା ନକହିଲା ଆଉ ସାଉ ଗୁଡ଼ାଏ ବକୁଛୁ କଅଣ । ମୁଁ ହାତକୁ ହ'ହାତ ନହେଲେ କାହାର କଅଣ ଗଲା ?"

"ଆଜ୍ଞା ଦୁନଆରେ ସମସ୍ତଙ୍କୁ ବିଶ୍ୱାସ କରିବ, ଏ ଦୁଇ ଗୋଡ଼ିଆଙ୍କୁ ଟିକିଏ ହେଲେ ବିଶ୍ୱାସ କରିବ ନାହିଁ । ଶଳେ ସୀତାଠାକୁରାଣୀଙ୍କ ନାଆଁରେ ଅପବାଦ ଦେଇ ଦେଲେଟି ! ଶଳେ ଆପଣଙ୍କୁ ଛାଡ଼ିବେ ?"—

"କାହିଁକି, ମୋର କଅଣ ଦେଖିଲୁ କି ?"

"ଆପଣଙ୍କର ଶିକ୍ଷା ଦେଖି ତେଉଁଛନ୍ତି ଅଲପେଇସେ"—

"କି ଶିକ୍ଷା ? କଥାଟା କହନ୍ତୁ, ଆଉ ସାଉ ଗୁଡ଼ାଏ ବକୁଛୁ"—

"ଆଜ୍ଞା । ଆପଣଙ୍କ ଭଳିଆ ଲୋକକୁ କୋଉ ବଡ଼ ହାକିମଟା ଭଲ ଭଲ ନ ପାଇବ, ପାଖକୁ ନ ଡକାଇବ ? ଆପଣ କାମରେ ହାକିମ-ମାନଙ୍କ ଘରକୁ ଯା-ଆସ କରୁଛନ୍ତି—କିନ୍ତୁ ହେଡ଼ାଖିଆଗୁଡ଼ାକ ସେମାନଙ୍କ ସଙ୍ଗେ ଆପଣଙ୍କର ଶଶୁର ଜୋଇଁ ସମ୍ପର୍କ ହେବାକୁ ଯାଉଛି କହି ନାନା ଅକଥା ଉଠେଇବାରେ ଲାଗିଛନ୍ତି । ଗୁହା ଦୋକାନରେ ଦଳେ ନିକମା ବସି ଏଇ ଚର୍ଚ୍ଚା ଚଳେଇଛନ୍ତି । କାନରେ ହାତ ଦେଇ ପଳେଇ ଆସିଲି ।"

"କାହା ମୁହଁରେ ମୁଁ ବାଡ଼ ବନ୍ଧା ଦେବି, ମୋର କିଛି ଗଲତି ଥିଲେ ସିନା ମୋ ଉପରେ ପଡ଼ିବ"—

"ସୀତା ଠାକୁରାଣୀଙ୍କ କଅଣ ଗଲ୍‌ତି ଥିଲା ? ସେ କାହିଁକି ବଣକୁ ଗଲେ ? ଏ ସବୁ କଥା ହାକିମମାନଙ୍କ କାନରେ ପଡ଼ିଲେ ସେମାନେ ଆପଣଙ୍କୁ ଟିକିଏ ଦୁସରା ଆଖିରେ ଦେଖିବେ ନି ? ଆପଣ ହଜାରେ ଭଲ ହେଲେ ବି ସେମାନେ ନିଶ୍ଚୟ ଟିକିଏ ହେଲେ ସନ୍ଦେହ କରିବେ ।"

"ଏ କଥାକୁ ମୋର ଆଉ କି ଗୁରା ! ଯାହା ହେଉଛି ହେଉ"—

"କାହିଁକି ! ଆପଣ ବି ହାତ ହୋଇ ପଡ଼ନ୍ତୁ"—

"ହାତଗୁଡ଼ାକ କୋଉଠି କଅଣ ପଡ଼ୁଛୁ ଯେ ମୁଁ ଗୋଟେଇ ଆଣିବି"—

"ହଁ କହିଲେ, କାଲି ସକାଳୁ ଆପଣଙ୍କ ଦୁଆରେ ଧାଡ଼ ବାନ୍ଧିବେ ।"

+ +

କଣ୍ଟ୍ରାକ୍ଟର ଓ ମିସ୍ତ୍ରୀର ପ୍ରବଳ ମଧ୍ୟସ୍ଥି ପଣିଆ ହେତୁ ବଶୁ ବାବୁଙ୍କୁ ଯେ ଏକ ଖାନଦାନ ଘରର ଶଶୁର ମିଳିଲା ତା ନୁହେଁ, କଣ୍ଟ୍ରାକ୍ଟରଙ୍କ ଝିଙ୍କାଝିଙ୍କି ଫଳରେ, ଶଶୁରଙ୍କର ଗୋଟିଏ ପୁରୁଣା ମଟର ଗାଡ଼ ଓ ଗୋଟିଏ ରେଡ଼ିଓ ମଧ୍ୟ ବଶୁବାବୁଙ୍କ ହାତରେ ଗୁଞ୍ଜି ହୋଇଗଲା । ପହିଲେ ବଶୁବାବୁ ଏସବୁ ନେବାକୁ କୁନ୍ଥୁ କୁନ୍ଥୁ ହେଉ ଥିଲେ । ମିସ୍ତ୍ରୀ କାନ୍ଧୁ ଲାଗି ପଡ଼ କାନରେ ମନ୍ତ୍ର ଫୁଙ୍କିଲା—'ଆଜ୍ଞା ଯାଚିଲାଧନ ଛାଡ଼ିବା ଉଚିତ ନୁହେଁ । ଲକ୍ଷ୍ମୀ ଘୁଏଁ ଘୁଏଁ ବୁଲି କଣା କରି ପଶୁଛନ୍ତି । ତାଙ୍କୁ ଅଟକେଇବା ଠିକ୍ ହେବନି । ଭାଗ୍ୟରେ ଥିଲେ ଏମିତି ମିଳେ । ଭାଗ୍ୟ ଦୋରେହା ହେବା ଠିକ୍ ନୁହେଁ । ଯାହା ବିନା ଚେଷ୍ଟାରେ ମିଳୁଛି ତାକୁ ଫୋପାଡ଼ନି"—

ବଶୁବାବୁ ଏକାବେଳେକେ କାଉଁଦା ହୋଇଗଲେ । ଲକ୍ଷ୍ମୀ ତାଙ୍କ ଉପରେ ଚଢ଼ିଲେ କି ଅଲକ୍ଷ୍ମୀ ଚଢ଼ିଲେ ତାହା ସେ ଜାଣି ପାରିଲେ ନାହିଁ । ଅସ୍ତ୍ରୋପଚାର ବେଳେ ସମ୍ମୋହକ ବ୍ୟବହାର ହେଲେ ରୋଗୀ ଯେପରି ପ୍ରଥମେ ଉତ୍ତେଜିତ ଓ ପରେ ଅବସାଦଗ୍ରସ୍ତ ହୋଇ ଧୀରେ ଧୀରେ ନିଷ୍ଟଳ ହୋଇଯାଏ, ବଶୁବାବୁ ଠିକ ସେହିପରି, ଗୋଟାଏ କିଏ ତାଙ୍କ ଭିତରେ ଛଟପଟ ହୋଇ ନିଷ୍ଟଳ ହୋଇ ଯିବାର ଅନୁଭବ କଲେ ।

+ +

ବର୍ଷଟିଏ ପୁରି ନ ହେଉଣୁ ବଶୁବାବୁ ଭଲକରି ଜାଣି ପାରିଲେ ଯେ ପୁରୁଣା ମଟରଗାଡ଼ ରୋଗିଣୀ ସ୍ତ୍ରୀ ସଙ୍ଗେ ସମାନ । ଛାଡ଼ ହବନି କି ରଖି ହବନି । ମଟର ମିସ୍ତ୍ରୀ ବା ଡାକ୍ତରଙ୍କୁ ସର୍ବସ୍ୱ ଦେବା ହିଁ ସାର ହେବ ।

"ମଝରେ ଗାଡ଼ଟାଏ ଦେଲ ଅଥଚ ଜ୍ୱାଇଁଟା ରଖି ପାରିଲନ ।" କାଳେ ଶଶୁରଙ୍କ ମନରେ ଏଇ କଥା ଉଠିବ ସେହି ଭୟରେ ବଶୁବାବୁ ଏ ପର୍ଯ୍ୟନ୍ତ ସର୍ବସ୍ୱାନ୍ତ ହୋଇ ମଝରେ ଗାଡ଼ଟା ରଖିଲେ । ଶେଷରେ ତାଙ୍କ ଧୈର୍ଯ୍ୟ ଭୁଟିଗଲା । ମିସ୍ତ୍ରୀକୁ ଏକାନ୍ତରେ ଡାକ ଗାଡ଼ଟା ବର୍ଣ୍ଣି କରାଇ ଦେବାକୁ କହିଲେ ।

ମିସ୍ତ୍ରୀ କାନରେ ହାତ ଦେଇ କହି ଉଠିଲା—"ଆଜ୍ଞା ଯୌତୁକ ଜନଷ କଏ ବର୍ଣ୍ଣି କରେ ? ଲୋକେ କହିବେ, ବେଲ ପଡ଼ଲେ ଆପଣ"—

"ଆଉ କରିବ କଅଣ ? ନୂଆ ଟାୟାର, ଟ୍ୟୁବ୍, ମରାମତିରେ ଦୁଇ ହଜାର ଟଙ୍କା ଦରକାର, ଆଣିବ କୁଆଡ଼ୁ ?"

"ଆପଣ କହିଲା ମାତ୍ରେ କଣ୍ଟ୍ରାକ୍ଟରମାନେ ଆଖି ପିଚୁଳାକେ ବେଗର ପଇସାରେ ସବୁ ସଜାଡ଼ ଦେବେ ।'—

"ତା ବଦଳରେ" ??—

"ତା ବଦଳରେ ଆପଣ ବ ସେମିତି ତାଙ୍କର କଛୁ ଉପକାର କରିଦେବେ । ଧାରୁଆ ନ ହେଲେ କାମ ସରିଲା । ଏତେ ଚନ୍ତା କାହିଁକ"—

"ମୁଁ କ ଉପକାରଟା କର ପାରିବ"—?

"ବହୁତ ବାଟରେ ସମସ୍ତେ ପେଟ ପାଟଣା ପାଇଁ ଲାଗି ପଡ଼ଛନ୍ତି । ଶାସ୍ତ୍ର ବ କହୁଛି—'ପେଟ ପୋଷ, ନାହିଁ ଦୋଷ' । ଆପଣ ଟିକଏ ମୁହଁ ବୁଲେଇ ଦେଲେ ସେମାନଙ୍କର ଢେର ଢେର ଉପକାର ହୋଇଯିବ ।"

"କେମିତି ଏ କଥା କହୁଛୁ । ଦେଶର କେତେ କ୍ଷତି ହେବ କହିଲୁ ।"—

"ଆଗ ନଜେ, ତା'ପରେ ଦେଶ । ମୋତେ ଆପଣଙ୍କୁ ନେଇ ଦେଶ । ଆମର ଭଲ ହେଲେ ଦେଶର ଭଲ ହେଲା ! ଆଉ ବ ଆପଣଚ

କିଛି ଖରାପ କାମ କରିବାକୁ ଯାଉ ନାହାନ୍ତି । କଲିବାଲି କରିବ । ତା ଭଲ ମନ୍ଦ ତା'ଠି । ଆପଣଙ୍କର ଯାଏ ଆସେ କେତେ । ଆପଣ ସିନା ଆପଣଙ୍କୁ ବାଧୁଥିବା କଣାଟାକୁ ବନ୍ଦ କରିଦେବେ । ଆପଣଙ୍କୁ ନ ବାଧୁଥିବା ହଜାରେ କଣାକୁ ବନ୍ଦ କରିବେ କେମିତି ? ଗୋଟାଏ କଣାରେ ହାତ ଦେଇ ଦେଇ ଆପଣ ଖାଲି ହାଲିଆ ହୋଇ ପଡ଼ିବେ । କାମ କିଛି ହେବନି ।"—?

"ଓଃ !! କି ଦୋଛାଇରେ ମଣିଷ ପଡ଼ିଲି"— !

"ଏ ସବୁ କଥାରେ କାହିଁକି ମୁଣ୍ଡ ଖେଳାଉଛନ୍ତି । ଏଥିରେ ଆପଣଙ୍କର କେତେ ସମୟ ବୃଥା ଯାଉଛି । ବରଂ ଏ ସମୟ ତକ ବଞ୍ଚିଲେ ଆପଣ ଦେଶର ଆଉ ଦଶ କାମ କରି ପାରିବେ ।"—

"ମୁଁ ଆଉ ମୁହଁ ଟେକି ଚାଲି ପାରିବ ?"—

"କାହିଁକି ? ଉପରୁ ତଳଯାଏ ଦେଶର ସମସ୍ତେ ମୁଣ୍ଡଟେକି ଚାଲୁଛନ୍ତି, ଆପଣ ଚାଲି ନ ପାରିବେ କିଆଁ ? ଗୋଟାଏ ଲୋକ ଦେଖାଇ ଦିଅନ୍ତୁ ତ ଯେ କି ଗୋଟାକ ଯାକ ତୁଳସୀ । ସବୁ ଛାଡ଼ିଛୁଡ଼ି ଦେଇ ମୁଁ ଆପଣଙ୍କର ଜୀବନ ସାରା ଗୋଲାମି କରିବି ।"

"ସମସ୍ତେ କଲେ ବୋଲି ମୁଁ କରିବି ??"

"ଏଇ ଥରକ ଘାଟିରୁ ଉତୁରି ଯାଆନ୍ତୁ । ସାଡ଼ଙ୍କୁ ପଚ୍ଛେ ଆଉ ନ କରିବେ । ଗାଡ଼ରେ ଦୁଇ ହଜାର ପଡ଼ିଗଲେ ଦଶ ବରଷ ଆଉ ଚିନ୍ତା ନ ଥିବ । ସାଡ଼ଙ୍କୁ ପଚ୍ଛେ ବନ୍ଦ କରିଦେବେ । ଏଣୁ ଏଇ ଥରକ ପାଇଁ ମୁହଁ ବୁଲାଇ ଦିଅନ୍ତୁ"—

"ହଉ ଯାହା କରୁଛ କର । କିନ୍ତୁ ଦେଖ, ଆଉ ଥରେ ଯେପରି କରିବାକୁ ନ ପଡ଼େ କି ମୋ ଆଖି ଆଗରେ ଯେପରି ନହୁଏ ।"

"ଆପଣ ନିଶ୍ଚିନ୍ତ ରହନ୍ତୁ । ସେ ଭାର ମୋ ଉପରେ । ଏଇ କାମଟା ଚାଲିଗଲେ ଆଉ ସାଙ୍ଗକୁ କ ଦରକାର ! ଏଇ ଥରକରେ ବ ସବୁକାମ ସଫା କରିଦେବା । ପଛକୁ ଦରକାର ପଡ଼ିବନି । ନେଇ ଆଣି ଥୋଇବା ଲୋକ ମୁଁ । କାଣ୍ଟ୍ରାକ୍ଟ ବାବୁଙ୍କୁ କହି ଗାଡ଼ି ଲାଇସନ୍ସ, ରେଡ଼ିଓ ଲାଇସନ୍ସ, ଗାଡ଼ି ମରାମତି, ଶାଢ଼ୀ ଓ ଗହଣା ଦୋକାନର ଧାର ସବୁ ଏକା ଦଫାରେ ଶେଷ କରିଦେବ । ଆପଣଙ୍କୁ ପଇସାଟିଏ ବି ହାତରେ ଛୁଇଁବାକୁ ପଡ଼ିବନି । କେବଳ ମାତ୍ର ମୁଁ ଇସାରା ଦେଲେ ଆପଣ ଟିକିଏ ମୁହଁ ବୁଲେଇ ଦେବେ । ଯେଉଁ ଟଙ୍କାତକ ସେମାନେ ଖର୍ଚ୍ଚ କରିଥିବେ ସେତକ ଉଠେଇ ନେଇଗଲେ କାମ ଫତେ । ଏଇ ଥରକରୁ ଆଉ ଦୁଇଥର ହେବନି । ଆପଣ ବେ-ଧଡ଼କ ରୁହନ୍ତୁ ।"—

"ହଉ କଅଣ କରୁଛୁ କର । ଏଇ ଯେପରି ପ୍ରଥମ ଓ ଏଇ ଯେପରି ଶେଷ ହୁଏ । ବାର୍‌ବାର୍ କହୁଛି, ମନେ ରଖିଥା"—

"ମୋତେ ଥରେ କହିଲେ ଯଥେଷ୍ଟ"—

+ +

କଣ୍ଟ୍ରାକ୍ଟର ବାବୁ ମିସ୍ତ୍ରୀ ପିଠିରେ ହାତ ଥାପୁଡ଼େଇ କହିଲେ— "ସାବାସ୍ ମିସ୍ତ୍ରୀ ! ଅଫିମ ଥରେ ମାତ୍ର ଚଟେଇ ଦେଇ ପାରିଲେ କାମ ଖତମ୍ । ତେଣିକି ସେ କେତେଥର ଚାଟିବ । ଚାଟି ଚାଟି ଅଫିମା ହୋଇଯିବ । ଯାହା ହେଉ ଆମ କଣ୍ଟ୍ରାକ୍ଟର କୁଳକୁ ଗୋଟାଏ ଲାଜରୁ ରକ୍ଷା କଲୁ । ମେଞ୍ଚଡ଼ା ଟୋକାଟାଏ ! ଆମ ଖାଲେଇରେ ନ ପଶି ଏପାଖ ସେପାଖ ହେଉଛି । ତା ଉପରେ ପୁଣି ଫିମ୍ପଡ଼ି ଦେଖଉଛି କେତେ ।"—

ଆଙ୍ଗୁଠି ମଳୁ ମଳୁ ମିସ୍ତ୍ରୀ ମୁହଁ ପୋଛି ଓ ମୁରୁକି ହସାଦେଇ ଲାଜୁରା କଣ୍ଠରେ କହିଲା—'ହେଁ ହେଁ ବାବୁ ! କିବା ଘୂର କଥାଟାଏ'—

+ +

ଅଫିମପଟ୍ଟାଦାର କଣ୍ଟ୍ରାକ୍ଟର ଓ ବକୀଲ ମିସ୍ତ୍ରୀଙ୍କ ନିରବଚ୍ଛିନ୍ନ ଉଦ୍ୟମ ଫଳରେ ବିଶୁବାବୁଙ୍କ ପୁତ୍ର ଅଫିମଖୋର ହେବାକୁ ବର୍ଷଟାଏ ବି ଲାଗିଲାନି । ସ୍ତ୍ରୀଙ୍କର ମୁଣ୍ଡରୁ ଗୋଡ ଯାଏ ଗହଣା, ନୂଆ ମଟର ଗାଡ଼ି, କୋଠା ଆଦି କରିଥିଲେ ସୁଦ୍ଧା ସେ ପଟ୍ଟାଦାର ଓ ବକୀଲଙ୍କ ପଛରେ ଗୋଡ଼େଇବା ଛାଡ଼ିଲେ ନାହିଁ ।



# ହାତଦେଖାର କରାମତି

ଗେଣ୍ଡୁଆ ଉପରେ ଚଢିଗଲା ପାଇ ଚେମା କହିଲା—"ତୋର ଏଇ ବଦ୍‌ଖୋଇଟା ଅ ଏଥର ଗଲାନାହିଁ । ରେଲଗାଡ଼ିଟାକୁ ନିଜ ଶଶୁରଘର ଗାଡ଼ି ଭଳିଆ ପାଇଛୁ । ସତେକି ଯେମିତି ତୋଇଁ ସାଆନ୍ତେ ନ ପହଞ୍ଚିବା ଯାଏ ଗାଡ଼ିଟା ପାଦୁଣ୍ଡେ ଆଗେଇବ ନାହିଁ । ଏତେଥର ଗାଡ଼ି ଫେଲ୍ ହେଲୁଣି, ଟିକେହେଲେ ଚେତା ପଶୁନି । ତତେ ଟିକିଏ ଲାଜମାଡ଼ୁନି । ଯିଏ ଶୁଣିବ କହିବ—ଷ୍ଟେସନ ପଛପଟେ ଘର ହୋଇ ପୁଣି ଅଠରଥର ଗାଡ଼ି ଫେଲ୍ । ଆଚ୍ଛା କହିଲୁ ଭଲା ତୋ ଜୀବନଭରି କେବେ ଗାଡ଼ି ଆସିବା ଆଗରୁ ଷ୍ଟେସନରେ ପହଞ୍ଚିଛୁ ?"

ଗେଣ୍ଡୁଆ ଖତେଇ ହେଲା ଭଳି କହିଲା—"କାହିଁକି ପହଞ୍ଚିବି ତମପରି ନପଟ ଓଲୁ ହୋଇନି ଯେ ଗାଡ଼ି ଆସିବାକୁ ଘଣ୍ଟାଏ ଥିବ, ଷ୍ଟେସନରେ ବସି ଢୁଳାଉଥିବି । ଅଳସୁଆ ହୋଇନି ଯେ ଗୋଟାଏ ଦିନ ନିକମା ହୋଇ ଷ୍ଟେସନରେ ବସି ଭୁଚ୍ଛା ଅଲଣା କଥାଗୁଡ଼ାଏ ଗପିବି"—

"କାହିଁକି ଗପିବୁ ? ସେଇଟା ବଡ଼ ଅସୁନ୍ଦର କଥା । ଗାଡ଼ି ଆସିଯିବା ପରେ ଭାତଥାଳିରୁ ଅଧାପେଟରେ ଉଠି, ଲଙ୍ଗଳା ମୁକୁଳା ହୋଇ ପୁଟୁଳାଟାଏ ଧରି ଷ୍ଟେସନକୁ ଅଣନିଶ୍ୱାସୀ ହୋଇ ଦଉଡୁଥିବ, କଣ୍ଟା, ପଥର ବାରିପାରୁ ନ ଥିବ । ଷ୍ଟେସନରେ ନ ପହଞ୍ଚୁଣୁ ଗାଡ଼ି ଫିସ୍ ଫିସ୍ ହୋଇ ଆଖି ଆଗରେ ଚାଲି ଯାଉଥିବ । ମୁହଁକୁ କପାଁ ଖାଇଲା ପରି କରି ଘରକୁ ଫେରୁଥିବ । ଲୋକେ କଟା ଘାଆରେ ଲୁଣ ଦେଲାପରି କହୁଥିବେ—ଆହା ! ଗାଡ଼ି ଫେଲ୍ ହୋଇଗଲା କି ? ଏ ସବୁ ମଜା ଅଲଣା ଗପଠାରୁ ଢେର ବଢ଼ିଆ—ନୁହେଁ ?

"ଆରେ ମାମୁଲ, ମୁଣ୍ଡଫର୍ଦ୍ଦା କାମରେ ସିନା କେବେ କେମିତି ଗାଡ଼ି ଫେଲ୍ ହୋଇଯାଏ, ହେଲେ ଅଠକଳିଆ କାମବେଳେ ସେ ସବୁ ହେଳା ମୋର ନ ଥାଏ । ଗାଡ଼ି ସାଙ୍ଗେ ସାଙ୍ଗେ ମୁଁ ବି ଷ୍ଟେସନରେ ହାଜର ହୋଇଯାଏ । ଦାୟିତ୍ୱ ଥିବା କାମରେ ହେଳା କଲେ ଚଳିବ କେମିତି ?"

"ଏଇଟା କଅଣ ଗୋଟାଏ ବଡ଼ କାମ ନୁହେଁ । ଦଶଟା ମଣିଷ ତୋ ଭରସାରେ ଘରୁ ଗୋଡ କାଢ଼ିଛନ୍ତି । ଏତେଗୁଡ଼ାଏ ବାଟ ଯିବାକୁ ପଡ଼ିବ । ଗାଡ଼ି ଏ ଷ୍ଟେସନରେ ରହିବ ମୋଟେ ପାଞ୍ଚମିନଟ୍ । ଟିକଏ ଉଚ୍ଛୁର ହୋଇଗଲେ ଥାନ ମିଳିବା କାଠିକର ପାଠ ହେବ । ତୁ ଚଞ୍ଚଳ ତୋ କାମ ସାରିଦେଇ ଚାଲିବୁଟି ।"

"ଆରେ ତୁ ଯା ଟିକଟ ଫିକଟ କାଟି ଧାଡ଼ିବାନ୍ଧି ଠିଆହୋଇ ରହିଥିବୁ । ମୁଁ ପଛେ ପଛେ ଯାଉଛି । ବେଶୀ ନାହିଁ ପାଞ୍ଚ ମିନଟ ଭିତରେ ପହଞ୍ଚିଯିବ ।"

"ଟିକଟ ଫିକଟ ହୋଇ ସାରିଛି । ତୋର ଡେରିହେବା ଦେଖି ମୁଁ ଦଉଡ଼ି ଆସିଲି । ଆସିବୁଟି ମୋ ସାଙ୍ଗରେ ଆ ।"

ଠିକ୍ ଏତିକିବେଳେ ଦୂରରୁ 'ହ୍ୱେଁଓଁ-ଓଁ' ହୋଇ ରେଲଗାଡ଼ିର ହୁଇସିଲ ବାଜି ଉଠିଲା । "ଯାଃ ! ସବୁ ସରିଲା । ଆ ଶୀଘ୍ର ଆ" କହି ଚେମା ଗେଣ୍ଡୁ ଆଉ ପୁଟୁଳିଟି ଧରି ଆଗେ ଆଗେ ଦଉଡ଼ିଲା । ଖାଇବା ଆଶା ଛାଡ଼ିଦେଇ ଗେଣ୍ଡୁଆ ଏକାସାଙ୍ଗରେ ଲୁଗା କାମିଜ ଓ ଯୋତା ପିନ୍ଧା ଆରମ୍ଭ କରିଦେଲା । ତରତର ବେଳକୁ ସବୁ ଗଣ୍ଡଗୋଳ ହୋଇଯାଏ । ଯୋତା ବାଁ ଗୋଡ଼ର ଡାହାଣ ଗୋଡରେ ଆଉ ଡାହାଣ ଗୋଡର ବାଁ ଗୋଡରେ । ତାକୁ ସଜାଡ଼ି ସାରିବା ପରେ ହାତକୁ ଗୁହାଁଲବେଳକୁ କାମିଜ ଓଲଟା । ତାକୁ ଲେଉଟାଇ ପିନ୍ଧି ସାରିଲା ପରେ ଲୁଗାଟା ତାକୁ କପରି ଅଡୁଆ ଲାଗିଲା । ପଛଆଡକୁ ହାତ ନେଇ ଦେଖିଲା ବେଳକୁ କଚ୍ଛଟା ଏତେ ଲମ୍ବହୋଇ ଯାଇଛି ଯେ ତଳେ ଘୁଷୁରୁଛି । ଲୁଗାକୁ ଫିଟେଇ

ଆଡ଼୍ଡର ଥରେ ପିନ୍ଧିଲା । କିନ୍ତୁ ସମସ୍ତ ପୁଟୁଳିଟାକୁ ବ୍ୟସ୍ତହୋଇ ଖୋଜି ପକେଇଲା । ହଠାତ୍ ମନେ ପଡ଼ିଗଲା ତେମା ଆଗରେ ନେଇ ଯାଇଛି । ଗୁଦରଟା ଅଲଗୁଣିରୁ ଟାଣି ଆଣିଲା ବେଳକୁ ତା' ସାଙ୍ଗରେ ଗୁଡ଼େଇ ଭୁଡ଼େଇ ହୋଇ ସ୍ତୀର ଶାଢ଼ୀଟା ଚାଲି ଆସିଲା । ଶାଢ଼ୀରୁ ଗୁଦରଟାକୁ ଅଲଗା କରି କାନ୍ଧରେ ପକାଇଲା । ପଦାକୁ ଗୋଡ ପକାଇବାକୁ ଯାଉଛି ହଠାତ୍ କେମିତି କେମିତି ଫାଙ୍କା ଲାଗିଲା । ଅଣ୍ଟାକୁ ଦେଖିଲାବେଳକୁ ହଠାରେ ଗେଞ୍ଜିଟା ନାହିଁ । ଖାଲି କାମିଜଟା ପିନ୍ଧି ଥିବାରୁ ଫାଙ୍କା ଲାଗୁଛି । ପୁଣି ଥରେ ଗୁଦଡ଼କୁ ଥୋଇ, କାମିଜଟାକୁ କାଢ଼ି ଗେଞ୍ଜିଟା ପିନ୍ଧିଲା ଓ କାମିଜଟା ଗଳେଇଦେଇ ବାହାରି ପଡ଼ିଲା । ପଦାକୁ ବାହାରି-ଯାଇ ଦେଖିଲା ଗୁଦରଟା ଛାଡ଼ି ଦେଇଛି । ପୁଣି ଘର ଭିତରକୁ ପଶିଆସି ଗୁଦଡ଼ଟା ଗୋଟେଇ ନେଇ ପଳେଇଲା । ଧାଇଁଲା ବେଳେ ଭାବୁଥାଏ ଯାହା ଆରମ୍ଭ ବେଳୁଁ ଏତେ ହଲପଟା, ଠିକଣା ଯାହାବେଳେ କଅଣ ହେଉଛି କେଜାଣି । ଗାଡ଼ି ଆସିବା ବାଟକୁ ଚାହିଁ ଦେଖିଲା ଦୂର ନିଶାଣ ଖୁଣ୍ଟ ପାଖରେ ଗାଡ଼ିଟା ଠିଆହୋଇ ମଝିରେ ମଝିରେ ଭେଁଓଁ ଭେଁଓଁ ରଡ଼ି ଦେଉଛି । ନସର ପସର ହୋଇ ଧାଇଁବା ବନ୍ଦକରି ଆସ୍ତେ ଆସ୍ତେ ଚାଲିଲା । ସ୍ୱସ୍ତିରେ ନିଶ୍ୱାସଟିଏ ପକେଇ କହିଲା—"ଓ ହୋ ! ମଣିଷ ଟିକଏ ବଞ୍ଚିଲା ।"

ଷ୍ଟେସନରେ ପହଞ୍ଚି ଦେଖେ ତ ଆ ଦେଖିଲା ତେମାସହ ଦଶଜଣ ଯାକ ଯାତ୍ରୀ ପୁଟୁଳା, ଟିଣବାକ୍ସ ଆଦି ହାତରେ ଧରି ଷ୍ଟେସନ ଅଗଣାରେ ଧାଡ଼ିବାନ୍ଧି ଠିଆ ହୋଇଛନ୍ତି । ଟିକଟ କାଟିବା ପାଇଁ ତା ପଇସା ଦେବାକୁ ପାକିଟିରେ ହାତ ପୁରେଇ ପାଟି କରି ଉଠିଲା—"ଯାଃ ! ସର୍ବନାଶ, ଟଙ୍କା ମୁଣିଟି ଆଣିବାକୁ ମନେ ନାହିଁ ।" ଏତିକି କହି ସେ ଘରକୁ ପୁଣି ଦଉଡ଼ ଦିବାକୁ ବସିଲା । ତେମା ତା' କାମିଜଟାକୁ ଖାପୁକରି ଧରି ପକାଇ କହିଲା—'ଦେଖ ତା ଆଗରେ ଗାଡ଼ିଟା ଠିଆ ହୋଇଛି, ହେଇଟି ଆସିଲା ଆସିଲା ଜାଣ, ଏତେବେଳେ ପୁଣି ଘରକୁ ଗଲେ ଗାଡ଼ିରେ ଆଜି ଯିବାକଥା ସେମିତି ସେମିତି । ତୁ ରହିଯା, ମୁଁ ପଛେ

ତୋତେ ଧାର ଦେଉଛୁ । ଘରକୁ ଫେରି ଆସିଲେ ତୁ ପଚିଛ ମୋତେ ଫେରାଇ ଦେବୁ । ଜାଣିଶୁଣି ତୁ ଆଉ ଯାହା ଭଣ୍ଡୁର୍ କରନା ।'

ଗେଣ୍ଡୁଆ ବୁଝେଇ ସୁଝେଇ କହିଲା—"ଦେଖ ଦୂର ନିଶାଣ ଖୁଣ୍ଟ ପାଖରୁ, ଗାଡ଼ି ଏଠି ପହଞ୍ଚିଲା ବେଳକୁ ମୁଁ ଆସି ପହଞ୍ଚିଯିବି । ଏଠି ଗାଡ଼ି ଆସି ପହଞ୍ଚିବାକୁ ଦଶ ମିନିଟରୁ କମ୍ ଲାଗିବନି । ଯା ଭିତରେ ମୁଁ ଘରୁ ଡ଼ିଆଁଟାଏ ମାରିଦେଇ ପଳେଇ ଆସିବି । ତୁମେ ଥାନ ଖୋଜି ବସିଯିବ । ହେଇ ମୁଁ ଆସିଲି ଜାଣ ।" ଏତିକି କହି ଗେଣ୍ଡୁଆ ଚାଲପରି ଘରକୁ ଧାଇଁଗଲା ।

ଗାଡ଼ି ଆସି ପହଞ୍ଚିଗଲା । ଦଶଟା ମେଣ୍ଢାଙ୍କୁ ଅଟେଇବାକୁ ଗୋଟିଏ ପାଳକ । ଦଶଜଣଯାକ ଦୂରକୁ ରେଲଗାଡ଼ିରେ ଯିବା ଏଇ ପ୍ରଥମ । ତେଣୁ ସମସ୍ତେ ଗୋଟିଏ ଥାନରେ ଯେକୌଣସି ମତେ ବସିବେ । ଗୋଟାଏ ଡବାରେ ଏକାଠି ଏଗାର ଜଣଙ୍କ ପାଇଁ ଥାନ କାହିଁ ? ଚେମା ଭାଟର ଏ ମୁଣ୍ଡ ସେମୁଣ୍ଡ ଦୁଇଥର ହୋଇଗଲାଣି । ଗୋଟିଏ ଡବା ପାଖରେ ଦେଖିଲା ଦୁଇଜଣ ଡବା ଭିତରେ ଥିବା ଯାତ୍ରୀଙ୍କ ସଙ୍ଗେ ତେରମେର ହୋଇ କବାଟ ପେଲୁଛନ୍ତି । ଯାତ୍ରୀମାନେ କବାଟର ଭିତରୁ ଛିଟିକଣି ଲଗାଇ ଦେଇ ଜାଗା ନାହିଁ ଜାଗା ନାହିଁ ବୋଲି ଚାଲିଉଛନ୍ତି । ଚେମା ନିଜ ଫଉଜକୁ ନେଇ ସେଇଠି ଠିଆହେଲା । ପୂର୍ବ ଦୁଇଜଣଙ୍କ ଭିତରୁ ଜଣେ ଜବରଦସ୍ତି ଝରକା ଭିତରେ ଚଳିଯାଇ ଛିଟିକିଣିଟା ଖୋଲିଦେଲା । କୁଆ ବସାରେ ଢେମଣା ପଶିଲେ ଯେମିତି ଶବ୍ଦ ବାହାରେ ଠିକ୍ ସେମିତି ପାଟି ହେଲା । ସେହି ପାଟି ଭିଣ୍ଡି ଭିତରେ ତେରଜଣ ଯାକ ଡବା ଭିତରେ ପଶିଗଲେ । ଚକଆ ଭିତରେ ଚୂଳା ଖୁନ୍ଦିଲା ପରି ଚେମା ଡବା ଭିତରେ ସମସ୍ତଙ୍କୁ ଖୁନ୍ଦିଦେଲା । ଜାଗା ଯେ ବିଲ୍‌କୁଲ୍ ନଥିଲା ତାହା ନୁହେଁ । ଏମାନଙ୍କୁ ଧସେଇ ପଶିବାର ଦେଖି ଭିତରର ପୂର୍ବ ଯାତ୍ରୀମାନେ ସବୁ ବେଞ୍ଚରେ ବିଛଣା ଲମ୍ବେଇ ଦେଇ ଶୋଇଗଲେ । ସମସ୍ତେ ଖୁସିରେ ଯାଉଥାଆନ୍ତି, କେତେମାନେ ଆଖିବୁଜି ବିଛଣା କାମୁଡ଼ି ପଡ଼ି ରହିଲେ ଶ୍ରାବଣର ଧାରାପରି ଗାଳିଗୁଲଜର ବର୍ଷଣ ହେଲେ

ବ ତାଙ୍କ ନିଦ ଭାଙ୍ଗିନି ନାହିଁ । କିଏ କହୁଥାଏ ବେହିଆ ଥୋବରାଙ୍କୁ ଦିନ ଦଣ୍ଡାରେ ନିଦ ଲାଗି ଗଲାଣି । କିଏ କହୁଥାଏ ବୋପାର ଗାଡ଼ି ସତେ ଯେମିତି, ଗୋଡହାତ ଲମ୍ବେଇ ଶୋଇ ଯାଉଛନ୍ତି । କେହିବା କହୁଥାଏ, ଡେଇଁ ଶୋଇଥିବ ଯିଏ ତାକୁ ଉଠେଇବ କିଏ । ସବୁ ଉପାୟ ସରିବାରୁ ଶେଷରେ ଶୁଆଯାତ୍ରୀଙ୍କୁ ହଲେଇ କେତେଜଣ ପାଟିକଲେ —"ଆରେ ହୋ ଉଠହୋ", ଆରେ କେଡେ ସ୍ୱାର୍ଥପର ହୋ, ଆରେ ପାଳବଣ୍ଡା ମଡା ହୋଇଛୁ କି ?

ଭିଡ଼ ମୋଡ଼ ହୋଇ ଜଣେ ଅଧେ ଦେହଖରାପ ଥିବାର କହି ପୁଣି ଆଖି ବୁଜି ଦେଲେ । ସେମାନେ ତାଗଡ଼ା ତାଗଡ଼ା ଦିଶୁଥିବାରୁ ସେମାନଙ୍କୁ ଟଣାଟଣି କରିବାକୁ କାହାରି ସାହସ ହେଉ ନ ଥାଏ । ହେଲେ ପାଟିଗୁଣ୍ଡ କାହାରି ବନ୍ଦ ହେଉ ନ ଥାଏ । କବାଟ ପାଖରେ ଟେମା ଠିଆହୋଇ ପଦାକୁ ଗୃହିଁଥିଲା । ଦେଖିଲା ଛଅଜଣ ସିପାହୀ ବନ୍ଧୁକ ଧରି କେଉଁ ଏକ ଡବାରେ ଚଢ଼ିବେ ବୋଲି ଏପାଖ ସେପାଖ ହେଉଛନ୍ତି । ସେ ସେହି ଡବାରେ ଉଠିବାକୁ ହାତଠାରି ଡାକଦେଲା ଓ କବାଟ ପାଖରୁ ଆଡ଼େଇ ହୋଇଗଲା । ସିପାହୀମାନେ, ହାଣ୍ଡି ବୁଦା ଭିତରେ ଠେଲପେଲ ପଶିଗଲା ପରି ସେହି ଡବା ଭିତରେ ପଶିଗଲେ । ଭିତରେ ନିଶ୍ୱାସ ଟିକିଏ ମାରିବାକୁ ଜାଗା ନାହିଁ, ସମସ୍ତେ ଠିଆ । କଡ଼ ମୋଡ଼ ହେଉ ନ । ଶୋଇଲା ବାଲାଙ୍କ ଉପରେ ସିପାହିମାନଙ୍କର ଦୃଷ୍ଟି ପଡ଼ିଲା । ସତେ କି ଯୁଦ୍ଧ ଭୂଇଁରେ ସେମାନେ କେତେଟା ଶତ୍ରୁ ଦେଖି ପକାଉଲେ । କଥାବାର୍ତ୍ତା ଆଉ କରୁଛି କିଏ । ସେମାନଙ୍କ ପାଖକୁ ଛେପିଯାଇ ଗଦାରୁ ନଡ଼ାବଡ଼ା ଓଲାରି ଆଣିଲା ପରି ବେଞ୍ଚ ଉପରୁ ସେମାନଙ୍କୁ ଘିଡ଼ାଘାଡ଼ିଆ ଘୋଷାଡ଼ି ଆଣିଲେ । ଶୋଇଲାବାଲାଏ ଯାହାକିଛି ବା ପ୍ରତିବାଦ ଓ ପ୍ରତିରୋଧ କରିଥାଆନ୍ତେ, ସେମାନେ ଆଗରେ ଦେଖିଲେ ଷଣ୍ଢାଷଣ୍ଢା ସିପାହୀ ଛଅଜଣ, ସେଥିରେ ପୁଣି କାନ୍ଧରେ ଗୋଟାଏ ଲେଖାଏଁ ବନ୍ଧୁକ, ତା ସଙ୍ଗରେ ସେମାନଙ୍କୁ ନିଜ ନିଜ ପୁଅରି ମାମୁଁ ବୋଲି ସମ୍ବୋଧନ ସହିତ ଦୈହିକ ପୀଡ଼ା ଦାନର ଉଦ୍ୟୋଗ । ଅଧିକ ବାକ୍ୟବ୍ୟୟ ନ କରି ସମସ୍ତେ ସୁଶାନ୍ତ ଭଦ୍ରଲୋକ ପରି ବସି ରହିଲେ ।

ସିପାହୀମାନେ ଅଳଆ ଓଳେଇ ଘର କଣରେ ଗଦା କରିଦେଲା ଭଳି ସେମାନଙ୍କୁ ଗୋଟାଏ ଥାନରେ ବସେଇ ଦେଇ ଦୁଇଟି ବେଞ୍ଚ ପୂରା ଅଧିକାର କରିନେଲେ । ଚେମା ମନରେ ବେଶ୍ ଆତ୍ମପ୍ରସାଦ ଲାଭକଲା । ଏତିକିବେଳେ ସେ ଗେଣ୍ଡୁଆକୁ ଧାଇଁ ଆସୁଥିବାର ଦେଖି ହାତଠାରି ସେଇଠିକୁ ଆସିବାକୁ ଡାକିଲା । ଗାଡ଼ି ସେତେବେଳକୁ ଶିଟି ବଜାଇ ଗଡ଼ିଲାକୁ ଆରମ୍ଭ କଲା । ଯାହାହେଉ ଗେଣ୍ଡୁଆ ଦଉଡ଼ି ଆସି ନସେଇ ଡବାକୁ ଉଠି ପଡ଼ିଲା ।

ଭିତରକୁ ଚାହିଁ ଗେଣ୍ଡୁଆ କହିଲା—"ଗୋଟାଏ ଖାଲି ଡବା ଦେଖି ଚଢ଼ିଲ ନାହିଁ, ଏତେ ଭିଡ଼ରେ ଏତେବାଟ କେମିତି ଯିବା ?

ଚେମା ବିରକ୍ତ ହୋଇ କହିଲା—"ସେଇଥିଲାଗି ଏତେ ଡେରି କରୁଥିଲୁ ନା ? ଏ ଦଶଜଣଙ୍କୁ ଧରି ମୁଁ ଏକୁଟିଆ ଯେଉଁ ହଇରାଣ ହେଲିଣି ତା' ମୋ ମନ ଜାଣେ । ବିଜଣ ହୋଇଥିଲେ ବାଣ୍ଟିହୋଇ ଯାଇ-ଥାଆନ୍ତେ । ଭାଗ୍ୟ ଭଲ ଟିକିଏ ଠିଆ ହେବାକୁ ଥାନ ମିଳିଛି କହ ।"

ଗେଣ୍ଡୁଆ ଭଲକରି ଚନିଖି କରି ଦେଖିଲା ସେ ତଳ ହେଉ ଉପର ହେଉ ବା ବେଞ୍ଚ ହେଉ ସମସ୍ତେ କଷ୍ଟେ ମଷ୍ଟେ ଜାକିଯୁକି ହୋଇ ବସିଛନ୍ତି । କେବଳ ସେ ଆଉ ଚେମା କଷ୍ଟେ ମଷ୍ଟେ ଠିଆ ହୋଇଛନ୍ତି । ଗୋଡ଼ ଟିକିଏ ବୁଲେଇବାକୁ ଜାଗା ନାହିଁ । ଛଅଜଣ ସିପାହୀ କିନ୍ତୁ ବେଶ ଆରାମରେ ଫାଙ୍କା ଫାଙ୍କା ହୋଇ ଦୁଇଟା ବେଞ୍ଚ ମାଡ଼ି ବସିଛନ୍ତି । ଖୁସିରେ ସେଠି ଦୁଇଜଣଯାକ ଆରାମରେ ବସିଯାଇ ପାରନ୍ତେ, ହେଲେ ମୁହଁ ଖୋଲି ସେମାନଙ୍କୁ କହିହେଉ ନ । ବିଚରା ଗୁଣୁ ଗୁଣୁ ହୋଇ ମନକଥା ଚେମାକୁ ଜଣାଇଲା ।

ଚେମା ବି ଚୁପ୍ ଚୁପ୍ କରି କହିଲା—"ଏ ଅବସ୍ଥାକୁ ମୁଁ ଡାକି ଆଣିଛି । ପାଞ୍ଚ ଛଅଜଣ ଆମ କଥାକୁ ନ ଶୁଣି ଥାନ ମାଡ଼ି ବସିବାରୁ ଆଉ ଜାଗା ନ ଦେବାରୁ ମୁଁ ଏମାନଙ୍କୁ ଡବା ଭିତରକୁ ନିମନ୍ତ୍ରଣ କରି ଆଣିଲି । ହେଲେ ସେମାନେ ଏମାନଙ୍କୁ ତଡ଼ିଦେଇ ନିଜେ ଦଖଲ କରି

ବସିଗଲେ । ଝିକଏ ହେଲେ ତାଙ୍କ ମନରେ ଦୟା ହେଲା ନ ଯେ ଏ ଲୋକଟା ଆମକୁ ଡାକି ଆଣିଲା, ଯାକୁ ଝିକଏ ଥାନଦେବା । ଓଲଟି ମୁହଁ ଆଉକୁ ଝିକଏ ଘୁଞ୍ଚୁ ନାହାନ୍ତି ।"

"ହୁଁଃ ! ତାହାହେଲେ ଚାଉଚଷା କାମକର ଏତକ ଅଜିଛୁ । ବାହାର ଲୋକଙ୍କୁ ଡାକ ଆଣି ଘରେ ପୂରେଇଲେ ଏମିତି ଦଶା ନିଶ୍ଚୟ ହେବିଗିବ ।"

'ଝିକଏ ଭୁଲପାଇଁ ଏତେ ହେବିଗିବନା ? ଏ ଡବାର ସମସ୍ତେ ଦୂରଯାତ୍ରୀ, କେହି ମଝିରେ ଓହ୍ଲେଇଲାବାଲା ନାହାନ୍ତି । ଠିଆ ହୋଇ ହୋଇ ଗୋଡରୁ ପାଣି ମରିବ, ଗୋଡ ଲଠି ହୋଇଯିବ । ଚାଲ ଆଗ ଷ୍ଟେସନରେ ଆଉ ଗୋଟିଏ ଡବାକୁ ଉଠିଯିବା ।'

"ଏତେ ଜଣଙ୍କୁ ଏକାଠି କେଉଁଠି ହେଲେ ଥାନ ମିଳିବ ନାହିଁ । ସମସ୍ତେ ତ ଏଠି ବସିଛନ୍ତି । କେବଳ ଆମେ ଦୁଜଣ ଯାହା ଠିଆ ହୋଇଛୁ । ଏଇ ସିପାହୀଙ୍କୁ ଝିକଏ ପଚକା ପଚକ କରିଦେଲେ ଥାନ ମିଳିଯିବ ।"

'ସିପାହୀଗୁଡାକ ପଚକା ପଚକରେ ଅଛନ୍ତି ନା ?' ବୃଥାରେ ନଣ୍ଟବାଲା ଚଷିବୁ କାହିଁକି ? ବରଂ ଅଉ ଗୋଟିଏ ଡବା ଖୋଜିବା ଭଲ ।'

"ତୁ ସବୁରିତ କର । ପଚକେଇବା ଠିକ୍ ବାଗରେ ହୋଇ ପାରିଲେ ସେନାପତି ତ ଆଣ୍ଟେଇ ପଡ଼ିବ, ଆଉ ଏ ଲୋଣ୍ଡି ସିପାହୀଙ୍କୁ ପଚୁରେ କଏ । ଏ ଡବାରେ ଯାହାହେଲେ ଠିଆ ହେବାକୁ ଥାନ ଝିକଏ ମିଳିଛି । ଏଠୁ ଓହ୍ଲେଇଲେ ଆଉ ଦୁ'ଜଣ ପଶି ଆସି ଥାନ ମାଡ଼ି ବସିବେ । ଆମେ ଯଦି ଆଉ କେଉଁଠି ଥାନ ନ ପାଉ ତେବେ କଥା ଶେଷ । ଏଠୁଁ ଯିବା, ସେଠୁଁ ବ ଯିବା । ତୁ ଥୟଧର ମୁଁ ବାଗ ବୁଝିକ ଦେଖି ପଚକା ପଚକ ସୁରୁ କରିବ ।

ଗାଡ଼ ପୂର୍ବବେଗରେ ଛୁଟିବାକୁ ଆରମ୍ଭ କରିଥାଏ । ଗେଣ୍ଡୁଆ ଓ ରେମା ଗୋଡ଼ ଖସେଇ ଖସେଇ ସିପାହୀମାନେ ବସିଥିବା ବେଞ୍ଚର ଠିକଏ ପାଖାପାଖି ହୋଇଗଲେ । ଗୁପ୍ତ ନିର୍ଦ୍ଦେଶ ଅନୁଯାୟୀ ରେମା ନିଜ ପାପୁଲିଟା ଦେଖାଇ କହିଲା—"ଆଚ୍ଛା ମୋ ହାତ ଠିକଏ ଦେଖି ମୋ ଭାଗ୍ୟରେ କଅଣ ଅଛି କହିବଟି ।"

ଅତି ଗମ୍ଭୀର ଭାବରେ ପାପୁଲିଟାକୁ ଏ ପାଖ ସେପାଖ କରି ଗେଣ୍ଡୁଆ କିଛି ସମୟ ଗୁହିଁଗଲା । ତା' ପରେ ବଡ଼ ପାଟିରେ କହିଲା— "ଏ ହାତଟା ଭାରି ଖର୍ଚ୍ଚି ହାତ । ମୋଟେ ପଇସା ଜମେଇ ପାରିବନି । ଆଃ ! ଏ ଭୋଗ ରେଖାଟା ଭାରି ମାତବରିଆ ହୋଇଛି : ଖୁବ୍ ଭୋଗ କରିବ । କୋଉଥିରେ ଊଣା ହେବନି, ଧନରତ୍ନ ଖୁବ୍ ପାଇବ । ହେଲେ ରଖି ପାରିବ ନି !"

"କାହିଁ ସେମିତି ବେଶି ପଇସାପତ୍ର ମିଳୁନି ତ ?"

"ମିଳିବ, ଅଲବତ୍ ମିଳିବ । ଆଉ ମାସେ ସବୁରିତ କର । ନ ମିଳିଲେ ଏ ହାତ ଦେଖା ଛାଡ଼ିଦେବି । ଘରେଥିବା ସାତପୁରୁଷର ଜଉତିଷ ପୋଥିକୁ ଚୂଲିରେ ପୂରେଇ ଦେବି । ମୋ ନାଁରୁ ଜ୍ୟୋତିର୍ବିଦ୍ ସାଙ୍ଗିଆଟା କାଟି ଫୋପାଡ଼ ଦେବି । ମନ୍ତ୍ରୀ, ଏମ. ଏଲ୍. ଏ. ଲାଟ ସାହେବ, କଲେକ୍ଟର, ଜଜ୍ ସାହେବମାନେ ଯେଉଁ ଗଦା ଗଦା ପ୍ରଶଂସାପତ୍ର ଦେଇଛନ୍ତି ତାକୁ ନର୍ଦ୍ଦମା ଭିତରକୁ ଫିଙ୍ଗିଦେବି ।"

ଗେଣ୍ଡୁଆ ଖୁବ୍ ଉତ୍ତେଜିତ ହୋଇ ଏ କଥାଗୁଡ଼ାକ ଖୁବ୍ ବଡ଼ ପାଟିରେ କହି ଯିବାରୁ ସିପାହୀମାନେ ତାହାରି ଆଡ଼କୁ ଗୁହିଁଲେ । ଏଥିରେ ଗେଣ୍ଡୁଆ ଖୁବ୍ ଖୁସି ହୋଇଯାଇ ଆହୁରି ବଡ଼ ପାଟିରେ ପାପୁଲିର ଫଳାଫଳଗୁଡ଼ିକ ହାଙ୍କିବାକୁ ଲାଗିଲା । ଆଉକୁ ସବୁ କଥାଗୁଡ଼ାକ ବିଲ୍କୁଲ୍ ଠିକ୍ ବୋଲି ରେମା ସ୍ୱୀକାର କରିଗଲା ଓ ଗେଣ୍ଡୁଆର ହାତଦେଖା ବିଦ୍ୟାକୁ ଖୁବ୍ ତାରିଫ୍ କଲା । ଗେଣ୍ଡୁଆ ମଧ୍ୟ ଈଷତ୍ ହସି ପୁଣି କହିଲା —"ଏ ବିଦ୍ୟା ହାସଲ କରିବା ପାଇଁ କମ ପରିଶ୍ରମ କରିନି । ଏଇଟା

ଆମର ସାତପୁରୁଷୀ ବିଦ୍ୟା । ଏଥିରେ ଆମେ ପେଟ ପୋଷୁନୁ ଯେ ଗାଲୁ-ମାଲୁ କହି ଲୋକଙ୍କୁ ଠକିବୁ । ଏଇଟା ଗୋଟାଏ ଆମର ସଉକ୍ । ଏଇଥିପାଇଁ ପଇସାଟିଏ କାହାଠୁଁ ନେଉନାହୁଁ । ତେଣୁ ରୋକ୍ ଠୋକ୍ ସତସତ କଥା ଗୁଡ଼ିକ କହିଯାଉ ।”

ଛଅଟାଯାକ ସିପାହୀ ବେଶ୍ ମନ୍ତ୍ରମୁଗଧ ପରି ଗେଣ୍ଡୁଆର କଥାଗୁଡ଼ାକ ଶୁଣିଯାଉ ଥାଆନ୍ତି । ସେମାନେ ସମସ୍ତେ ମନେ ମନେ ଠିକ୍ କରିନେଲେ ଯେ ଲୋକଟା ନିଶ୍ଚୟ ଗୁଣୀ । ଜ୍ୟୋତିଷ ବିଦ୍ୟାଟା ନିଶ୍ଚୟ ଭଲ ଜାଣିଛି ଆଉ ରୋକ୍‌ଠୋକ୍ ସତକଥାଗୁଡ଼ାକ କହି ଯାଉଛି, ଯେହେତୁ ତା'ର ପଇସା ଲୋଭ ନାହିଁ । କଥାରେ ଅଛି—'ତାର ଦେଖି, ମୋର ତେଉଁଛି ଡାହାଣ ଆଖି ।' ଜ୍ୟୋତିଷୀ ଜଣକ ସେ ଲୋକଟାର ଭବିଷ୍ୟତ-ଟାକୁ କେଡ଼େ ବିଚକ୍ଷଣତାର ସହ ପଦାରେ ଖୋଲି ଦେଇଛି ! ସେମାନଙ୍କର ଭବିଷ୍ୟତ ବି କମ୍ ଅନ୍ଧାରୁଆ ଓ ଅସ୍ପଷ୍ଟ ନୁହେଁ । ଜ୍ୟୋତିଷୀ ସାହାଯ୍ୟରେ ଭବିଷ୍ୟତଟାକୁ ଦେଖିନେବାଟା ମନ୍ଦ ହେବନି । ସମସ୍ତେ ଉଣା ଅଧିକେ ଏହିପରି କଳ୍ପନା ଜଳ୍ପନା ମନେ ମନେ ଚଳେଇ ଥାଆନ୍ତି । ଜଣେ ସମ୍ଭାଳି ହୋଇ ନ ପାରି ପାଟିଖୋଲି କହିଲା—“ହୋ ଜଉତିଷ ବାବୁ ! ଟିକଏ ମୋ ହାତ ଦେଖ ନ ।”

“ହଁ ହଁ ଦେଖିବି ନି କାହିଁକି ? ଉଃ ! ଟିକଏ କଅଣ ଜାଗା ଅଛି ପାଖକୁ ଯିବାକୁ । ଏତେ ଦୂରରୁ ହାତ ଦେଖିବି କେମିତି ।”

ସିପାହୀ ଜଣକ ଠେଲାଠେଲି ଜ୍ୟୋତିଷୀକୁ ବାଟ କଢ଼ାଇ ବେଞ୍ଚପାଖକୁ ନେଇ ସନ୍ତମତ ପାଖରେ ବସାଇ ଦେଲା । ଗେଣ୍ଡୁଆ ପୂର୍ବପରି ପାପୁଲିକୁ ମୋଡ଼ାମାଡ଼ି, ଆଙ୍ଗୁଠିଗୁଡ଼ାକ ଫାରକଟେଇ, ଆଙ୍ଗୁଠି ଅଗଗୁଡ଼ାକୁ ତନ୍ନ ତନ୍ନ କରି ଅନେକ ବେଳଯାଏ ପରୀକ୍ଷା କରିଗଲା । ମଝିରେ ମଝିରେ 'ହୁଁ' 'ଆଃ' 'ଅଃ' 'ବାଃ' ଆଦି ଶବ୍ଦଗୁଡ଼ିକ ତା ପାଟିରୁ ଗଳି ପଡୁଥାଆନ୍ତି । ସତେ ଯେପରି ସେ ଗୋଟାଏ ଗହିରିଆ ଖଣି ଖୋଳୁ ଖୋଳୁ ଗୋଟିଏ ଗୋଟାଏ ହୀରା ମାଳା ପାଇ ଯାଉଛି । ଛଅଟାଯାକ ସିପାହୀ ମୂକ ପାଲଟିଯାଇ ତାରିଆଡ଼େ

ଗୁହିଁ ରହିଥାଆନ୍ତି । ସମସ୍ତଙ୍କ ମନ କୌତୂହଳରେ ଆକ୍ରାନ୍ତ । ଉବିଷ୍ୟତର ଖାଳେଇ ଭିତରୁ ଜ୍ୟୋତିଷୀ କଅଣ କାଢ଼ିବ !

ଶେଷରେ ଗେଣ୍ଡୁଆ, ସିପାହୀ ପାପୁଲିରେ ନିଜ ପାପୁଲିଟା ପଟାସ୍ କରି ପିଟିଦେଇ କହିଲା—"ଆଃ ! ହାତଖଣ୍ଡେ ଦେଖିଲି । ମୋ ଜନମଭିତରେ ଏମିତିଆ ହାତଟାଏ ଦେଖି ନ ଥିଲି । ହାତଟା ଭାରି ତେଜୀହାତ । ଯେଉଁ କାମରେ ଏ ହାତ ଲଗିବ ତାକୁ ନ ସାରି ଛାଡ଼ିବ ନାହିଁ । ଖୋଲା ବି ଊଣା ନୁହେଁ । ଦୁଃଖୀ ରଙ୍କିଙ୍କ ପାଖରେ ଏହା କେବେହେଲେ ବୁଜି ରହିବନି । ଶକ୍ତି ଅନୁଯାୟୀ କିଛିହେଲେ ପକେଟରୁ କାଢ଼ି ଦାନକରିବ । ତୁମ ହୃଦରେ ଭାରି କ୍ରୋଧ ଅଛି । ହେଲେ ଯେତିକିଜୋରରେ ଆସେ ସେତିକି ଜୋର୍‌ରେ ଛାଡ଼ିଯାଏ । ଏ ପର୍ଯ୍ୟନ୍ତ ବିଶେଷ କିଛି ଆସିନି । ଅଳ୍ପଦିନ ଭିତରେ ସୌଭାଗ୍ୟ ମାଡ଼ି ଆସିବ । ମାନ, ସମ୍ମାନ ସବୁକିଛି ଆସିବ ।"

ପାଖ ସିପାହୀ ଜଣକ ହାତଦେଖା ସିପାହୀ ପିଠିରେ ଗୁପୁଡ଼ାଟାଏ ମାରିଦେଇ କହିଲା—"ଦେଖ୍ କଥାକୁ କଥା କେମିତି ମିଶି ଯାଉଛି । ମୁଁ କହି ନ ଥିଲି ଆର ମାସରେ ତୋର ହାବିଲଦାର ପଦକୁ ପ୍ରମୋସନ ହେବ । ହଉ ହଉ କହିଯାଅ ।"

ଗେଣ୍ଡୁଆ ପୁଣି ଆରମ୍ଭ କଲା—"ଜଣେ କିଏ ତମପ୍ରତି ଶତ୍ରୁଭାବ ରଖିଛି । ହେଲେ ବିଶେଷ କିଛି କରି ପାରିବନି ।"

ସିପାହୀଟି ତା ସାଙ୍ଗକୁ ଅବାକ୍ ହୋଇଯାଇ କହିଲା—"ଜଉତିଷେ ଠିକଣା ଠିକଣା କଥା କହି ଯାଉଛନ୍ତି । ମୋ ପ୍ରମୋସନ୍ ବନ୍ଦ କରାଇବା ଲାଗି ମାଗା ହାବିଲ୍‌ଦାର କଅଣ କମ୍ ଚେଷ୍ଟା କରୁଛି !"

ପାଖ ସିପାହୀ ଜଣକ ଜ୍ୟୋତିଷୀଙ୍କୁ ଅଧିକ ପରୀକ୍ଷା କରିନେବାକୁ ଯାଇ ପଚାରିଲା—"ଆଚ୍ଛା କହିଲ ତାଙ୍କର ବାହାଘର କେବେହେବ !"

ଗେଣ୍ଡୁଆ ଦୁହିଁଙ୍କ ମୁହଁରେ ପରିଷ୍କାର ଚପାହସ ଦେଖିଲା । ହାତଦେଖା ସିପାହୀର ମୁହଁକୁ ଭଲକରି ଚାହିଁ କାନମୂଳ ଆଡ଼େ ଦୁଇ

ଡନଟି ଧଳାବାଳ ଦେଖିନେଲ୍ । ତାପରେ ପୁଣି ପାପୁଲକୁ ଦେଖି ଦେଖି କହିଲ୍—"ହାତ କହୁଛି ଯେ ସେ ବାହାହୋଇ ସାରିଛନ୍ତି, ସେଇଟା ଘଣ୍ଟାକପାଇଁ ହୋଇଥାଉ ବା ସାରା ଜୀବନପାଇଁ ହୋଇଥାଉ ।"

ହାତଦେଖା ସିପାହୀ ଉତ୍‌ଫୁଲ୍ଲ ହୋଇଯାଇ ସାଙ୍ଗଙ୍କୁ କହିଲ—"ଦେଖିଲୁ, ବିଦ୍ୟା ମାଲୁମ ଅଛି । ତାଙ୍କୁ ଭୁଲେଇ ପାରିବୁନି । ମୁଁ ଯେ ବହୁ ଆଗରୁ ବାହା ହୋଇଛି ତାହା ପାପୁଲିରୁ ଜାଣିଗଲେ । ତାଙ୍କୁ କପରି ସତକଥା ଲୁଚେଇବୁ ?"

ଏପରି ନିର୍ଘଣ୍ଟ ସତକଥା ଗୁଡ଼ାକ କହି ପକାଉଥିବାର ଦେଖି ସବୁଯାକ ସିପାହୀ ହାତ ଦେଖାଇବାକୁ ହମ ହମ ହୋଇ ଉଠିଲେ । ଠିକ୍ ବେଳଉଣ୍ଡି ଗେଣ୍ଡୁଆ ସେ ଥାନରୁ ଉଠିପଡ଼ି ନିଜର ପୂର୍ବ ଥାନରେ ଯାଇ ଠିଆହେବାକୁ ବାହାରିଲ୍ । ସମସ୍ତେ ବ୍ୟସ୍ତ ହୋଇପଡ଼ି ଏକାବେଳେକେ ଚଲେଇ ଉଠିଲେ—"ଆରେ ବସନ୍ତୁନା, ଠିଆହେଲେ କାହିଁକି ?"

ହାତଯୋଡ଼ି ଅତି ନମ୍ର ଭାବରେ ଗେଣ୍ଡୁଆ କହିଲ୍—ମାଫ୍ କରନ୍ତୁ ଆଜ୍ଞା ମୋ ସାଙ୍ଗ ଜଣକ ଠିଆ ହୋଇଥିଲ୍‌ବେଳେ ମୋର ଏଠି ବସିବା ଅନ୍ୟାୟ ଓ ବିବେକ ବିରୁଦ୍ଧ କାମହେବ । ଆପଣଙ୍କ କାମ ସାରିଦେଲି ଆଉ କାହିଁକି ବସିବି ?"

ଜଣେ ସିପାହୀ ଚଟାପଟ୍ କହି ଉଠିଲ୍—"ଆରେ ଏଇ ଛାର କଥାଟା ପାଇଁ ଉଠିଯିବ, ତାଙ୍କୁ ଏଇଠି ଆଣି ବସେଇ ଦେଲେ ଗଲ୍ । ତୁମେ ବସ ।"

କଥାଟା ସାଙ୍ଗେ ସାଙ୍ଗେ କାମରେ ପରିଣତ ହୋଇଗଲ୍ । ବାଟ ସଫା କରେଇ ସେ ଟେମା ହାତଧରି ଟାଣିନେଲ୍ ଓ ନିଜପାଖରେ ବସେଇ ଦେଲ୍ । ତାପରେ ଗେଣ୍ଡୁଆକୁ ସମ୍ବୋଧନ କରି କହିଲ୍, ଏଥରକ ନିଶ୍ଚିନ୍ତରେ ଦୁହେଁ ବସ । ଯଥେଷ୍ଟ ଜାଗା ଅଛି ବେଶ୍ ଆରାମରେ ଯାଇ ହବ, ଏଥର ମୋ ହାତ ଟିକଏ ଦେଖିବଟି ।"

ପୂର୍ବ ସିପାହୀ ଜଣକ ଅଧାଖିଆ ହେଲାପରି କହି ଉଠିଲା —"ରହ ରହ ଆଉ ଟିକିଏ ରହ, ମୋର ସରିଗଲେ ତୋର ଦେଖିବେ । ଆଛା ଜଉତିଷେ କହିଲ ମୁଁ ଆଗ ଯିବି ନା ଆମର ସେ ଆଗ ଯିବେ ?"

ଗେଣ୍ଡୁଆ ପଢ଼ି କରି ଜାଣିଗଲା ସିପାହୀଟି ଭାରି ମାଇପ ସୁହାଗୀ ସ୍ତ୍ରୀ ଆଗ ମରିବା କଥା ସମ୍ଭାଳି ପାରିବ ନାହିଁ । ଟିକିଏ ମୁହଁ ଶୁଖାଇ ଓ କୁନ୍ଥି କୁନ୍ଥି ହୋଇ କହିଲା—"ଦେଖନ୍ତୁ ଏଇଟା କହିବା ମୋ ପକ୍ଷେ ଠିକ୍ ହେବନି । ଏଗୁଡ଼ାକ ମନ କଷ୍ଟ ହେବା କଥା । ଜାଣୁ ଥିଲେ ବି ସବୁକଥା କୁହାଯାଏନି, ବିଶେଷ କରି ବନ୍ଧୁ ଓ ପ୍ରିୟ ଲୋକଙ୍କୁ ଏ ସବୁ କଥା କହିବା ମନା ।"

ସିପାହୀ ଜଣକର ଆଗ୍ରହ ଆହୁରି ବେଶି ବଢ଼ିଗଲା । ବିନା ସଙ୍କୋଚରେ କଥାଟା କହିଦେବାକୁ ବାରମ୍ବାର ଅନୁରୋଧ କଲା । ଗେଣ୍ଡୁଆ ମନେ ମନେ ଭାବିଲା ସିପାହୀ ସାଙ୍ଗରେ ଏଇଟା ବୋଧହୁଏ ପହିଲି ଓ ଶେଷ ଦେଖା, କଥାଟା ନ ବାଜିଲେ କୋଉ ମୁକାବିଲା ହେଉଛି । ତେବେ ଏହାର ମନରଖି କଥାଟାକୁ କହିବାକୁ ହେବ । ଏମିତି ଭାବି ସେ ପ୍ରକାଶ୍ୟରେ କହିଲା-"ଦେଖ ଏସବୁ ବହୁତ ଡେରିର କଥା । ବାଳ ଝୋଟ ନ ହେବା ଯାଏ କିଛି କାହାକୁ ଘଟିବ ନାହିଁ । ନାତି' ନାତୁଣୀଙ୍କୁ ଦେଖି ସାରି ତୁମେ ଆଗେ ଯିବ, ତୁମ ସାଙ୍ଗେ ସାଙ୍ଗେ ହାର୍ଟଫେଲ୍‌ରେ ସିଏ ଯିବେ । ଦୁହେଁ ଖୁବ୍ ଅଇସ କରି ବିଦାୟ ନେବ ।"

ସିପାହୀର ଆଖି ଛଳ ଛଳେଇ ଆସିଲା, । କଥାଟା ତା ମନକୁ ଠିକ୍ ଖପିଗଲା ଭଳି ଜଣାଗଲା । ସେ ଆଉ କଅଣ ପଚାରିବ ଠିକ୍ କରି ପାରିଲା ନାହିଁ । ତାକୁ ଚୁପ୍ ରହିବା ଦେଖି ଆଉ ସିପାହୀଟି ଗେଣ୍ଡୁଆ ଆଗରେ ପାପୁଲିଟି ମେଲାଇ ଧରିଲା । ଗାଡ଼ି ଗୋଟାଏ ଷ୍ଟେସନ୍‌ରେ ଠିଆ ହେବାକୁ ଯାଉଥାଏ । ଗେଣ୍ଡୁଆ ପୁଣି ହାତଯୋଡ଼ି କହିଲା-"ଦେଖନ୍ତୁ, ଆମେ ଦିଜଣ ଏ ପର୍ଯ୍ୟନ୍ତ କିଛି ଖାଇନୁ । ଭାରି ଭୋକ କଲାଣି । ଏଠି

ଓନ୍ଲେଇ ଟିକଏ ଗ୍ଝା ଜଳଖିଆ ନ ଖାଇଲେ ପାଠ ପଇଟିବ ନାହିଁ । ପେଟଚ ଗ୍ରଗିଯାଇ କଁ କଁ ରଡ଼ ଦେବ, ପାଠକୁ ପୂଗ୍ଇ ଦେବନ । ଆମେ ଦୁହେଁ ଖାଇ ପିଇ ସାର ଆସିଲେ ଯାଇ ଯେଉଁକଥା ।"

ସିପାହ୍ମୀ ଜଣକ ନଗ୍ଗେଉ୍‌ବନ୍ଧା । ସେ ଅସ୍ଥିର ହୋଇ ପଡ଼ କହିଲ—"ଅଃ! ଏଇ ସାମାନ୍ୟ କଥା ପାଇଁ ପଦାକୁ ଯିବ କାହିଁକ ? ଭୁମେ ବସ, ଆମେ ସମସ୍ତେ ଖାଇବା ଗ୍ଝା ପିଇବା । ଦକାଳୀ ଏଇଠି ଆଣି ଦେଇଯିବ । ଆଖପାଖରେ ବ ପାଉରୁଚି, ବସ୍କୁଟ ଅଚ୍ଛୁ । ସିଏ ସବୁ ବନ୍ଦୋବସ୍ତ କରିଦେବେ, ଭୁମେ ଚୁପ୍ ହୋଇ ବସି ହାତ ଦେଖନା"—

ମନେ ମନେ କୁଲୁର ଉଠି ଗେଣ୍ଡୁଆ ପକେଟରୁ ଟଙ୍କା କାଢ଼ି ଜଳଖିଆ, ଗ୍ଝ' ପାଇଁ ଦେବାର ବାହାନା କଲ । ସିପାହ୍ମୀ ଜଣକ ତା ହାତଟା ଧରି ପକେଇ କହିଲ, "ଏ କଅଣ କରୁଛ ! ଭୁମେ ଆମର ବନ୍ଧୁ ପରି, ବନ୍ଧୁ ହଜଣକୁ ଟିକଏ ଜଳଖିଆ ଆମେ ଦେଇପାରିବୁନ ? ଭୁମେ ପୁଣି ଟଙ୍କାଦେବ, ଦେଖ ମନଟା ଭାରି କଷ୍ଟ ହୋଇଗଲ ।"

ଅତ ବ୍ୟସ୍ତ ହୋଇ ପଡ଼ ଗେଣ୍ଡୁଆ କହିଲ "ଆଜ୍ଞା କ୍ଷମାକରନ୍ତୁ ଆଉ ଟଙ୍କା ନାଁ ଧରିବନ, ଭୁମ କଥା ହେଉ, ହଉ ହାତଟା ଦେଖେଇବଟି,"

ସିପାହ୍ମୀ ଜଣକ ତହୁଁ ବଡ଼ ଉଦ୍ଦାମି ଦେଖାଇ କହିଲ—"ନା ନା ଆଗ ଟିକଏ ଗ୍ଝ' ଜଳଖିଆ ହୋଇଯାଉ, ପେଟ ଥଣ୍ଡା ହେଲେ ଯିନା ମୁଣ୍ଡରୁ ପାଠ ବାହାରିବ ।"

ଗୋଟିଏ ସିପାହ୍ମୀ ଝରକାପାଖରେ ମୁହଁ ଗଳାଇ ଜଳଖିଆ ଓ ଗ୍ଝ' ଦକାଳୀମାନଙ୍କୁ ସବୁ ଜନଷ ଯୋଗାଇ ଦେବାକୁ କହିଲ । ସଙ୍ଗେ ସଙ୍ଗେ ଗ୍ଝ' ଜଳଖିଆ ବ ଆସି ଗଲ । ଆଠଜଣଯାକ ଭଲକରି ଜଳଖିଆ ଗ୍ଝ'ରେ

ସାଷ୍ଟାଙ୍ଗ ହୋଇଗଲେ । ସମସ୍ତଙ୍କ ମୁହଁରେ ଗୋଟିଏ ଗୋଟିଏ ସିଗାରେଟ୍ ବି ଶୋଭାପାଇଲା । ଏହାପରେ ପୁଣି ହାତ ଦେଖା ଚାଲିଲା, ସମସ୍ତଙ୍କ ହାତରୁ ଏମିତିଆ ଏମିତିଆ ଭଲକଥାସବୁ ବାହାରିଲା ଯେ ଜଣ ଜଣଙ୍କର ହାତ ଚାରି ପାଞ୍ଚଥର ବି ଦେଖାଗଲା । ସମସ୍ତଙ୍କ ସତ୍‌ସତ୍ ହୋଇ କଟିଯାଇ କେତେବେଳେ ଯେ ରାତି ବାରଟା ହୋଇଗଲା ତାହା କେହି ଜାଣି ପାରିଲେ ନାହିଁ । ଆରାମରେ ଓ ସୁରୁଖରୁରେ ଯାତ୍ରାଟା ନ ହୋଇ ଥିଲେ ଏମିତି ହୋଇ ନ ଥାନ୍ତା ।



# ହଜିଲା ଛିଣ୍ଡାକନା

ସତ୍ୟବାଦୀର ଆଜ ରବିବାର । ଦିନ ଆଠଟା ହେଲାଣି । ସେ ଶେଯରୁ ଉଠିବାକୁ ଏକାବେଳେକେ ନାରାଜ । ସାତଦିନର ଖଣ୍ଡଖଣ୍ଡିଆ ନିଦର ମଜଗ୍ସ ସେ ପ୍ରାୟ ରବିବାର ଦିନ ମାରିଥାଏ । ଜ୍ୟେଷ୍ଠ ମାସିଆ ସୂର୍ଯ୍ୟ ବେଶ୍ ଉପରକୁ ଉଠି ଗଲେଣି । ଖରାର ତାଣ୍ଡବ ଦିହକୁ ଭଲଭାବରେ ଜଣାଗଲାଣି । ସମସ୍ତେ ନିଜ ନିଜର କାମରେ ଲାଗି ଗଲେଣି । ସତ୍ୟବାଦୀ କିନ୍ତୁ ଶେଯ ନ ଛାଡ଼େ । ଘୁଙ୍ଗୁଡ଼ିରେ ଘର ଫଟାଉଥାଏ । ସେ ଗର୍ଜନରେ ଡରିଯାଇ ପୋଷା ବିରାଡ଼ିଟା ବି ତା ପାଖ ମାଡ଼ୁ ନଥାଏ । ଦିନକିଆ କଥା ହୋଇଥିଲେ ପଡ଼ିଶା ଲୋକେ ନିଶ୍ଚେ ଭାବି ଥାଆନ୍ତେ କେହି ଏକ ଦୁଷ୍ମନ ସତ୍ୟବାଦୀର ବେକଚିପି ତାକୁ ମାରିଦେବାର ଚେଷ୍ଟା-କରୁଛି । ନିତିଦିନିଆ କଥା ଲାଗି ସମସ୍ତେ ଶୁଣି ନଶୁଣିଲାପରି ରହନ୍ତି । ଡିଜେଲଇଞ୍ଜିନର ଗର୍ଜନକୁ ତାଚ୍ଛଲ୍ୟ ଦେଖାଇ ତାର ନିରବଚ୍ଛିନ୍ନ ଘୁଙ୍ଗୁଡ଼ି ଗର୍ଜନ ସେହିପରି ଚାଲିଥାଏ ।

ପ୍ରାୟ ସାଢ଼େଆଠଟା ବେଳକୁ ଅଫିସ ସହକର୍ମୀ ମଙ୍ଗୁଲି ଆସି କବାଟ ବାଡ଼େଇଲା—"ସତିଆ, ହେ ସତିଆ, ହେ କୁମ୍ଭକର୍ଣ୍ଣ ସତିଆ, ହେ କାଠଗଡ଼ ସତିଆ, ଆରେ ହେ କାଲ ସତିଆ, ହେ ଢେଙ୍କିସତିଆ, ହା ତେରିକା, ଏଇଟା ଅଛି ନା ଖତମ୍ ହୋଇଗଲାଣି ମ"—

ସବୁ ଡାକ, ଜଞ୍ଜିର ଝଣଝଣ ଓ କବାଟ ଧଡ଼ଧଡ଼ ସତ୍ତ୍ୱେ ତାର "ଘୁର୍ ର୍-ଘର୍ ର୍, ଘାର୍ ର୍ ଫଟ୍" ଠିକ୍ ତାଳରେ ଚାଲିଥାଏ । ପାଟି ଓ ହାତ ଯୋଳେଇ ହୋଇଯିବାରୁ ମଙ୍ଗୁଲି ଖିଡ଼କି ପାଖକୁ ଯାଇ ଅଳପ

ଆଉଜା ହୋଇଥିବା କବାଟ ଦୁଇ ପଟକୁ ହାତ ଗଳେଇ ମେଲା କରିଦେଲା । ଆଲୁଅରେ ସତ୍ୟବାଦୀର ସମସ୍ତ ଶରୀରଟା ପରିଷ୍କାର ଦିଶିଲା । କିନ୍ତୁ ମଙ୍ଗୁଳି ଗୃହିଁ ନ ପାରି ମୁହଁଟା ବୁଲେଇ ନେଲା । ଗାରୁରି ଗାରୁରି ହୋଇ କହି ଲଗିଲା "ଅଭଦ୍ର, ଅନାର୍ଯ୍ୟଟା କେମିତି ଶୋଇଛି ମ ! ମଣିଷ ଗୋଟାଏ ପାଖରେତ, ଲୁଗା ଆଉ ଗୋଟାଏ ପାଖରେ ! ଅନାର୍ଯ୍ୟଟା ଭଦ୍ର ସମାଜରେତ ଚଳି ପାରିବନି । ଛିଛି ଅଦ୍ୟ ପ୍ରାତରେବାନିଷ୍ଟଦର୍ଶନଂ ଜାତମ୍ । ଦିନଟାଯାକ ଆହୁରି ଅଛି । ରାମ୍, ରାମ୍, ରାମ୍" ।

ଗରଗର ହେଲା ସତ କିନ୍ତୁ ତାକୁ ନ ଉଠେଇ ଗୃଲି ଯାଇପାରୁ ନଥାଏ, ଯେ କୌଣସି ମତେ ତାକୁ ଉଠାଇବାକୁ ହେବ । ରବିବାରଟା ଚଣ୍ଡୀଖୋଲରେ କଟାଇବା ପାଇଁ ପୂର୍ବଦିନ ସମସ୍ତେ ବସି ଠିକ୍ କରିଥିଲେ । ସତ୍ୟବାଦୀର ସେଇଟା ବୋଧହୁଏ ମନେ ନାହିଁ । ଶେଷରେ ବାଧ୍ୟ ହୋଇ ସେ ଗୋଟାଏ ବାଡ଼ି ସଂଗ୍ରହ କଲା । ଝିଡ଼ିକ ଛିଦ୍ର ଭିତରେ ଗଳେଇ ତାକୁ କେଞ୍ଚିଲା ଓ 'ସତିଆ ସତିଆ' ବୋଲି ବଡ଼ ପାଟିରେ ଡାକ ଲଗିଲା । ଆଠ ଦଶ କେଞ୍ଚାପରେ ତାର ଘୁଙ୍ଗୁଡ଼ି ବନ୍ଦ ହୋଇଗଲା । ଭିତରୁ ଆବାଜ ଶୁଭିଲା "ଉଁ କିଏ" ?

"ଆରେ ଉଠୁନ, ପଚ୍ରୁଛୁ କିଏମ । ଅନାର୍ଯ୍ୟ କୋଉଠିକାର ଆସି ସାଢ଼େ ଆଠଟା ହେଲାଣି, ବାବୁ ଘୁଙ୍ଗୁଡ଼ି ମାରୁଛନ୍ତି ।

"ଆରେ ମଙ୍ଗୁଳି କିରେ-ଏଡ଼େ ସକାଳୁ" ?

"ଉଁଃ ପ୍ୟାର ପୁଣି ସକାଳ ହୋଇଛି, ହଇରେ ଚଣ୍ଡୀଖୋଲ ଯିବାକଥା ମନେ ନାହିଁକିରେ ? ଆରେ ଅବଧୂତ ବେଶ ସମ୍ଭାଳ ।

ସତ୍ୟବାଦୀ ଚଟାପଟ୍ ଉଠିପଡ଼ି ଲୁଙ୍ଗିଟା ବେଢ଼େଇ ହୋଇ ପଡ଼ିଲା । କବାଟଟା ଖୋଲି ଦେବାରୁ ମଙ୍ଗୁଳି ଯାଇ ତା ଖଟ ଉପରେ ବସିପଡ଼ିଲା ଓ ବିରକ୍ତ ହୋଇ ପଚାରିଲା "ଭୁତ ଉଠିଲୁ ଏତେବେଳେ, ନିତ୍ୟକର୍ମ ସାରିବୁ କେତେବେଳେ ?"

"ଆଃ କି ବଢ଼ିଆ ନିଦଟାଏ ଭାଙ୍ଗିଦେଲୁ । ସପ୍ତାହସାକର କସର ରବିବାରରେ ମାରିଥାଏ । ଅଫିସ୍‌ରେ ଟିକିଏ ଘୁମେଇ ପଡ଼ିଲେ ଅଲପେଇସ ସେକ୍ସେନ୍ସେଟା ମାରେ କି ନମାରେ । ବିଚରା ହେଡ୍‌କ୍ଲର୍କଟି ବଢ଼ିଆ ଲୋକ । ସେକ୍ସେନ୍ସେଶ ଯୋଉଦିନ ନଥାଏ ସେ ଚଉକି ଟୁଲ୍ ଯୋଡ଼ି ଗଡ଼ିଯାଏ । ମୁଁ କି ଆଉ ଛାଡ଼େ । ଅଫିସ୍ ଦିନମାନଙ୍କରେ ସକାଳୁ ନ ଉଠିଲେ ନ ଚଳେ । କାମ ସାରୁ ସାରୁ ସାଢ଼େ ନଅ । କେମିତି ଅଫିସରେ ପହଞ୍ଚିବ ବୋଲି ବାହାର ସହେନ । ସେଠିତ ଆଖି ପତାରେ ଢିଗିଦେଇ ରହିଁବା କଥା । ଅଫିସରୁ ଆସି ନିତ୍ୟକର୍ମ ସାରି ଶେଯରେ ପଡ଼ିଯାଏ ରାତି ଆଠଟାରୁ ସକାଳ ସାତ । ଅଣ୍ଟୁରୁ କୁଆଡ଼ୁ । ରବିବାର ଦିନ ଟିକିଏ ଆ...ରା..."

ମଙ୍ଗୁଳି ବୁଲିପଡି ରହିଲା ବେଳକୁ ସତ୍ୟବାଦୀ ଫେର୍ ଢିଙ୍କି ଅବତାର । ଥିରିକରି ଖଣ୍ଡିଏ କାଠି ତା ନାକ ଭିତରେ ପୁରେଇ ଦେଲା । ସତ୍ୟବାଦୀ ଗୋଟାଏ ବିକଟାଳ ଶବ୍ଦ କଲା-'ହା-ଛିଁ-। ଏଥରକ ତା ନିଦ ପୁରାପୁରି ଛାଡିଗଲା ।

ମଙ୍ଗୁଳି କହିଲା-"ଆରେ ହେ ଘୁଷୁରି, ସିବୁକି ନାହିଁ କହିଲୁ । ଓଧ ସାଙ୍ଗରେ ବଣଭୁଆ ବାଇହେଲେ କଥା ଶେଷ । ହଁ କି ନା କହିବୁଟି, ଆମେ ନହେଲେ ତତେ ବାଦଦେଇ ଚାଲିଯିବା ।

"ଯାଇ ତୁ ଯା । ଚଣ୍ଡୀ ଖୋଲରେ ଖିଆପିଆର କିଛି ବନ୍ଦୋବସ୍ତ ତ ହବନି । ତୁମେମାନେତ ପେଟେ ଠୁଙ୍କି ସାରିବଣି ମୁଁ ଆଉ ଖାଲି ପେଟରେ ଯାଇ ପାରିବିନା ? ତୁ ଯାଇ ଯା"—

"ହଉ ଘୁଷୁରି ତୁ ଢିଙ୍କି ଅବତାର ହଉଥା" କହି ମଙ୍ଗୁଳି ସେଠାରୁ ଚାଲିଗଲା । ସତ୍ୟବାଦୀ ପୁଣି ବିଛଣା ଉପରେ ଗଡ଼ିଯାଇ ଭିଡ଼ି ମୋଡ଼ି ହେବାକୁ ଲାଗିଲା । ମନେ ମନେ ଭାରି ଅବଶୋଷ ହେଉଥାଏ "ଅଲକ୍ଷଣଟା କି ବଢ଼ିଆ ନିଦଟାକୁ ଭାଙ୍ଗିଦେଲା ।"

ଭଡ଼ ମୋଡ଼ ହେଉ ହେଉ ପାଖରେ ନଟକା ହୋଇଥିବା କ୍ୟାଲେଣ୍ଡରଟା ଉପରେ ନଜର ପଡ଼ିଲା । ସେଇଦିନର ତାରିଖଟା ଉପରେ ମୋଟା ନାଲିଗାର । ତା ବିଷୟରେ ଯେମିତି କିଏ ବିଜୁଳି ତାରଟାଏ ଲଗେଇ ଦେଲା । ଶେଯ ଉପରୁ ସେ ଡେଇଁ ପଡ଼ିଲା । ଦାନ୍ତ ଘସା ଆରମ୍ଭ କରିଦେଇ ଭାବ ଲାଗିଲା—"ଅଃ ! ମନେ ରହିଲା ନାହିଁ । ଆଜି ନଅଟା ବେଳେ ଗୁରୁଦେବ ଗୋବିନ୍ଦଗିରି ମଠରେ ଆସି ପହଞ୍ଚିବେ । ସବୁ ଗୁରୁଭାଇମାନେ ରୁଣ୍ଡ ହେବେ । ମୋର ତ ଡେରି ହୋଇଯିବ । ଅଃ ! ସାଢ଼େ ନଅଟାରେ ପଙ୍ଗତ । କାଲିଠୁଁ ମଠରେ ମାଲପୁଆ, ରସାବଳି, ରାଜଭୋଗ ଛଣା ଚାଲିଛି । ହଅମ ସେତିକବେଳକୁ ପହଞ୍ଚିବି ଯେ । ହେଇ ହେଇ ଗୁରୁଙ୍କ ପାଦପୂଜାଟା ‒ରି ପାରିବନି । ନ ହେଲା ନାହିଁ । ଏତେ ଲୋକ ପୂଜା କରିବେ । ମୋର ଲାଗି କଅଣ ରହିଯିବ । ଗୁରୁ କୋଉ ଜାଣି ପାରିବେ କିଏ ପୂଜା କଲା କିଏ ନ କଲା । ସାଢ଼େ ନଅଟା ବେଳକୁ ପହଞ୍ଚ ପାରିଲେ କାମ ଫତେ । "ଆଗ ପେଟପୂଜା ତାପରେ ସବୁ ।"—

ଏହାପରେ ଭାବ ଭାବ ସତ୍ୟବାଦୀ ସବୁ କାମ ବଢ଼େଇ ଦେଲା । ବାହାରି ପଡ଼ିଲା ବେଳକୁ ଖରା ଟାଇଁ ଟାଇଁ ମାରିଲାଣି । ଗୋଟାଏ ବେଳକୁ ଫେରିବାକୁ ପଡ଼ିବ । ଛତାଟା ନଥିଲେ ମୁଣ୍ଡଟା ଠୋ କରି ଫାଟି ଯିବ । ଆଲମାରି ସନ୍ଧିରେ ଟଙ୍ଗା ହୋଇଥିବା ଅଠର ଠା ତାଳପକା ଛତାକୁ କାଢ଼ିଲା । ବିଚିତ୍ର ସେ ଛତା ଓ ତାର ଇତିହାସ ।

ବାଉଁଶ ବେଣ୍ଟଟା ଫଟା । ଥରେ ଆତ୍ମରକ୍ଷା ପାଇଁ ଗୋଟାଏ ମାରଣା ଗାଈର ମୁଣ୍ଡରେ ଦି ଚାରି ପାହାର ଦେବା ଫଳରେ ବେଣ୍ଟର ଦୁର୍ଦ୍ଦଶା । ଉପର ମୁଦିଆରୁ ପୁରୁଣା କଣ୍ଟା ବାହାରି ଯିବା ଫଳରେ ବୁଜା ଛତାକୁ ଉପରକୁ ଟେକି ଦେଲେ କାଡ଼ି ସହ କନା ତଳକୁ ଖସି ଆସୁଥିଲା । ବୁଲେଇ ଦେଲେ କାଡ଼ି ମୁଠାକ ପୁଣି ସ୍ୱସ୍ଥାନକୁ ଚାଲି ଯାଉଥିଲା । ଖୋଲିଲା ବେଳେ ମୁଠାଟା ଯେପରି ପଦାକୁ ବାହାରି ନଯାଏ ସେଥିପାଇଁ ସତ୍ୟବାଦୀ ନିଜର ଅସାଧାରଣ ମିସ୍ତ୍ରୀତ୍ୱ ଦେଖାଇ ମୁଦିଆ ଉପରକୁ ଗୋଟାଏ ବଡ଼ କଣ୍ଟା ପିଟି ଦେଇଥିଲା । ତାକୁ ଡେଇଁ ପଦାକୁ

ଗ୍ଭଲ ଯିବାର ଯୁ ମୁହଁଆର ଆଉ ନଥିଲା । ବାଡ଼ର ଚମ୍ପାରେ ସୂତାରେ ବନ୍ଧାହୋଇ ଗୋଟିଏ ଖିଲ ଝୁଲୁଥାଏ । ତାର ଇତିହାସ ବଡ଼ ଚମତ୍କାରପ୍ରଦ । ଛତାଟାକୁ ଖୋଲି ରଖିବାକୁ ଯେଉଁ ଘୋଡ଼ଆଟା ଥାଏ ତାହା କାଳକ୍ରମେ ଜଅଙ୍କ ଲାଗି ଉପୁଡ଼ି ଗଲା । ଛତା ମରାମତି କଲାବାଲାକୁ ଆଉ ଗୋଟିଏ ଲଗାଇ ଦେବାକୁ କହିଲାରୁ ସେ ଗ୍ରେକ୍ ଠୋକ୍ ଆଠଅଣା ହାଙ୍କି ଦେଲା । ସତ୍ୟବାଦୀ ଏକଅଣା ଯାଚନ୍ତେ ସେ ରାଗିଯାଇ କହିଲା—"ବାବୁ କଅଣ ମଠରେ ଖାଉଛ କି ? ଟଙ୍କାରେ କଲେ ଗୃଉଳ କଥା ମୁଣ୍ଡରେ ପଶୁଣି ପଡ଼ । ହଉ ଯାଅ ଯାଅ ଯେଉଁଠି ଟଙ୍କାରେ ଆଠ କଲେ ଗ୍ଭଉଳ ମିଳୁଥିବ ସେଇଠି ଛତା ସଜାଡ଼ି ନେବ ।"

କଥା ଗୁଡ଼ାକ ସତ୍ୟବାଦୀ ହେଡ଼ରେ ଗୁଳ ପରି ପଶିଗଲା । ସେ ମନେ ମନରେ ଖୋଲଟି ଝାଡ଼ିବାକୁ ଲାଗିଲା—"ଆରେ ଯା, କାହା ପାଖରେ ନାହିଁ କରଙ୍ଗା, ନିଜ ହାତରେ ସବୁ ସଜାଡ଼ି ଦେଙ୍ଗା, କଅଣ କାମ ହେ ତୋତେ ଆଠଅଣା ଦେଙ୍ଗା । ଟଙ୍କା ଗୁଡ଼ାକ କ'ଣ ଗୋଡ଼ି ମାଟି ପାଯ୍ଯାରେ"—

ଖୋଲ୍‌ଟିତକ ଝାଡ଼୍‌ଝୁଡ଼୍ ହୋଇଯିବା ପରେ ସେ ଘରେ ବସି ଗ୍ଭକୁରେ ଗୋଟାଏ ବାଉଁଶ ପାତିଆକୁ କଳାପରି ତିଆରି କଲା । ତହିଁରେ ଗୋଟିଏ ଘାଟି କରି ସେଥିରେ ଗୋଟିଏ ଡୋର ବାନ୍ଧିଦେଲା । ଡୋର ଆର ମୁଣ୍ଡଟା କାଢ଼ି ମୁଠା ଚମ୍ପାରେ ବାନ୍ଧି କଳାକୁ ନଟକାଇ ଦେଲା । ଛତାଟା ଖୋଲିଦେଇ ଉପର ମୁହଁଆ ତଳେ କଳାଟାକୁ ବସେଇ ଦେଲା । ବନ୍ଦ କରିବାକୁ ହେଲେ କଳାଟାକୁ ହଲେଇ ହଲେଇ କାଢ଼ି ଦିଏ । କଳାଟା ବେଶ୍ ଘୋଡ଼ଆ କାମ କଲା । ଆଉ ଅସଜ ହେବାରୁ କି ଭାଙ୍ଗି ଯିବାର ପ୍ରଶ୍ନ ନ ଥିଲା । ମିସ୍ତ୍ରୀ ତିଆରି ଘୋଡ଼ଆଠାରୁ ଯଥେଷ୍ଟ ଭଲ ଅଥଚ ଦାମ୍ ଏକ ପଇସାରୁ ବି କମ । ଆତ୍ମତୃପ୍ତିରେ ସତ୍ୟବାଦୀ ଭାବିଲା—"ଶଳା—ଲୁଟି ନେବାକୁ ବସିଥିଲା । ଏଇ ହେଲା ପ୍ରସିଦ୍ଧ ଛତାର ଇତିହାସ ।

ଛତାଟା ଖୋଲି ସତ୍ୟବାଦୀ ପଦାକୁ ବାହାରି ପଡ଼ିବା ମାତ୍ରେ କନାର ଗୋଟିଏ ଟଣକ କେମିତି ଛିଣ୍ଡି ଯାଇଛି । ଛୁଞ୍ଚିରେ ଟଣକ

ମାରିବାକୁ ସମସ୍ତ ନାହିଁ । ତର ତର ହୋଇ କନା ଓ ଜାଙ୍ଗର ଅଗକୁ ଗୋଟାଏ ସୂତ୍ରୁଲରେ କଷି କରି ବାନ୍ଧି ଦେଇ ବାହାରି ଗଲା ।

"ଆଃ ¡ 'ଜୟଗୁରୁ' କହିବାକୁ ଯେ ଭୁଲିଗଲି" ! ସତ୍ୟବାଦୀ ରାସ୍ତାରୁ ଫେରିଆସି ଦୁଆର ଭିତରେ ପଶିଲା ଓ ତିନଥର 'ଜୟଗୁରୁ' କହି ବାହାରି ଗଲା ।

ଗୋବିନ୍ଦଜୀଉ ମଠରେ ପହଞ୍ଚିଲାବେଳକୁ ଗୁରୁଦେବ ଆସି ସାରିଥିଲେ । ପାଦପୂଜା ସରି ଯାଇଥିଲା । ଫାଟକ ପାଖ ଚୁଙ୍ଗି ଘରେ ଛତା ଥୋଇ ଭିତରକୁ ଯିବାର ଏକ ନିର୍ଦ୍ଦେଶପତ୍ର ଫାଟକରେ ଟଙ୍ଗା ହୋଇଥିଲା । ପାଖରେ ଗୋଟିଏ ଜଗୁଆଳ ବି ଥିଲା । ତର ତର ହୋଇ ସତ୍ୟବାଦୀ ଛତାଟା ସେ ଘର ଭିତରକୁ ଫିଙ୍ଗିଦେଇ ଗୁରୁ ବସିଥିବା କୋଠରୀକୁ ଧାଇଁଲା ।

ଗୁରୁ ଘର ଭିତରେ ଗୋଟାଏ ଚଉକି ଉପରେ ବସି ଥାଆନ୍ତି । ଭକ୍ତଗଣ ତାଙ୍କ ଆଗରେ ତଳେ ଯାକଯୁକ ହୋଇ ବସି ଥାଆନ୍ତି ଓ ଗୁରୁଙ୍କ ଭାଷଣକୁ ପିଇ ଯାଉଥାଆନ୍ତି । ସତ୍ୟବାଦୀ ପଦାରୁ ସାଷ୍ଟାଙ୍ଗ ପ୍ରଣିପାତ କରି ଘର ଭିତରେ ଗୁଞ୍ଜିଗାଞ୍ଜି ହୋଇ ବସିଲା । ଗୁରୁ ଅନର୍ଗଳ ଗପି ଲାଗି ଥାଆନ୍ତି ।

ବାରଟା ବାଜିଲା ତଥାପି ଗୁରୁଙ୍କ ଭାଷଣର ଶେଷ ନାହିଁ । ପେଟରେ ଯେମିତି ଏକ ଅସରନ୍ତି ଗପ ଭଣ୍ଡାର ରହିଛି । ସତ୍ୟବାଦୀ ପେଟ କଅଁ କଅଁ ଡାକିଲା । ବିଚରା ସକାଳୁ ପେଟରେ ପାଣି ଟୋପାଏ ପକେଇନି । ମନେ ମନେ ଭାରି ବିରକ୍ତ ହୋଇ ଭାବିଲା—"ଖୁଣ୍ଟୁଡ଼ା କୋଉଠିକାର, ଆପଣା ପେଟତ ଟମାଟମ୍ । ଛେନାରୁ ବସି ଗ୍ୟୋପା ଛାଡ଼ୁଛି । ଆମପେଟ ଆସି ପିଠିରେ ଲାଗିଗଲାଣି ତାକୁ ମାଲୁମ୍ ହେବ କିପରି । ପଚପଚିଆ ମାଲ ସବୁ ଏମିତି ନ ଗର୍ଜିଲେ ଝଡ଼ିବ କେମିତି ।"—

ଦୈବଯୋଗକୁ ସଙ୍ଗେ ସଙ୍ଗେ ଗୁରୁଙ୍କ ଭାଷଣ ସରିଗଲା । ତାଙ୍କ ଆଜ୍ଞାରେ ପ୍ରସାଦ ସେବାର ଆୟୋଜନ ହେଲା । ସତ୍ୟବାଦୀ ବିଚରା

ଡରିଗଲା । ଗୁରୁ ନିଶ୍ଚୟ ମନକଥା ଜାଣି ପକେଇଲେ । ଆଉ ରକ୍ଷାନାହିଁ । ମନେ ମନେ ଡାକ ଛାଡ଼ିଲା—"ହେ ଗୁରୁଦେବ ! ଅପରାଧ କ୍ଷମାକର । ପେଟ ବଜଳରେ କୁକଥା କହି ଦେଇଛି । ଭକ୍ତ ବତ୍ସଳ ପ୍ରଭୋ ! କ୍ଷମାଦିଅ ।"

ଆହୁରି ଅଧିକ କାକୁତି ମିନତି ହୋଇଥାନ୍ତା, କିନ୍ତୁ ତେଣେ ପତ୍ରର ପାଣି ପଡ଼ି ଯିବାରୁ ନସର ପସର ହୋଇଯାଇ ସେଠାରେ ବସି ପଡ଼ିଲା ।

ଖିଆ ପିଆ ସରିଲା । ଆଉ ଗୁରୁ ଫୁରୁ ପଶ୍ନରେ କିଏ । କେମିତି ଘରେ ପହଞ୍ଚିଗଲେ ଖଟରେ ଗଡ଼ିଯିବ । ପେଟଟା ଠିଲେଇ ଦେଉଥାଏ । ବେଳ ଗୋଟାଏ ବାଜିଲାଣି । ସୂର୍ଯ୍ୟ ଉପରୁ ନିଆଁ ଅଜାଡ଼ିବାରେ ଲାଗିଥାନ୍ତି । ସତ୍ୟବାଦୀ ଫାଟକ ଘର ପାଖକୁ ଛତା ଆଣିବାକୁ ଗଲା । ସେଠି ଲାଗିଛି ଏକ ପାଲା । ସମସ୍ତେ ପାଟି କରୁଛନ୍ତି—"ମୋ ଛତା, ଏଁ ମୋ ଛତା' । ଘରେ ଗୋଟିଏ ହେଲେ ଛତାନାହିଁ । ସାଙ୍ଗେ ସାଙ୍ଗେ ସତ୍ୟବାଦୀ ସୁର ମେଲାଇଦେଲା । "ଆରେ ସରିଗଲାରେ । ସାତ ଆଠଦିନ ହେଲା ଷାଠିଏ ଟଙ୍କାଦେଇ ଛତାଟା କିଣିଥିଲି, କଲିକତାରୁ । କେତେ ସଉକରେ କିଣିଥିଲି । ହାୟ ହା ! ବଲାତି ଛତାଟା । କଲିକତା ବଜାରରେ ସେଇଟା ସବୁଠୁଁ ବଢ଼ିଆ ଛତାଥିଲା । ଛତାର ଗୋଟାଏ ସଉକ ଥିବାରୁ ଆଖିବୁଜି କିଣି ପକେଇଲି । ଅଲପେଇସ ଗ୍ରେରଟା କଅଣ ନକଲି ଆଃ ! କି ସୁନ୍ଦର ଛତା ! ବୋତାମଟା ଟିପିଦେଲେ ଫଡ଼୍‌କରି ଛୁଏଁ ଛୁଏଁ ଫିଟିଯାଏ । ଆହା-ହା-କି ମଜଭୁତ କାଡ଼ି ! ଦୋକାନୀ କାଡ଼ି ଦମ୍ଭୁଣ୍ଡି ଏକାଠିକରି ଓ ଛାଡ଼ିଦେଇ ଦେଖେଇ ଦେଇଥିଲା କାଡ଼ି ହୋଇ ସିଧାକୁ ସେଇ ସିଧା । ହେ ଭଗବାନ ! ସେ କି କନା ! ଟୋପାଏ ପାଣି ପଡ଼ିଲେ ଗଡ଼ି ଗଡ଼ି ତଳେ । ସେ କନା ଏ ଖଣ୍ଡମଣ୍ଡଳରେ ସାତ ସପନ । ଚଣ୍ଡାଳ ମୁଁ କଅଣ କଲିରେ ! କୋଉଠି ହାତଛଡ଼ା କରେନି । ଏଠି କୋଟିସ ମସ ହୋଇଥିଲା ବୋଲି ଥୋଇଦେଲି । ଗଲା ଏତେ ବଡ଼ ସଉକ ଜିନିଷଟା ହାତରୁ ଗଲା । ଆଉ ମୋ ଜୀବନରେ ସେମିତିଆ ଜିନିଷଟାଏ ନପାଏ । ହଉ ଭଗବାନ ତୁମ ଇଚ୍ଛା । ଅଜାଣତରେ ଗୁରୁଦେବଙ୍କ ପାଖରେ କିଛି

କ୍ରୋଧ ବୋଧହୁଏ କରିଛୁ । ଆହା ମୋ ଛତା ! ଜୀବନରୁ ବଳି ଭଲ ପାଉଥିଲି ।"—

ଅନ୍ୟାନ୍ୟ ଭକ୍ତମାନେ ସତ୍ୟବାଦୀଙ୍କର ବିକଳ ହେବା ଦେଖି ନାନାପ୍ରଶ୍ନ ପଚାରି, ସେହି ବିଖ୍ୟାତ ଛତା ବିଷୟରେ ବହୁ ତଥ୍ୟ ସଂଗ୍ରହ କଲେ । ଏତେବଡ଼ ଦାମିକା ଛତା ଚୋରିଯାଇ ଥିବାରୁ ଅନେକ ନିଜ ନିଜର, ତା ତୁଳନାରେ ଅତି କମ୍‌ଦାମ୍‌ର ଛତା ବିଷୟରେ ବେଶୀ ବ୍ୟସ୍ତ ହେଲେନାହିଁ ବରଂ ସତ୍ୟବାଦୀର ଦୁର୍ଦ୍ଦଶାରେ ସମବେଦନା ଜ୍ଞାପନ କଲେ ।

ସମୁଦାୟ ଛତା କପରି ଚୋରିଗଲା ସେ ବିଷୟ ଅନୁସନ୍ଧାନରୁ ଜଣାପଡ଼ି ଗଲା । ଜଗୁଆଳି ସପନାକୁ ଭିତରୁ ଡାକରା ଆସିବାରୁ ସେ ଛତା ଘରେ ଗୋଟାଏ ଟିପାତାଲା ପକାଇଦେଇ ଚାଲିଗଲା । ଏହି ଅବସରରେ କେହି ଠାଉଆ ତାଲାଟି ଭାଙ୍ଗି, ଗୋଟେଇ ପୋଟେଇ ସବୁ ଛତା ଯାକ ନେଇ ପାରି ।

ଦୁଇଟା ପାଖା ପାଖି । ଉପର ତଳ ହ ଆଡ଼େ ନାହିଁ । ପଦାକୁ ବାହାରି ହେଉନି । ବେଗର ଛତାରେ ଭକ୍ତମାନେ ଯାଆନ୍ତି କେମିତି । ଗୁରୁଦେବ ଭକ୍ତମାନଙ୍କ କଷ୍ଟ ବୁଝିଲେ ନା କଅଣ ! ଗୋଟାଏ ପୋଲିସ ଗୋଟାଏ ଟୋକାକୁ ବାନ୍ଧି ଓ ଗୋଟାଏ ଛତା ବୋଝେଇ ରିକ୍‌ସାକୁ ନେଇ ସେଇଠି ଆସି ପହଞ୍ଚିଲା । ଚୋର ଧରା ପଡ଼ିଛି ଜାଣି ସମସ୍ତେ ଆନନ୍ଦରେ କୋଳାହଳ କରି ଉଠିଲେ । ସତ୍ୟବାଦୀର ମୁହଁ କିନ୍ତୁ ମଉଳି ଗଲା । ମନ ଭିତରେ ବିକଳ ପ୍ରାର୍ଥନା କଲା—ହେ ଭଗବାନ୍ ଏ ଲଜ୍ଜାରୁ ବଞ୍ଚାଅ ।"

ପୁଲିସ୍‌ଟି ନିଜର ବାହାଦୁରୀ ଦେଖାଇ କହିଲା "ଏ ଟୋକାଟା ଏତେ ଗୁଡ଼ାଏ ପୁରୁଣା ଛତା ରିକ୍‌ସାରେ ବୋଝେଇକରି ନେଉ ଥିବାର ଦେଖି ମୋର ସନ୍ଦେହ ହେଲା । ଧରି ହ ଠେଙ୍ଗୁଣି ଦେବା ମାତ୍ରେ ମାନିଗଲା । ତାକୁ ନେଇ ହେଇ ଆସୁଛି ।"

ପୁଲିସ୍‌କୁ, ତାର ଅସାଧାରଣ ସନ୍ଦେହ କରିବାର ଶକ୍ତି, ଚୋରଠାରୁ କଥା ଆଦାୟ କରିବାର ଅଲୌକିକ କୌଶଳ ଲାଗି

ବହୁତ ଧନ୍ୟବାଦ ଦେଇ ସମସ୍ତେ ଯେଝା ଛତା ଚିହ୍ନି ନେଇଗଲେ ସତ୍ୟବାଦୀର ବିଖ୍ୟାତ ଛତାର କିନ୍ତୁ କୌଣସି ସନ୍ଧାନ ମିଳିଲା ନାହିଁ । ସମସ୍ତେ ପୁଲିଶ୍‌କୁ ଶୁଣିଥିବା ଛତାର ବିବରଣୀ କହିଲେ । ପୁଲିଶ୍ ଶ୍ରେର ଟୋକାର ମୁଣ୍ଡବାଳରୁ ପୁଳାଏ ଧରି ପଚାରିଲା—"ଆବେ ! ଅସଲ ଛତାଟା କଅଣ କଲୁ କହ, କୋଉଁଠି ବିକିଛୁ କହ, ନହେଲେ ତୋ ତଣ୍ଟି ଚିପି ଦେବି ।"—

ଟୋକାଟି ଯନ୍ତ୍ରଣାରେ କାନ୍ଦ ପକାଇ କହିଲା "ବାବୁ ! ମରିଗଲି । ସତ କହୁଛି ଏତିକ ଛତା ଛଡ଼ା ଆଉ କିଛି ନେଇନି କି ବିକିନି । ଯାଉ ଯାଉ ତ ତୁମେ ଧଇଲ, ଆଉ ବିକିଲି କେତେବେଳେ ।

ସମସ୍ତେ ନିଜ ନିଜ ଛତା ଧରିବା ପରେ ଗୋଟାଏ ତାଳିପକା, ଫଟାବେଣ୍ଟିଆ ଝଣକ ଛୁଡ଼ା ବେଗର୍ ଘୋଡ଼ିଆ ଛତା ବଳି ପଡ଼ିଲା । ସେଇଟାକୁ କେହି ଛୁଇଁ ନଥାନ୍ତି । ମଠ ଭିତରେ ରହି ଯାଇଥିବା ଅନ୍ୟ କୌଣସି ଭକ୍ତର ଛତା ବୋଲି ସମସ୍ତେ ଠଉରେଇ ନେଲେ । ନିଜ ନିଜ ଛତା ପାଇ ଯିବାରୁ ସମସ୍ତେ ସତ୍ୟବାଦୀ ଛତା ପାଇଁ ଦରଦ ଦେଖାଇ-ବାରେ ଲାଗିଗଲେ ।

ଜଣେ କହିଲା—"ବାସ୍ତବିକ ସତ୍ୟବାଦୀ ବାବୁ ଏକାବେଳେକେ ଭାଙ୍ଗି ପଡ଼ିଲେଣି । ସଉକ୍‌ର ଜିନିଷ ହଜିଗଲେ ମନଟା ଭାରି ଖରାପ ହୋଇଯାଏ ।

ଆଉଜଣେ କହିଲା—"ଆଉ ମନ କଷ୍ଟକରି କି ଲାଭ ? ମଣିଷ ଜୀବନଟାତ ଗୃହୁଁ ଗୃହୁଁ ହଜି ଯାଉଛି । ଗୋଟାଏ ଛତା କିବା ଛାର । ସତ୍ୟବାଦୀ ବାବୁ ଆଉ ମନ କଷ୍ଟ କରନା ।

ଅବଶିଷ୍ଟ ଛତାକୁ ଉଠେଇ ନେବାକୁ ସତ୍ୟବାଦୀର ହାତ ଫକ ଫକ ହେଉଥାଏ । କିନ୍ତୁ ସେ ମନକୁ ବୁଝେଇବାରେ ଲାଗିଥାଏ । "ଲୋକେ ଭାବିବେ ଆଉ ଗୋଟିଏ କାହାର ଛତାକୁ ମୁଁ ନେଇଗଲି । ଛତାଟା ଯାଉ, ହେଲେ ମାନ ମହତ ଥାଉ ।

ସୂର୍ଯ୍ୟଙ୍କର ନିର୍ଦ୍ଦୟ କିରଣ ଓ ତାତିଲା ଝାଇଁ ଭିତରେ ମୁଣ୍ଡରେ ଖଣ୍ଡିଏ କାଗଜ ଉଗୁଡ଼ାଇ ଘରକୁ ଫେରିଲାବେଳେ ସତ୍ୟବାଦୀ ଭାବୁଥାଏ "ଛତାଟା ବିଲ୍‌କୁଲ୍ ମିଳି ନଥିଲେ ମୋତେ ଏତେ ବାଧି ନଥାନ୍ତା ।

